ଆନନ୍ଦଲହରୀ-ଉପନ୍ୟାସମାଳା + + + ଷଡ଼୍‌ବିଂଶ ଖଣ୍ଡ

# ହା-ଅନ୍ନ !

ଶ୍ରୀ କାହ୍ନୁଚରଣ ମହାନ୍ତି ବି. ଏ,

—ପ୍ରକାଶକ—

ସାରସ୍ୱତ ପ୍ରେସ

କଟକ

ଦ୍ୱିତୀୟ ମୁଦ୍ରଣ

୧୯୩୫

ଏକ ଟଙ୍କା ଚାରି ଅଣା

କେତେ ମୁଷ୍ଟିତା କଙ୍କାଳସାର ତନୁରେ ମରଣ ବାନ୍ଧିଲା ଛଇ,
ବରନ୍ଧମାନାର ବିଜନ ବାସରେ ବେଦନା ଉଠିଲା କାନ୍ଦି,
ଝାଉଁଳି ପଡ଼ିଲା ଅଧର ସ୍ମିତ ସେ କାହାର ଅକାଳେ କାଲି,
ଉଦ୍‌ଗତ ମୁଖ ହେଲା ଅବନତ ସଂସାର ଲୀଳା ଛଳ !

× × × ×

ପଥେ ପଥେ କାନ୍ଦି ଚାଲିଗଲେ କେତେ ମରଣ-ଯାତ୍ରୀଦଳ
କର କ୍ଷିପ୍ରଘାତେ ଝରିଲା ନିର୍ମଳ-ଜୀବନ ବକୁଳ-ଦଳ !
ଅସହ୍ୟାଘାତେ ବା ଲୁଟିଲା କାହାର ଗୌରବ ଟିକା ଭୂତଳେ,
ଶଙ୍ଖ କାହାର ବାଜିଲା ନା ବାରେ କମ୍ପିତ କରତାଳେ ।

× × × ×

ବନ୍ୟା ଯେ ଥିଲା ଆସି ଏ ଦୁଆରେ ଫେନିଳ ଅଟ୍ଟହାସେ,
ଝିଲ୍ଲି-ମୁଖର ପଲ୍ଲୀ ବନ୍ଧାରେ ଉଠୁଇ ମୃତ୍ୟୁ-ତ୍ରାସେ;
ପୁରାତନ ଭୁଲେ ବନ୍ଦୀ ସେ ସବୁ, ଗାଅ ହେ ତରୁଣଦଳ,
ସନ୍ଧାନ କର ନୂତନ ଭୁବନେ ଶ୍ୟାମଳ କେଦାର ତଳ ।

—ମହାପାତ୍ର ଗୋଦାବରୀଶ

# ହା-ଅନ୍ନ !!

—ଏକ—

ହରି ପଧାନଙ୍କ ପୁଅ ଇଗୁ ସକାଳୁ ଉଠି ପ୍ରଥମେ ବେଣୁର ମୁହଁ ଚାହିଁଲା । "ସକାଳୁ..." କହି ଆଖି ମଳି ଚାହିଁଲା ନଳା ମୁହଁକୁ—ତାର ବିଧବା ନୂଆ ବୋଉ ବେଣୁ ବୋଉ ଲୁଗାପଟା ଟେକି ନଳାମୁହଁ ପଥର ଉପରେ ବସି ବୋଝେ ବାସନ ମାଜୁଛନ୍ତି । ସେପଟ ଘର ଚାଳ ଉପରେ ଚାରି ପାଞ୍ଚଟା ଶୁଭବାଉ ତାଙ୍କର ଆଡକୁ ଚାହିଁ 'କା, କା' ହେଉଛନ୍ତି । ଖଞ୍ଜା ଭିତରେ ଆଉ କେହି ନାହିଁ ।

ଇଗୁ ଠଣା ଉପରୁ ମାଲପା ଘଡ଼ିଟା ଆଣି ପାଞ୍ଚ ଅଙ୍ଗୁଠିଆ କରି ହାତରେ ତେଲ ବୋଳି ହେଲା । ଦାନ୍ତ ଅଲଗୁଣିରୁ ଗାମୁଛଖଣ୍ଡେ ଟାଣି ଆଣି ଅଣ୍ଟାରେ ଭିଡିଲା । ବେଣୁକୁ ଚାହିଁ କହିଲା—"କିରେ ବେଣୁ, ଯୋଡ଼କୁ ଗାଧୋଇଯିବୁ ?" ବେଣୁ ତ ଦେଢ଼ ବରଷର ପିଲା । ଭଲ ହୋଇ ପାଟି ଫିଟି ନ ଥାଏ । ସେ ତାର ଦାଦା ମୁହଁକୁ ବଲ ବଲ କରି ଚାହିଁଲା । କଣ ଭାବି କେଜାଣି ଖଣ୍ଡେ କାଠି ଧରି କାନ୍ଥରେ ଠକ୍ ଠକ୍ କରି ବାଜେଇବାକୁ ଲାଗିଲା । ଇଗୁ ତର ତର ହୋଇ ପିଣ୍ଡା ଉପରୁ ଦୁଆରକୁ ଓହ୍ଲାଇପଡି କହିଲା—"ହଉ ତୁ ଖେଳୁଥା, ମୁଁ ଯାଉଛି...।"

ବେଣୁ ବୋଉ ମୁହଁ ବୁଲାଇ କହିଲେ ସତେ କି ଅନୁରୋଧ କରି—"ଜଗୁ, ବେଣୁକୁ ସାଙ୍ଗରେ ନେଇ ଯା···।"

ଜଗୁ ଫେରପଡ଼ି କହିଲା—"ମୁଁ ଯାଇଁ କେତେବେଳେ ଫେରିବ···।"

ବେଣୁ ବୋଉ ପୂର୍ବ ପରି କହିଲେ—"ହେଉ ପଛେ,ନେଇ ଯା, ମୋ ସୁନା ଝିଅଟି ପରି । ସେ ଯଦି ଅଝଟ ହୋଇ ମୋ ପଛରେ ଲାଗିବ, ମୋ ହାତରେ ଗୋଡ଼ରେ ପଶିବ ନାହିଁ । ମୁଁ କିଛି କାମ କରି ପାରିବ ନାହିଁ ।... ନେଇ ଯା—।"

ଜଗୁ ବେଣୁକୁ କାଖ କରି ତା'ର ନୂଆ ବୋହୂକୁ ପଚାରିଲା—"କହୋ, ନେଉ କାହିଁ ଗଲ ?"

ବେଣୁ ବୋଉ ମୁହଁ ମୋଡ଼ି କହିଲେ—"କିଏ, ଶାଶୂ ?" ସାମାନ୍ୟ ହସି କହିଲେ—"କେଜାଣି ପଡ଼ୁଛି ଝିଙ୍ଗି ନାହିଁ ପରି ।"

ଜଗୁ କିଛି ଉତ୍ତର ନ ଦେଇ ବେଣୁକୁ କାଖରେ ଧରି ପଦାକୁ ବାହାରିଗଲା । ବେଣୁ ବୋଉ ବାସନ ମଜାରେ ମନ ଦେଲେ ।

ଗାଁ ଗୋହିରୀ ପାରି ହୋଇ ଜଗୁ ଯେତେବେଳେ ପୋଖରୀ ନିକଟରେ ହେଲା, ସେ ଦେଖିଲା ପୋଖରୀ ପାଖ ବନ୍ଧ ଉପରେ କେତେଗୁଡ଼ିଏ ପିଲା କୋଳାହଳ କରୁଛନ୍ତି । ସେମାନଙ୍କ ଭିତରୁ ବେଶି ହେଉଛନ୍ତି ଝିଅ । କାହା ହାତରେ ଫୁଲ ଗୁଞ୍ଜୁଡ଼ି, କାହା ହାତରେ ଛୋଟ ନଡ଼ି । କିଏ ବା ଅଣ୍ଟାରେ କାଗା ଭିଡ଼ି ପାଖ କନିଅର ଗଛରେ ଚଢ଼ି ଫୁଲ ତୋଳୁଛି । କେହି ବା ତଳେ ଠିଆ ହୋଇ ମିଛଟାରେ 'ହୋ ହୋ' ହେଉଛି ।

ସେ ପିଲାଙ୍କର କୌତୁକ ଦେଖିବାକୁ ପାଖକୁ ଆସି ପଚାରିଲା—"ଅରେ କଥା କଣ ?"

କିଏ ଜଣେ ଉତ୍ତର ଦେଲା—"କାହିଁକି, ଆଜି ପରା ଖୁଦୁରୁକୁଣି ?"

ଜଗୁ ଆଗକୁ ଗଲା—ଖଣ୍ଡେ ଦୂର ଯାଇ ବନ୍ଧ ଉପରୁ ତଳକୁ ଗଡ଼ି ପୋଖରୀର ଗୋଟିଏ ତୁଠକୁ ଓହ୍ଲାଇଲା । ଦେଖିଲା, ଏପାଖ ତୁଠରେ କେତେ ଜଣ ସ୍ତ୍ରୀଲୋକ ଗାଧଉଛନ୍ତି । ଆର ପାଖର ଅବସ୍ଥା ମଧ୍ୟ ଠିକ୍ ସେହିପରି । ପୋଖରୀ ଗୁହାଳ ଅତୁଠରେ କେତୋଟି ଝିଅ ଅଣ୍ଟାଏ ପେଟେ ପାଣିରେ ପଶି କଇଁଫୁଲ ଓଟାରୁଛନ୍ତି । ଅଙ୍କ ତାଙ୍କୁ ଓଳଖୁଣ ମାପ୍—ଆନନ୍ଦରେ

ମନ ଫୁଲି ଉଠିଛି । ସେ ତ ଅଞ୍ଜ ବାଟ ଅବାଟ, ଭୁଠ ଅଭୁଠ ଚନ୍ଦ୍ରସୂର୍ଯ୍ୟ ମାନୁ ନାହାନ୍ତି । ଏପାଖ ଭୁଠରୁ ବେଳେ ବେଳେ ମୋତି ମା ଡ଼ାକ ଛାଡ଼ି ସେମାନଙ୍କୁ ସାବଧାନ କରି ଦେଉଛି—"ବୁଝି ହୁସିଆର । ସେପାଖରେ ବେଶି ପାଣି, ଭିତରକୁ ଯା ନା । ଉପରେ ଠିଆ ହୋଇ ଫୁଲ ତୋଳ ।" କିନ୍ତୁ ତାର ସତର୍କ ବାଣୀ ସତେ କି କାହାର କାନରେ ପଶୁ ନାହିଁ ।

ଜଗୁ ଭୁଠକୁ ଆସିଲା । ପନ୍ଦର ଷୋଳ ବର୍ଷର ଟୋକା, ଦେହଟି ବଳଶାଳି ପରି । ରଙ୍ଗ କଳା ହେଲେ ବି ଗଠଣଟି ସୁନ୍ଦର । ଗାଁ ମାଇପେ ଆଡ଼ ହେବାର ବୟସ ତାର ହୋଇ ନାହିଁ । ତେଣୁ ସେ ନିଃସଙ୍କୋଚରେ କୂଳକୁ ଯାଇ ମୋତି ମାକୁ କହିଲା,"ଜେଠେଇ, ତୁ ତ ଗାଧୋଇ ସାରିଲୁଣି—ଟିକେ ବେଣୁକୁ ରଖ ତ, ମୁଁ ବୁଡ଼ ପକେଇ ଆସେ ।"

ମୋତି ମା ଗରିବ ଘରର ବୋହୂ । ହେଲେ, ଭାରି ଭଲ ମଣିଷ ! ପର ଆପଣା ଜାଣେ ନାହିଁ—ଛନ୍ଦ କପଟ, ହିଂସା ବାଦର ପାଖେ ପଶେ ନାହିଁ, ଅଖଳ ମଣିଷ । ଦୁନିଆଟା ତା ଆଖିରେ ସବୁ ଭଲ । ଜଗୁର କଥା ଶୁଣି ସେ ବେଣୁକୁ ହାତ ବଢ଼ାଇଲା । ବେଣୁ ତା କୋଳକୁ ଡେଇଁ ପଡ଼ିଲା । ନରସିପୁର ଗାଁରେ ସବୁ ପିଲାଙ୍କର ସେ ପ୍ରିୟ । କେହି ତାକୁ ଅଣଦେଖା କରନ୍ତି ନାହିଁ । ଲୋକେ କହନ୍ତି—"ସେ କଣ ମନ୍ତ୍ର ଜାଣେ ।"

ବେଣୁର ଦାୟିତ୍ୱରୁ ଖଲାସ ହୋଇ ଜଗୁ ମନ ଖୁସିରେ ପୋଖରୀର ଗୁରୁପଟେ ଅଣ୍ଟି ପକାଇଗଲା । ଏତେ ବଡ଼ ପୋଖରୀ—ଅନ୍ଦାଜ ଶହେ ଶହେ ହାତ ଲମ୍ବ, ଦୁଇଶ ହାତ ଓସାର । ମଝିରୁ ସୋହଳଣ ଛାଡ଼ି ପୋଖରୀଟା ଯାକ କଇଁ ନଳ ଓ ଅନ୍ୟାନ୍ୟ ଅନେକ ପ୍ରକାର ଦଳରେ ପୂର୍ଣ୍ଣ । କଇଁ ଫୁଲରେ ପୋଖରୀଟା ଛାଇ ହୋଇପଡ଼ିଛି । ତୋଳିଲେ ଦଶ ଗାଡ଼ି ବୋହିବାରକୁ, ଅଥଚ ଗାଁ ପିଲାଏ ଝୁଡୁକୁଣୀ ପୂରିବାକୁ କୂଳରେ ଥାଇ ଉଡ଼ାଇଲେ ବଳକା ହେଉଛନ୍ତି; କାଦୁଅ-ପାଣି ଚକଟି ନଳୀ ବଢ଼ାଇ ଗୋଟାଏ ଗୋଟାଏ ଆଣୁଛନ୍ତି । ଜଗୁ କି ଏହା ସହିପାରେ ?

ଏଣିକି ତେଣିକି ଗୁହିଁ ସେ ଆଗ ପାଇବକୁ ଭିଡ଼ିଲା । ଗାମୁଛାଟି ଅଣ୍ଟାରେ ଭଲ କରି ଗୁଡ଼ାଇ ପାଣି ଭିତରକୁ ପଶିଲା । ମୋତି ମା ସତେ କି ତାର ମନ କଥା ବୁଝିପାରି ପଛରୁ ଡରେଇ କହିଲା—"ଆରେ ପୁଅ, ବେଶି

ଭିତରକୁ ଯାଆନା ରେ, ଗୋଡ଼ରେ ନଠା ଛନ୍ଦିହେବ ।” ସେ ଶୁଣି ମାନିଲା ନାହିଁ । ଏକୁଜିଦିଆ ଅମାନିଆ ପିଲାଟା । ଯାହା ବୁଝିଥିବ ସେଇଆ । ଭଲ ମନ୍ଦ କିଛି ଦେଖିବ ନାହିଁ । ଚେଙ୍ଗ ନ ପାଇବା ଯାକେ ଗୁରୁବ୍ରହ୍ମା ଆସି ଉପଦେଶ ଦେଇ ଫାଟି ଫୁଟିଗଲେ ବି ଲୁଲୁଣା ରଥ ଅଣବାହୁଡ଼ା । ପାଠ ତ ପଢ଼ିଲା ନାହିଁ । ଶ୍ରୀ ଅକ୍ଷର ବରୁଣେଇ ପାହାଡ଼ । ଅବଧାନଙ୍କୁ ଠକିଦେଇ ବାଟରେ ଶଗା କାଟି, ଗୃହାଳରୁ ଖସି—ଗଛ ଚଢ଼ା, ପାଣି ପହଁରା, ମାଙ୍କଡ଼ ହୁରୁଡ଼ା, ମାଛ ଧରା ଇତ୍ୟାଦିରେ ପିଲାଦିନ ପଢ଼ିଲାବେଳ କଟିଗଲା । ଏ ବୟସରେ ବି ସେ ଅଭ୍ୟାସ ଯାଇ ନାହିଁ । ବାପକୁ ବାତ୍ ବଢେଇଲାବାଲା ସେ, ମୋଟି ମା କଥା ଶୁଣନ୍ତା ! ଦେଖୁ ଦେଖୁ ବେକାଏ କଇଁଫୁଲ ତୋଳି ଜଗୁ କୂଳକୁ ଫେରିଲା । ଫୁଲତକ ତୁଠ ପଥର ଦେହକୁ ଅଉଜାଇ ଦେଇ ପୁଣି ପାଣି ଭିତରକୁ ପଶିବାକୁ ମନ କରିଛି, ମୋଟି ମା ବାଧା ଦେଇ ଅକଟ କରି କହିଲା—“ମୋ ସାନ କୁହା ମାନ ବାପ, ଆଉ ପାଣି ଭିତରକୁ ଯାଆନା । କଇଁ ମୂଳରେ ସାପ ଥାନ୍ତି ।”

ଜଗୁ ଧୀରେ ଧୀରେ ଭିତରକୁ ପଶିଲା । ମୋଟି ମା କହିଲା, “ବେଣୁଆକୁ ଏଇଟି ବସେଇ ଦେଇ ଯାଉଛି ରେ, ମୋର ତାକୁ ଧରିବାକୁ ବେଳ ନାହିଁ । ଘରେ ଢେଣେ କାମ ପଡ଼ିଛି ।” ମୋଟି ମା ସତକୁ ସତ ବେଣୁକୁ ପାଣି କୂଳରେ ଛାଡ଼ି ବନ୍ଧ ଅଡ଼କୁ ଖଣ୍ଡେଦୂର ଆଗେଇଗଲା; କିନ୍ତୁ ଜଗୁ ଜାଣେ ମୋଟି ମା କେତେଠେଇ ତାକୁ ଡରାଇବାକୁ ଏପରି କହୁଛି । ଛୁଆ ରଙ୍କୁଣୀ ଛୁଆଙ୍କୁ ଠିଲେ ଦହିଲେ ଆଖି ଆଗରୁ ଛାଡ଼ିବ ନାହିଁ । ଜଗୁ ଶୁଣି ଅହୁରି ଦଶ ହାତ ପହଁରି-ଗଲା । ମୋଟି ମା ଫେରି ଆସି ପୁଣି ବେଣୁକୁ କାଖ କରି ଛିଡ଼ାରେ ଜାକି ଧରିଲା ।

ବାଣୁଆର ବାଣ ଶବ୍ଦ ଶୁଣିଲେ ପାରା ପଲ ଯେପରି ଡର୍ଚ୍ଛରେ, ପ୍ରାଣବିକଳରେ ଉଡ଼ି ପଳାନ୍ତି, କଣ ହେଲା କେଜାଣି, ପିଲାଗୁଡ଼ାକ ପୋଖରୀ କୂଳରୁ ସେହିପରି ଧାଇଁ ପଳାଇଲେ ବନ୍ଧ ଉପରକୁ । କାହାରି ପାଟିରେ କଥା ନାହିଁ କି କେହି ପଛକୁ ଫେରି ଚାହୁଁ ନାହିଁ । କାହା ହାତରୁ ଫୁଲ ଗୋଛି ଖସିପଡ଼ୁଛି, ସେ ଆଉ ଗୋଟାଇ ନେବାକୁ ବେଳ ପାଉ ନାହିଁ—ଛୁଟିଛି । ନଗୀଠା ହାତରେ ଧରି ଦଉଡ଼ି ପଳାଇବାକୁ ଅସୁବିଧା

ଦେହକ ମନେ କର କଏ ନଗୀ ଛଡ ଛୁଟିଛୁ । ଧାଇଁ ଧାଇଁ ଲୁଗା ଛଡ ହୋଇ କଏ ପୋଖରୀ ହୁଡ଼ାରେ ଝୁଣ୍ଟି ପଡ଼ୁଛୁ, ପ୍ରାଣବିକଳରେ ଲୁଗାକୁ ଛଡ଼ାଇ ହାତରେ ଘୋଷାର ଲଙ୍ଗଳା ହୋଇ ଛୁଟିଛୁ । କଏ ତାର ସାନ ଭଉଣିକୁ ପଛରେ ପକାଇ ଛୁଟିଛୁ । ଏଣେ ପିଲାଟି ଗୋଟିଏ ଜାଗାରେ ଠିଆ ହୋଇ, ମୁହଁ ଫଟାଇ ରଡ ଛଡୁଛୁ । ଫେର ଅାସି ତାକୁ ସଙ୍ଗରେ ନେବ କଣ 'ଅ, ଅ' ବୋଲି ହାତ ଠାରି ଦୂରରୁ ଡ଼ାକି ସେ ବି ଛୁଟିଛୁ । ବନ୍ଧ ଉପରେ ଯେଉଁ ପିଲାମାନେ ଫୁଲ ତୋଳୁଥିଲେ, ଘଟଣା କଣ ବୁଝନ୍ତୁ ନ ବୁଝନ୍ତୁ, ବୁଝିବାକୁ ବା ତର କାହିଁ; ଫୁଲଡାଲା, ନଗୀ ଛଡ ଛୁଟି ପଳାଇବାକୁ ଆରମ୍ଭ କଲେ ।

ପୋଖରୀରେ ଗାଧଉଥିବା ଗାଁ ମାଇପେ କଥା କଣ ବୁଝି ନ ପାରି ବ୍ୟସ୍ତ ହୋଇ କୂଳକୁ ଉଠିଲେ ! ଦେହରେ ଲାଗି ରହୁଥିବା ଓଦା ସର ସର ଲୁଗାକୁ ଟାଣି ମୁଣ୍ଡରେ ଓଢ଼ଣା ଦେଇ ବଡ଼ ବିଚଳିତ ହୋଇ ଚାରି ଆଡ଼କୁ ଚାହିଁବାକୁ ଲାଗିଲେ--"କଥା କଣ ?" ସଭିଙ୍କ ମନରେ ଏହି ପ୍ରଶ୍ନ ଉଦିତ ହେଲା; କିନ୍ତୁ କେହି କାହାରିକୁ କିଛି ପଚାରିବାର ଅବସର ସତେ କି ପାଇଲେ ନାହିଁ । ମୋତି ମା ମନରେ କଅଣ ପାପ ଛୁଇଁଲା । ସେ ପୋଖରୀ ମଝିକୁ ଚାହିଁ ଦେଲା । ଜଗୁ କାହିଁ ? ତାର ହୃଦକ ଶୁଖିଗଲା । ମୁଣ୍ଡ ଘୂରି-ଗଲା । ଛାତି ପଡ଼ିଲା ଉଠିଲା । ସେ କ୍ଷଣକରେ ପୁଣି ପୋଖରୀର ଚାରି ପଟକୁ ଆଖି ପକାଇଲା । — ଏଁ, ଜଗୁ !

ପୋଖରୀର ବାଁ ହାତ ତୁଠକୁ ଛଡ଼ ପ୍ରାୟ ପଚାଶ ହାତ ଦୂରରେ--- ଅଭୁଠଠାରେ ଖରାଦିନେ ମାଟି ଖୋଳି ଗହିଡ଼ା ଟୁବ କରି ଯେଉଁଠି ଡେଣ୍ଡା ଲଗାଇ ଗାଁ ଲୋକେ ପାଣି ବୋହି ଅଖୁ କିଆରୀରେ ମଡ଼ାଇବାକୁ ନେଉଥିଲେ, ଠିକ୍ ସେଇଠି, ସେଇ ଟୁବ ଭିତରୁ ଆଗ ଜଗୁର ମୁଣ୍ଡଟା ପାଣି ଉପରକୁ ଉଠିଲା । ମୋତି ମାର ପିଣ୍ଡରେ ପ୍ରାଣ ପଶିଲା । ଆଖି ପିଛୁଡ଼ାରେ ଜଗୁ କୂଳକୁ ଉଠିଲା—ହାତରେ ଧରିଛୁ ଗୋଟିଏ ପିଲାର ହାତ । ପିଲାଟିକୁ ଉପରକୁ ଟାଣିଆଣି କୂଳରେ ଠିଆ କରିଦେଲା ।

ବାସୁ ଗୁଡ଼ିଆର ଦଶ ଏଗାର ବର୍ଷର ଝିଅ—ଉମା । ସେ ତ ଜାଣି ନ ଥିଲା, ପୋଖରୀଟାରେ କୋଉଠି ଖାଲ ଅଛୁ , କୋଉଠି ଢ଼ିପ ଅଛୁ । ବାପ-

ମାଙ୍କର ଅଡ଼ ଗେଲବସର ଅଳଅଳ ଝିଅ ସେ । ଦିନ ଦିପହରରେ ଘରୁ ପଦାକୁ ବାହାରିଲେ ମା ପଛରେ ଅସେ—କାଳେ କୋଉଠି ପିଲାଟା ଚମକି ପଡ଼ିବ ! ଘର ଚାରିପାଖ ଛଡ଼ା ଗାଁର କେଉଁଠି କଣ ଅଛି, ସେ ତ ଆଉ ଜାଣେ ନାହିଁ । ଖୁଦୁକୁଣୀ ବୋଲି ପିଲା ସାଥୀରେ ଫୁଲ ତୋଳିବାକୁ ଚାଲି ଆସିଥିଲା । ସାହସିଆ ପଣ କରି ପାଣିରେ ପଶି ଫୁଲ ତୋଳୁ ତୋଳୁ ଗଣ୍ଡ ଭିତରକୁ ଗୋଡ଼ ଖସିଗଲା—ତେଣିକି ନାଚାର ।

କାହାର ଆଖିରେ ନ ପଡ଼ୁଣୁ ଆଗ ପଡ଼ିଲା ଜଗୁ ଆଖିରେ । ଫୁଲ ତୋଳା ଛାଡ଼ି ସେ ସେଇଠି ଡୁବ ମାରିଲା । ଧନ୍ୟ କହିବ ! ଏକ ନିଶ୍ୱାସରେ ନଟାପନ୍ଦ ଠେଲି ସେ ଭିତରେ ଭିତରେ ଯାଇ ପହଞ୍ଚିଗଲା ଠିକ ପାଖରେ । ଭଲ ରେ ସାହସ ! ଉଠିଲା ତ ଟୋକାଟାର ହାତ ଧରି ଆଣି ଠିଆ କରିଦେଲା ଉପରେ ।

ଉମାର ବି କିଛି କ୍ଷତି ହୋଇ ନାହିଁ । ଦିଚାର ଢ଼ୋକ ପାଣି ପିଇବା ତ ମାମୁଲି କଥା । ସେ ଏଣିକି ତେଣିକି ବଲ ବଲ କରି ଚାହିଁ ଲୁଗାପଟା ସଜାଡ଼ି ନେଲା । ଦେଖୁ ଦେଖୁ ପଳାଇ ଯାଇଥିବା ଅଉ ଅଉ ପିଲାଏ ଧୀରେ ଧୀରେ ବାଆଁରେଇ ହେଲା ପରି ଆସି ସେଠାରେ ପହଞ୍ଚିଗଲେ । ଗାଧୁଆ ଛାଡ଼ି ଗାଁ ମାଇପେ ମଧ ଚୁ ଚୁ କରି ସହାନୁଭୂତି ଦେଖାଇବାକୁ ତାର ଚାରି ପାଖରେ ଘେରିଗଲେ । ବନ୍ଧ ଉପରେ ଚାଲିଯାଉଥିବା ବାଟୋଇ କେତେ ଜଣ ଠିଆ ହୋଇ କଥା କଣ ବୁଝିବାକୁ ଚାହିଁ ରହିଲେ ।

ମୋଟା ମା କହିଲା—"ଜଗୁ ନ ଥିଲେ ତ ଆଜି ଉମା ଘରେ କାନ୍ଦ-ବୋବାଳି । ବାପୁ ଆଜି ମୁଣ୍ଡରେ ହାତ ଦେଇ ବସନ୍ତା...... ।"

କୁସୁନ ସାଉ ଘରଣୀ କହିଲା—"ଠାକୁରେ ବଡ଼ଲୋକ ।"

ଜଗୁ କହିଲା—"ଅଜି ତୋର ଗୋଟାଏ ରିଷ୍ଟ ଥିଲା ଉମା । ଯା, ଘରକୁ ଯା । ବେକାଏ କଇଁଫୁଲ ତୋଳି କୂଳରେ ପଥରକୁ ଅଉଜାଇ ଦେଇଛି, ମନଇଚ୍ଛା ନେଇ ଯା ।"

ଉମାର ଛୋଟ ଛୋଟ ଆଖି ଦିଓଟି ଲୁହରେ ଢ଼ଳ ଛଳ ହେଲା । ସେ ମୁହଁ ଶୁଖାଇ କହିଲା—"ବୋଉ ପାଣିରେ ପଶିବାକୁ ମନା କରିଥିଲା । ଶୁଣିଲେ ମାରିବ........ ।"

ହସିଲା । ମୋତେ ମାକୁ ଗୁହିଁ କହନ୍ତ—"ତୁ ବେଣୁକୁ ନେଇ ଯା, ଆମ ଘରେ ଛାଡ଼ ଦେଇ ଯିବୁ । ମୁଁ ଊମାକୁ ନେଇ ତା ବୋଉ ଜିମା କରଦବ । ପିଲାଲୋକ, ଡରୁଛି । ହଉ ଆ ତୁଠକୁ...... ।"

ଏତିକି କହ ଊମୁ ଆଗେ ଆଗେ ଗୁଲଲା ।

—ଦୁଇ—

ଦୁଇ ବର୍ଷ ପରର କଥା ।

କୁଆଁର ପୁନେଇ ସଞ୍ଜ ପହର । କଣ୍ଢେଇଫୁଲ ପରି ଡୋଗ ଜହ୍ନ ଅକାଶର କୋଳକୁ ଉଠି ଆସିଲାଣି । ତାର ତୋରା କଅଁଳ ଆଲୁଅରେ ସାରା ପ୍ରକୃତି ସତେ କି ଗୋଟିଏ ନୂଆ ଆନନ୍ଦରେ ହସି ଉଠୁଛି । ସଫା ସୁତୁରା ମେଘହୀନ ନେଳିଆ ଆକାଶର ଦେହକୁ ସତେ କି କିଏ ଦୁଧେଲି ପାଣିରେ ମାଟିମୁଟି ଧୋଇ ଦେଇଛି । ଗୁରି ଆଡ଼େ ଅନନ୍ଦ, ଗୁରି ଆଡ଼େ ଫୁର୍ତ୍ତି ପୂରି ରହିଛି; କାହାରି ମନରେ ବିରସ ଭାବ ନାହିଁ, ମୁହଁରେ ବିଷାଦର ମଳିନତା ଦେଖା ନାହିଁ । ପିଲାଠାରୁ ବୁଢ଼ାବୁଢ଼ୀ ଯାଏ ସଭିଏଁ ଆଜି ଉତ୍ସବରେ ମାତି ରହିଛନ୍ତି ।

ଗାଁ ମଝି ବରମୂଳ ବାନ୍ଧ ଦାଣ୍ଡରେ ଗାଁ ଝିଅଙ୍କର ଖେଳ । ଅଧେ ଛାଇ ଅଧେ ଆଲୁଅ ଜାଗା । ଦାଣ୍ଡ ମଝିରେ ପାହି କାଟି ଦଳେ ଟୋକା ଡୁଡୁ ଖେଳରେ ବ୍ୟସ୍ତ । ଦଳେ ପିଲା ଦୋହ୍ମୁରେଇ ଖେଳୁଛନ୍ତି । ବୁଢ଼ା ଦରବୁଢ଼ା ଯାକ ଚଉମୂଳରେ ବସି ପିଲାଙ୍କର ଖେଳ ଦେଖୁଛନ୍ତି, ତାଳି ମାରି ସେମାନଙ୍କ ଉତ୍ସାହ ବଢ଼ାଉଛନ୍ତି; କେବେ କେବେ ମଧ୍ୟସ୍ଥ ହୋଇ କଜିଆ ଭାଙ୍ଗୁଛନ୍ତି । ଅଳ୍ପ ବୟସର ବୁଆଯାକ କଣା କନ୍ଥାର ବୁଢ଼ାକୁ ବୁଢ଼ିଆଣୀ କରି ଲୁଚକାଳି ଖେଳରେ ଲାଗିଛନ୍ତି ।

ଏଣେ ପ୍ରତ୍ୟେକ ସାହିରେ ଝିଅମାନେ କୁଆଁର ପୁନେଇଁ ଖେଳରେ ମନ ପ୍ରାଣ ଢାଳି ଦେଇଛନ୍ତି । ବରଷରେ ମାସେ, ଆଜି ପୁଣି ଶେଷ ରାତି । ଝିଅଙ୍କର ଡର କାହିଁ ? ରାତି ପାହିଲେ ପୁଣି ବର୍ଷେ । ଏଇ ଫୁର୍ତ୍ତି, ଏଇ ଆନନ୍ଦଟିକ ପାଇଁ ଗୁହିଁ ରହିବାକୁ ପଡ଼ିବ । ବର୍ଷେ; କିଛି କମ୍ ନୁହେଁ ।

କେତେ ପରିବର୍ତ୍ତନ ଘଟିବାର ସମ୍ଭାବନା, ବିଶେଷତଃ ଝିଅଙ୍କ ଜୀବନରେ । ଆଜି ଯେ ଏକାଠି ଖେଳୁଛନ୍ତି—ଆଉ ବରଷ ଏକ ଦିନେ କିଏ ଯାଇଁ କେଉଁଠି ଥିବ, କାହା ଚୂଲି ଫୁଙ୍କୁଥିବ । ଦେଖିବା କଥା ତ ଭାଗ୍ୟର କଥା —ଖବରଟିଏ ପାଇବା, ଗଲା ଅଇଲା ଲୋକଙ୍କ ତୁଣ୍ଡରୁ କଥା ପଦେ ଶୁଣିବା ସାତ ସପନ ।

ଝିଏ ଖେଳୁଛନ୍ତି କେତେ ପ୍ରକାର ଖେଳ—ପୁଚି, ମୁଦି-ପରଷୁଣି, ବରଗୁଡ଼ି ବରଗୁଡ଼ି ନଠା, ଲୁଚୁକାଳି ଇତ୍ୟାଦି । ଯିଏ ଯାହା ଗୀତ ଶିଖି-ଛନ୍ତି—ପାଞ୍ଚ ସାତଜଣ ଏକାଠି ହୋଇ ଏକା ସ୍ୱରରେ ପାଟି କରି ବୋଲୁ-ଛନ୍ତି—କାନ ଅତରି ପଡୁଛି । ଏ ସାହି ଝିଏ, ସେ ସାହି ଝିଅଙ୍କର ଅବଗୁଣ ଯାକ—କାହାର ବାପ କୋଳଥ ଚୋରି କରୁ କରୁ ବାଡ଼ିରି ହାତରେ ମାଡ଼ ଖାଇଥିଲା, କାହାର ଅଜା ଚୁଲି ମୁନରେ ଘିଅ ଖାଉଥିଲେ, କାହା ଘରେ ଛଅଣରେ ଫୁଟେଣ ଫୁଟେ ନାହିଁ—ଇତ୍ୟାଦି କଥା ଗୀତରେ ଗୀତରେ ବୋଲି ପର ଘରର ଛିଦ୍ର ଉଣ୍ଡି ପଦାରେ ପକାନ୍ତି । ଆଉ ସାହି ଝିଏ, ସେହିପରି କେତେ ଉଲୁଗୁଣା ଦେଇ ଗୀତରେ ଗୀତରେ ଗାଳିଯାକ ଓଲଟାଇ ଦିଅନ୍ତି । ଶିକ୍ଷା ଦେବାକୁ, ମନ୍ତ୍ରଣା ଦେଇ ତେଜ ଦେବାକୁ ପାଖରେ ପୋଖତା ପୋଖତା ମୁରବି ଆଡ଼ାର ମାଇପେ ବସି ତାଙ୍କ ପିଲା ଝିଅମାନଙ୍କୁ ଏହିପରି କେତେ କେତେ ପୁରୁଣା ଛିଦ୍ର କହି ଉପଦେଶ ଦିଅନ୍ତି ।

ଏ ବି ଏକପ୍ରକାର ଶିକ୍ଷା ! ପର ଘରକୁ ଗଲେ, କପରି ପର ଛିଦ୍ର ଖୋଜି ଗଣ୍ଠି କରିବାକୁ ହେବ, ଅତି ଛୋଟ ଛୋଟ କଥାରୁ ଝିଅ ଧରି ଝପରି ଭାଇରେ ଭାଇରେ ମନ ଫଟେଇ ଗୋଟିଏ ସଂସାର, ଗୋଟିଏ ଘରକୁ ଭାଙ୍ଗି ପାଞ୍ଚ ଘର କରିବାକୁ ହେବ, ଦରକାର ବେଳେ କମର ଦେହର ଲୁଗା ନେଇ ଅଣ୍ଟାରେ ଭିଡ଼ି ନାନା ପ୍ରକାର ଅଶ୍ଳୀଳ କଥା କହି ମୁହଁକୁ ମୁହଁ ଯୋଡ଼ ଜଙ୍ଗରେ ପଡ଼, ଶାଶୁ ନଣନ୍ଦ ଜା ହେଉନ୍ତୁ, କି ସାହିର ଆଉ କେହି ହେଉନ୍ତୁ, ଯିଏ ହାବୁଡ଼େ ପଡ଼ିଲା, ତାହା ସଙ୍ଗରେ ଝଗଡା କରି ପାଟି କୋରରେ ଜିତିବାକୁ ହେବ—ଏସବୁ କଥା ମା ଖୁଡୀ ବଡ଼ମା ଅଈମାମାନଙ୍କଠୁଁ ନ ଶିଖିଲେ ଶିଖେଇବ କିଏ ? ନୋହିଲେ ସ୍ତ୍ରୀଶିକ୍ଷା ଅପୂର୍ଣ୍ଣ ରହିଯିବ ଯେ ।

ଏସବୁ ତ ପରର କଥା । ଯେମିତି ଖେଳରୁ ମହାଭାରତ ଯୁଦ୍ଧ ହେଲା ପର ଏଇ କୁଆଁର ପୁନେଇଁ ଖେଳ ଝିଅଙ୍କ ଗୀତରୁ ସାହି ସାହି ଭିତରେ ଯେଉଁ ଦ୍ୱନ୍ଦ ଲଗିଯାଏ, ତାର ପ୍ରଭାବ ଗାଁରେ ରହିଯାଏ କିଛିଦିନ ଲାଗି । ହାତାହାତି ମଧ୍ୟ ଚଳିଯାଏ, ମରଦଙ୍କ ଭିତରେ । ଗତ ବର୍ଷର କଥା— କାଲି ପରି ଲାଗୁଛି, ବଢ଼େଇ ସାହିର ଝିଏ କୈବର୍ତ୍ତ ସାହିଅଙ୍କ ନାଁରେ କଣ ଗୁରିପଦ ଗୀତ ଫାନ୍ଦ ବୋଲିଦେଲେ । ପିଲାରେ ପିଲାରେ କଥା, ଠେଙ୍ଗା ବାଡ଼ି ଧରି ନଉପୁର ଗାଁ ମଝିକି ଚାହିଁକି ଅସିଲେ ଦି ସାହିର ମରଦେ । ପଧାନେ ଆଗ ହାଁ ହାଁ କରି, ପରେ କଣାପ କରି କଳିଆ ଭାଙ୍ଗି ସିନା କଥା-ଟାକୁ ମେଣ୍ଟା ମେଣ୍ଟି କରିଦେଲେ । ଭିତରେ ଭିତରେ ଗୋଟାଏ ହିଂସା-ବାଦ ବରାବର ଲୁହୁଲା ପଡ଼ିରହିଲା । ଯେଉଁ ଝିଏ ଗୀତ ଫାନ୍ଦ ବୋଲିଥିଲେ— ସେମାନେ ଯାଇଁ ସାତ ଗାଁରେ ଘର କରଣା କଲେଣି; କିନ୍ତୁ କଳିଆଟା ନଉ-ପୁରର ଛାତି ଭିତରେ ଦୁକୁଦୁକି ପଡ଼ିଲା ପରି ଦୁକୁଦୁକୁ ହେଉଛି, ଅଳିଯାଏ ।

ଏହି ସବୁ କଥା ମନେ ପଡ଼ିଯିବାରୁ ଗୋବିନ୍ଦ ସାହୁ ସଞ୍ଜ ବୁଢ଼େ ଡ଼ୁଡ଼ୁ ଖେଳ ଦେଖି ଯିବା ଆଗରୁ ଉମାକୁ ପାଖକୁ ଡାକି ଭିଆଇ କହିଗଲା— "ବୁଢ଼ି ହୁସିଆର, ଘର ଦୁଆର ମୁହଁ ଡେଇଁ କୁଆଡ଼କୁ ଯିବୁ ନାହିଁ । ନିଜ ଦୁଃଖକୁ ହାରଗୁହାରି ନାହିଁ—ବାଜେ କଥାରେ ଉପରେ ପଡ଼ି ସାହି ଲୋକଙ୍କ ସଙ୍ଗେ କଳିଆ ଦଙ୍ଗା କରିବାକୁ ମୋର ବଳ ନାହିଁ । ପିଲାରେ ପିଲାରେ ଖେଳୁ ଖେଳୁ, ଗୀତ ବୋଲୁ ବୋଲୁ ପାଟିରୁ କଣ-ନାଇଁ-କଣ ବାହାରି ପଡ଼ୁଥିବ, ଶେଷକୁ ଆମରି ମୁଣ୍ଡରେ ବାଡ଼ିଆ·········ହିଏ ପାରେ ହୋ......।"

ଏତିକି କହି ଗୋବିନ୍ଦ ସାହୁ ତ ଚାଲିଗଲେ । ଉମା ମନ ମାରି ଅସି ତାର ଖୁଡ଼ୀ ଆଗରେ ଗୁହାରି କଲା—ତା ପାଇଁ ପଦେ କହିବାକୁ । ରେଣୁ ବୋଉ ନାକ ଟେକି ଫୋପାଡ଼ିଲା ପରି କହିଲେ—"ମଲା ମୋର, ତୋର କଣ କହିବାକୁ ତୁଣ୍ଡ ନ ଥିଲା କି, ନା ଜିଭ ଛିଣ୍ଡି ପଡ଼ିଥିଲା ବା । କୁଆଁର ପୁନେଇ ଖେଳରେ ଏତେ ସନ୍ତକ ତ ଚାଲି ଯାଉନି ।"

ଖୁଡ଼ୀର ଏ ନାକ ଛିଞ୍ଚଡ଼ା ଅନୁମତିଟା ନାହିଁ କଲାଠୁଁ ବଳି । ରେଣୁ ଯଦି ଅଛି ଦେଢ଼ ବରଷର କୋଳପିଲା ନ ହୋଇ ବଡ଼ ଝିଅଟିଏ ହୋଇ-

ଥାନ୍ତା, ଖୁଡ଼ୀ କଣ ସଭରେ ଏମିତି କଠୋର କଥା କହୁଥାନ୍ତା ତାକୁ ? ଏହି କଥା ଭାବି ଜମା ଧୀରେ ଧୀରେ ସେଠାରୁ ଚାଲି ଆସୁଥିଲା, ରେଣୁ ବୋଉ ଡାକି ପଚାରିଲେ—"ବୋଉ ତୋର ଏତେବେଳଯାଏ ଗାଁରୁ ଫେରି ନାହିଁ କିଲେ ? କୋଉ ଚୁଲିରେ ପଡ଼ିଛି କେଜାଣି...... ?"

ବାଟରେ ଜମାର ଦେହସାରା ଥରିଗଲା । ଭାବିଲା—ମୁହେଁ ମୁହେଁ ତାର ଖୁଡ଼ୀଙ୍କ ଗୁଣପଦ ବଖାଣି ଦେଇ ମନର ଓରମାନ ମେଣ୍ଟେଇ ଦେବ । ତାକୁ ଦିନ ମୁହଁ ବଢ଼ିଯାଉଛି, କିଛି ନ କହିଲାରୁ । କାଲି କାନ କାଟିଲେ ମୁହଁରୁ ବଚନ ବାହାରୁ ନ ଥିଲା, ଆଜି ତୋଡ଼ ଦେଖ ! କଣ କରି-ପାରିଲା କି ? କଥା କହୁଛି ଯେ, ପାଟିରେ ବାଇଶ ରହୁ ନାହିଁ ! କିନ୍ତୁ କେଉଁ ଭରସାରେ, କାହା ଠାଣରେ ତାର ପାଟି ଖୋଲିବ ? ବାପ ମରିବାର ଦେଢ଼ ବରଷ ହେଲା । ବାପ ସଙ୍ଗେ ସଙ୍ଗେ ତାର ଅଲଅଲ ପଣ ଯାଇଛି, ବୋଉର କଦ୍ରମତି ହଜିଛି । ନିଜ ଘରେ ସେମାନେ ଆଜି ପର । ନିଜ ନିଜ ଦରବରେ ସେମାନେ ଆଜି ଚୋର ! ବାପ ଥିଲା ବେଳେ ତାର ବୋଉ ପରା ଘର ଚଳାଉଥିଲା, ତାର ବୋଉ ହାତରେ ସବୁ ଥିଲା । ଦିନେ କେବେ ସେ ତା ଠାରେ ପାତର ଅନ୍ତର, ହିଂସା ବାଦ ଦେଖି ନ ଥିଲା । ଓଲଟି ବେଳେ ବେଳେ ଦାଦି ତାର ଖୁଡ଼ୀଙ୍କ ମାରେ ବୋଲି ସେ ତାର ଦାଦିକୁ ଗାଳିଦିଏ, ଖୁଡ଼ୀକୁ କେତେ ଆଦର କରେ, ବୋଧଶୋଧ ଦିଏ ।

ଆଜି କାଳ ଓଲଟିଗଲା ବାପୁ ମଲାରୁ । ତାର ବୋଉ ପୁଣି ମୁଣ୍ଡରେ ମୁଢ଼ିଉଖୁଡ଼ା ପସରା ଧରି ଗାଁର ଘର ଘର ବୁଲିବ—ପିଏ କେବେ ଘରର ଏଗୁଣ୍ଡି ଡେଇଁ ନ ଥିଲା—ଘରର ସବୁ କାମ କରିବ, ପୁଣି ଗୁହାଳ ପୋଛିବ ! ବାପୁର ବାପ ମଲାବେଳକୁ କାହିଁ କେଉଁଠି ଗୁଣ୍ଡେ ବଣ୍ଟାଏ କଣ ଯାଗା ନ ଥିଲା । ପିଲାଦିନୁ ଗୋବର ଫାଳିଫାକିଆ ହୋଇ ବୁଲୁଥାଏ । ବାପୁ ବଞ୍ଚିଥିବା ଯାଏ ସେ ତ ଘର କଥା କିଛି ବୁଝେ ନାହିଁ । ଯେଉଁ ଦଶ ପଦର ମାଣ ହେଲା, ସେତକ ବାପୁ ସାଉଁର କମେଇଁ; ନିଜ ଦେହ ମିହନ୍ତ, ବୁଦ୍ଧିର ଖେଳରେ ହୋଇଛି । ସେ ଆଜି ବୁଢ଼ାଲୋକୁ ଅଜାସିନା ଯା ! ହଉ, ଠାକୁରେ ଅଛନ୍ତି ! ଜମା କାନ୍ଦ କାନ୍ଦ ହୋଇ ବାଡ଼ି ଅଡ଼କୁ ଗଲା । ବାଡପଟେ ଶଜନା ଗଛ ମୂଳରେ ଠିଆହୋଇ ସେ ତାର ବାପାକୁ ମନେକରି କେତେ କାନ୍ଦିଲା ।

ଶେଷକୁ ମନ ବୁଝିଗଲାରୁ ଆଖିର ଲୁହ ହାତରେ ପୋଛି ଭାବିଲା, "ହଁ, ସେ ଏବେ ତାଙ୍କ ସାଥିଙ୍କ ଖେଳିବାକୁ କାହିଁକି ଯିବ ? ପାଞ୍ଚଘରର ଝିଅଙ୍କ ସଙ୍ଗେ ସାଙ୍ଗସରିସା ହୋଇ ଖେଳିବ କେଉଁ ମୁହଁରେ ? ଏତେ ବଡ଼ ପର୍ବ— କୁଆଁରପୁନେଇଁ—ଖଣ୍ଡେ ନୂଆଲୁଗା କିଣିଦେବାକୁ ତ ବାପା ଖୁଡ଼ୀଙ୍କର ମନ ହେଲା ନାହିଁ । ସେ ନିଜେ ଯାଇଁ ବାପାଙ୍କ କହିଲା; ବୋଉ ବି ତାର କେତେ ନେହୁରା ହୋଇ କହିଲା । ସେ ପଠେଇ ଦେଲେ ଖୁଡ଼ୀ ପାଖକୁ । ଖୁଡ଼ୀ ଯେ ଆରକ; ମୁହଁ ଶୁଖେଇ କହିଲେ, "ଟଙ୍କା କାହିଁ ?" ସବୁ କଥାକୁ ଟଙ୍କା ଅଛି, ତାପାଇଁ ଲୁଗା ଖଣ୍ଡେ କିଣିବାକୁ ଟଙ୍କା ନାହିଁ ।

ବୋଉ ତ ମନ୍ଦ ସାପ । ଖୁଡ଼ୀର ହାତଟେକାରେ ଅଛି, ତାର ଗୁହାରି କିଏ ? ଗୋଟାଏ ପଇସାକୁ ତ ସଖ୍ୟ ନୁହେଁ । ମସବା ବୁଲେଇ ବାପା ଯେଉଁ ପଇସା ଆଣେ, ବାପା ଖୁଡ଼ୀ କଡ଼ା କାନ୍ତି ହିସାବ କରି ସବୁ ନିଅନ୍ତି । ହାତ ଖରଚ ପାଇଁ ପଇସାଟାଏ ମାଗିଲେ ବି ଦେବାକୁ ତାଙ୍କ ମନ ବଳେ ନାହିଁ, ଟିକିଏ ହୋଇ ମୁଣ୍ଡଟେକା ନ ଥାଏ ।

ଉମା ଉପରକୁ ଚାହିଁଲା । ଆହା, କେଡ଼େ ସୁନ୍ଦର ଆକାଶ ! କେଡ଼େ ସୁନ୍ଦର ଜହ୍ନ ! ତାର ବାଳିକା ହୃଦୟ ଉଲ୍ଲସି ଉଠିଲା । ଗାଁ ଦାଣ୍ଡରୁ ଗାଁ ଭେଣ୍ଡିଅଙ୍କ—'ଛେଲ୍ କୁର୍ ଉର୍' ଶବ୍ଦ ସାଥି ଝିଅଙ୍କର "କୁଆଁର ପୁନେଇଁ ଜହ୍ନ, ପଡ଼ୁଥାଏ ଘନ ଘନ" ଗୀତ ଶୁଣି, ତାର ଖେଳ-ପ୍ରିୟ ଚପଳ ମନଟା ଭାରି ଉଚ୍ଛନ୍ନ ହେଲା । କାହାରି କଥା ନ ମାନି ସେ ଖେଳିବାକୁ ଯିବ, ଗାଳି ମାଡ଼ ଖାଇଲେ ଖାଇବ ପଛେ । ଛିଃ, ଏତେ ମଇଳା ପୁରୁଣା ଗନ୍ଧ ଲୁଗାଟା ପିନ୍ଧି ସାଥି ଝିଅଙ୍କ ପାଖକୁ ଯିବ କେମିତି ? ଉମା ଲୁଗାକୁ ଚାହିଁ ମୁହଁ ଶୁଖେଇଲା ।

"ଉମା ଲୋ···!"

ଅପରିଚିତ କଣ୍ଠ ସ୍ୱରଟି ଶୁଣି ଉମା ପଛ ଆଡ଼କୁ ଫେରି ଚାହିଁଲା ।

"ତୁ ଅଛି ବାଡ଼ିଅଡ଼େ, ମୁଁ ତତେ ଘରେ ଖୋଜୁଛି ? ତୋ ଖୁଡ଼ୀ ତ କାହିଁକି ତୋ ଉପରେ ଆଜି ଭାରି ଖପା । କଣ କରିଛୁ କି ? ପଚାରିଲାରୁ କହୁଛନ୍ତି—କେଜାଣି ଉମା କାହିଁ, ତାକୁ କଣ ମୁଁ ଅଣ୍ଟାରେ ଖୋସିଛି କି ?"

କହୁ କହୁ ଜଗବନ୍ଧୁ ବାଡ଼ କବାଟ ପାଖରୁ ଧୀରେ ଧୀରେ ଶଙ୍କା ମୂଳକୁ ଆସିଲା । ପଚାରିଲା, "ବୋଉ କାହିଁ ?"

ଜମା ଉତ୍ତର ଦେଲା, "ସେ ଫେରି ନାହିଁ ।"

"ଫେରି ନାହିଁ, ଏତେ ରାତି ହେଲଣି ? ସଞ୍ଜ ଆଗରୁ ଆମ ଘରକୁ ଯାଇଥିଲା ପଇସା ନେବ । ମୁଁ ତୋ କଥା ପଚାରୁଥିଲି—ତୁ କାହିଁକି ଆମ ଘରକୁ କେତେ ଦିନ ହେଲା ଯାଇ ନାହୁଁ ? ରେଣୁ ତତେ ଖୁବ ଖୋଜୁଥିଲା ।"

ଜମା କହିଲା, "ମୁଁ ଯିବାକୁ ବେଳ ପାଉ ନାହିଁ । ଦାଦା ଦିହ ଭଲ ନାହିଁ, ଗାଈ ଗୋରୁଙ୍କ ଖବର ମୋତେ ବୁଝିବାକୁ ପଡୁଛି ।"

ଜଗୁ ପଚାରିଲା, "ଆଜି ପରା କୁଆଁର ପୁନେଇ, ତୁ ଖେଳିବାକୁ ଯାଉନୁ ସାଥି ପିଲାଙ୍କ ସାଙ୍ଗରେ ? ତୋତେ ଖୁବ ଖୋଜା ପଡ଼ୁଛି, ବନମାଳୀଙ୍କ ଦୁଆରେ । ସେ ସାଥିର ସବୁ ଝିଅ ସେଠି ଜମା ହୋଇ ଖେଳୁଛନ୍ତି, ଦେଖି ଆଇଲି···।"

"ଦାଦା ଖୁଡ଼ୀ ମୋତେ ଖେଳିବାକୁ ଯିବା ପାଇଁ ମନା କରିଛନ୍ତି ।"

"କାହିଁକି ଲୋ ?"

"ଆର ବର୍ଷ କଣ କଳିଆ ଲାଗିଥିଲା ପରା ।"

"ମଲାରେ, ତୁ ତ କଳିଆ କରିନୁ ? ଅଇଲୁ, ତୋ ଖୁଡ଼ୀ ପାଖକୁ ।" ଜମାର ମୋଟେ ଇଚ୍ଛା ନ ଥିଲା । କିନ୍ତୁ ଜଗୁ ତାର ହାତ ଧରି ଓଟାରି ଆଣିଲା ଖଞ୍ଜା ଭିତରକୁ ।

ଜଗୁକୁ ଦେଖି ରେଣୁ ବୋଉ ଅଗରୁ ଆସି ଦୁଆରେ ଠିଆ ହୋଇଥିଲେ । ପଧାନଙ୍କର ପୁଅ । ମନଭିତରେ ଭକ୍ତି ପରିବର୍ତ୍ତିରେ ବରଂ ଟିକିଏ ଭୟ ଥାଏ । ଜଗୁ ଯେତିକି ଭଲ, ସେତିକି ମନ୍ଦ । ରାଗିଗଲେ କଣ ନାହିଁ କଣ କରିବ ? ବିଶେଷତଃ ଜମାକୁ ସେ ଭାରି ଭଲପାଏ—ଏକା ପେଟର ଭାଇ ଭଉଣୀ ଏମିତି ହେବେ ନାହିଁ । ଜମାକୁ କିଏ ଗାଳି ଦେଇଛି ଜାଣିଲେ, ସେ ମୁହେଁ ମୁହେଁ ଗୁରୁପଦ ଝାଡ଼ିଦେବ ।

ଏହିସବୁ କଥା ଭାବି ରେଣୁ ବୋଉ ଅଗ ବଳପଡ଼ି କହିଲେ, "ଆରେ ପୁଅ, କହିଲୁ ଭଲା, ଲୁଣ ତେଲ ଟିକେ କିଣିବାକୁ ଘରେ ପାହୁଲାଟିଏ ନାହିଁ ।

ଅଭାବ ତ ଲାଗି ରହୁଛି; ଏତେ ବଡ଼ ଧନଟା ଅଛି, ଜମା ପାଇଁ ଖଣ୍ଡେ ନୂଆଲୁଗା ହୋଇପାରୁନ ନାହିଁ । ମଇଳା କୋଡବା ହୋଇ ଅବେଳାକ ପର ପର ଘରକୁ କେମିତି ଖେଳଯାଉ ?”

ଜଗୁ ରୁକ୍ଷସ୍ୱରରେ କହୁଲ, “ମୁଁ ସେକଥା ଜାଣେ । ସବୁ କରିବାକୁ ଟଙ୍କା ଅଛି । ବଣିଆ ଘରେ ତମର ଗଣ୍ଡି ଗଢ଼ା ହେଉଛି, ତମ ଝିଅ ପାଇଁ ଅଣ୍ଟାସୂତା ବରାଦ ଦିଅ ହୋଇଛି, ଖାଲି ଜମା ପାଇଁ ଗୁଖଣ୍ଡେ ନୂଆ ଲୁଗା କିଣିବାକୁ ପଇସା ନାହିଁ । ସେ ତ କାହୁଁ ଅଇଲାଟାଏ...... ।”

ରେଣୁ ବୋଉ ଲାଜ ଲାଜ ହୋଇ କହୁଲେ, “ଯାହା ଘର କଥା ସିନା ସିଏ ଜାଣେ ।” ଜଗୁ କହୁଲ, “ଠିକ୍ । ବାପୁ ମଉସା ଥିଲେ, ଏ କଥା କହୁବାକୁ ଜିଭ ଲେଉଟି ନ ଥାନ୍ତା । ସେ ମରିଗଲ କୋଲି ଆଜ ତା ଝିଅ ଆଖିରେ ଲୁହ...... ।”

ଏତିକ କହୁ ଜଗୁ କାଖତଳୁ ଖଣ୍ଡେ ନୂଆ ଶାଢ଼ୀ କାଢ଼ି ଜମା ଆଡ଼କୁ ପକାଇ ଦେଇ କହୁଲ, “ନେ ଲେ ଜମା, ପିନ୍ଧିକରି ଜଲଦ ବାହାରିପଡ଼ । ଖଣ୍ଡେ ଲୁଗାପାଇଁ ତୁ ମନ ମାରି ଘରେ ବସିଚୁ, ମୋତେ ଖବର ଦେଇନ୍ । ମିଛଟାରେ କଣ ତୋ ବୋଉ ମୋତେ ମାହାର୍ଦ ଦେଇଛି... ।”

ଜମାର ମଉଳା ମୁହଁଟି ପୁଣି ସଜ ଗୋଲାପ ପରି ଉଜ୍ଜ୍ୱଳ ହୋଇଗଲ । ତାର ସୁନ୍ଦର ଓଠ ଦାନ୍ତଟି ହସରେ ପୂରି ଉଠିଲ । ସତରେ ଏକା ଜଗୁ ଭାଇ ତାକୁ କେତେ ଭଲ ପାଏ ! ସେ ଲୁଗାଟି ତଳୁ ଉଠାଇ ଘର ଭିତରକୁ ପିନ୍ଧିବାକୁ ଗୁଲିଗଲ ।

ରେଣୁ ବୋଉ ପଚାରିଲେ, “ଲୁଗା କେଉଁଠୁ ପାଇଲ ଜଗୁ ?”

“ଚୋରି କଲି, ତେମେ ସେଥିରୁ କଣ ପାଇବ ?”

“ପଧାନେ ଯଦି... ।”

“ବାପାଙ୍କ କାନକୁ ଯଦି ଏ କଥା ଯାଏ, ମତେ ଗଳୁଟି ? ମୁଁ କାହାରି ନୁହେଁ ରେ । ବାପାଙ୍କୁ ଜବାବ ଦେବା ଅଗରୁ ତମ ଘରେ ନିଆଁ ଲଗାଇବି ଜାଣିଥା ।”

“ନାଇଁ ମୁଁ ପଚାରୁଥିଲି ନା...... ।”

“ବୁଝିଲ ତ ।”

ଉମା ନୂଆ ଲୁଗାଟି ପିନ୍ଧି ଡର ଡର ହୋଇ ଆସି ଜଗୁ ପାଖରେ ଠିଆ ହେଲା । ତାର ଅଲବ୍ଧ ମୁଣ୍ଡର ଫର୍ ଫର୍ ବାଳ ମୁହଁ ଉପରେ କେବ୍ କେବ୍ ହୋଇ ପଡ଼ୁଥାଏ । ଜଗୁ ସ୍ନେହରେ ସେତକ ସଜାଡ଼ୁ ସଜାଡ଼ୁ କହିଲା—"ଦେଖିଲ; ଏଥର ଉମା କେଡ଼େ ସୁନ୍ଦର ଦିଶୁଛି ! ଗାଁଟା ଯାକରେ ଗୋଟାଏ ଝିଅ ତ ! ତାକୁ ଦେଖି ତମ ପେଟ ପୂରେ ନାହିଁ !"

ମୁହଁ ମୋଡ଼ି ସାମାନ୍ୟ ହସି ବଦ୍ରୂପ କରି ରେଣୁ ବୋଉ କହିଲେ, "ତୋରି ପେଟ ପୂରୁ ରେ...!"

ଜଗୁ ଗମ୍ଭୀର ହୋଇ ଉମାର ହାତ ଧରି କହିଲା, "ଆ ଲୋ ଉମା, ତତେ ବନମାଳୀ ଘରେ ଛାଡ଼ି ଦେଇ ମୁଁ ଡୁଡୁ ଖେଳିବାକୁ ଯିବି ।" ରେଣୁ ବୋଉକୁ ଲକ୍ଷ୍ୟ କରି, "ମାଉସି ଆସିଲେ, କହିଦେବ ।"

ଜଗୁ ପଛେ ପଛେ ଉମା ଗଲା ।

ରେଣୁ ବୋଉ ମନକୁ ମନ ଭୁଟ୍ ଭୁଟ୍ ହୋଇ କହିଲେ,"ଏ କିଏ ରେ ଖଣ୍ଡିଆ ! ଭାଇ ନା ବନ୍ଧୁ ! ଉମାକୁ ଦେଖି ସୋହାଗ ଗଳି ପଡ଼ୁଛି ଅଁ । କିଏ କହିବ ଲୋ ମା, ହଣ୍ଡାଟାଏ ସମସ୍ତଙ୍କ ଭିତରେଇ ରଖିଛି ।"

## —ତିନି—

ଅନ୍ଧାର ବ ବର୍ଷ ଗଡ଼ିଗଲାଣି ।

ରେଣୁଟି ଏବେ ବଡ଼ ହୋଇଗଲାଣି । ପାଞ୍ଚ ଛ ବର୍ଷର ପିଲା, ଦେଖିବାକୁ ଉଜଳ ଡାଉଲ ସୁନ୍ଦର ଚେହେରା । ଗୁଲ୍ଲୁ ଗୁଲ୍ଲୁ କଥାଗୁଡ଼ିକ ତା ପାଟିରେ କେଡ଼େ ସୁନ୍ଦର ଶୁଭେ ! ବଡ଼ ବିଚକ୍ଷଣ ବୁଦ୍ଧି ! ଗାଁ ଚାଟଶାଳରେ ବସି ପଢ଼େ—ଛ ମାସ ହେଲା ପାଠ ଆରମ୍ଭ କରିଛି—ଏ ଭିତରେ ସବୁ ଫଳା ଶେଷ କରି, ଏଣେ ପାହି ପଣକିଆ ଅଧା କଲାଣି । ଯାହା ଥରେ ପଢ଼େ, ଆଉ ଭୁଲେ ନାହିଁ—ସେଥିପାଇଁ ମାୟାଧର ମାଷ୍ଟ୍ରେ ତାକୁ ଭାରି ଶ୍ରଦ୍ଧା କରନ୍ତି ।

ପଧାନ ବୁଢ଼ାଙ୍କର ତ ସେ ପ୍ରାଣ । ହେବାର କଥା,ବଡ଼ପୁଅ ରଘୁଟି—ଭେଣ୍ଡା ପୁଅ, କି ଫୁର୍ତ୍ତି; କି ବୁଦ୍ଧି, କେଡ଼େ ବିଚକ୍ଷଣ ଟୋକାଟା ! ମୁହୂର୍ତ୍ତେ

କେଉଁଠି ଅଳସ ହୋଇ ବସିବ ନାହିଁ । ବାଜେ କଥା, ବୃଥା ତର୍କର ପାଖ ପଶିବ ନାହିଁ—କାମ, କାମ । ସବୁବେଳେ କାମରେ ମନ—ଗୃହଅଢ଼କୁ ନିଘା; ସବୁ କଥାରେ ନଜର । ବ୍ୟବସାୟ, ଦେଢ଼ି ମହାଜନୀରେ ବି ଭାର ପକ୍କା—ପଧାନେ ଭାବଥିଲେ ପୁଅ ଏଥର ମଣିଷ ହେଲା,ତାଙ୍କର ଦୁଃଖ ଯିବ । କେତେ ଜ୍ୟୋତିଷୀ ପଣ୍ଡିତଙ୍କର ପରାମର୍ଶ ନେଇ ହାତକ ଦହାଡ କରି ଦେଲେ । ମା ତ ନାହିଁ, ଘର କାମ ଚଳିବ ବୋଲି ବଡ଼ ଝିଅ—ଷୋଳ ବର୍ଷର ସ୍ୱର୍ଣ୍ଣ ପ୍ରତିମା ବୋହୂ ରୁକୁଣୀକୁ ଘରକୁ ଆଣିଥିଲେ । ଗୃହ ମାସ ପୂରିଲା ନାହିଁ, ତାଙ୍କର ଛାତିରେ ଆଘାତ ଦେଇ ରଘୁ ଚାଲିଗଲା, ସାମାନ୍ୟ ଟିକିଏ ଜରରେ । ବେଣୁ ଥିଲା ପେଟରେ । ଯେତେବେଳେ ଘର ଉଜ୍ଜ୍ୱଳ କରି ସେ ଜନ୍ମ ହେଲା, ପଧାନେ ପୁଅ ମରିବା ଦୁଃଖଟି ପାଶୋରିଲେ, ଶିଶୁର ମୁହଁ ଦେଖି । ସେଇଥିପାଇଁ ସେ ତାଙ୍କର ଅତି ଆଦରର ଧନ, ଆଖିର ପିତୁଳା—ତାକୁ ଦଣ୍ଡେ ନ ଦେଖିଲେ ସେ ବଣା ହୁଅନ୍ତି । ବେଣୁ ବି ତାଙ୍କୁ ଭାରି ଆଦରିଥାଏ ।

ସେଦିନ ଦିପହରେ ବେଣୁର ଆଖିରେ ଲୁହ ଦେଖି ଜଗୁ ବଡ଼ ବିସ୍ମିତ ହେଲା । ସେ ପିଲା ତ କାନ୍ଦିବାର ପିଲା ନୁହେ । ଦୁଃଖ ଅଭାବ କିଛି ଜାଣେ ନାହିଁ । ତା ମନରେ ଏପରି କଣ କଷ୍ଟ ହୋଇଛି ଯେ ତାର ଆଖିରେ ଲୁହ । ଜଗୁ ବନସୀଖଡ଼ାଟା ବା ପୋଖରୀ (ଠେଙ୍ଗା ଖଣ୍ଡେ) କୂଳର କଦଳୀ ଗଛକୁ ଆଉଜାଇ ରଖି ବେଣୁକୁ କାଖ କରି ପଚାରିଲା, "କାନ୍ଦୁଛୁ କାହିଁକି ବାପ ?"

ବେଣୁ କିଛି ନ କହି ତାର ଟିକି ମୁହଁଟିକି ଦାଦାର କାନ୍ଧ ଭିତରେ ଲୁଚାଇଦେଲା । ଜଗୁ ତାର ମୁଣ୍ଡ ଟେକି ଦେଖିଲା, ସତରେ ସେ କାନ୍ଦୁଛି । ସେ ବେଣୁକୁ କୁଅଁଳେଇ ପଚାରିଲା, "କିରେ କେଜା ତତେ କଣ କହୁଛି କି ?" ବେଣୁର ଉତ୍ତରକୁ ଅପେକ୍ଷା ନ କରି କହିବାକୁ ଲାଗିଲା, "ଛତର–ଖାଇର ମୁହଁ ବଦଳଇ ଦେଇଛନ୍ତି ବାପା । କିଏ କଣ କରିବ ? ନଇଲେ ଦି ବାଧାରେ ତାକୁ ସିଧା କରି ଦିଅନ୍ତି । ବଦା ହୋଇ ପଳାଇବାକୁ ତର ସହିନ୍ତା ନାହିଁ । ଅଛି ରହ, ଦିନେ ଅନ୍ଧାରିଆ ଦି ପୁଞ୍ଜା ଥୋଉଛି ।" ବେଣୁକୁ ତଳେ ଓହ୍ଲାଇ କହିଲା, "ଭୁଲି ଯା । ଆ, ଆମର ମାଛ ଧରିବା ।"

ଏତିକି କହୁ ପୁଣି ବନସୀଖଡ଼ା ଉଠାଇ କଣ୍ଟାରେ ଜିଆ ଗୁନ୍ଥିବାରେ ସେ ଲାଗିଗଲା ।

ନେଟା କେତେବେଳୁ ଆସି ଗୋଟାଏ କଦଳୀ ବୁଦାର ପଛପଟେ ନଇଁପଡ଼ କଣ୍ଠା ଲଙ୍କାମରିଚ ତୋଳୁଥିଲା । ଜଗୁର କଥା ତାର କାନରେ ବାଜିବାରୁ ସେ ଧୀରେ ଧୀରେ ଆସି ଠିକ ପାଖରେ ଠିଆହୋଇ ପଚାରିଲା, "କଣ କହୁଥିଲୁ ଜଗୁ ?"

ଜଗୁ ଜିଭ କାମୁଡ଼ିଲା । ନେଟା କେତେବେଳୁ ପଛରେ ଠିଆହୋଇ କାନ ପାରି ତାର ସବୁ କଥା ଶୁଣୁଛି । ସର୍ବନାଶ, ସେ ସିନା ପଛରେ ତାକୁ ବାରଙ୍କଥା କୁହେ; ସାମନା ଉପରେ ଭରସିକରି କଛି କହିବାକୁ ବର୍ତ୍ତମାନ ସେ ଆଉ ସାହସ କରି ପାରେ ନାହିଁ ।

ନେଟା—ଖଣ୍ଡେଇତ ଘର ପିଲା, ବଡ଼ ଗରିବ । ବାଣ୍ଡୀ ମାଟି ତା ହାତକୁ ମୂଲଆମୂର୍ଖ ଦେଖି ଯାହା ହାତରେ ଛନ୍ଦଦେଇ ନିଶ୍ଚିନ୍ତ ହୋଇ ଆଖି ବୁଜିଲା, ସେହି ଲୋକଟି—ଭିର ନିପାରିଲା, ରୋଗା—କାମ ଖୋଜିବାକୁ ଯାଇ କୁଆଡ଼େ ଯେ ରହିଲା, କେହି ସେ କଥା କହି ପାରିଲେ ନାହିଁ । ଏ ଆଖି ଲୁହ ସେ ଆଖିରେ ମାରି ଦୁଃଖଧନ୍ଦା କରି ପେଟ ପୋଷିଲା । ଗେରସ୍ତ ଗଲା ବାଟକୁ ଗୃହି ବେଳ କାଟିଲା—ମାସେ ଗଲା,ବର୍ଷେ ଗଲା, ଅନଜ ଅନଜ ପୂରା ପାଞ୍ଚ ବର୍ଷ କଟିଗଲା; ତଥାପି ସେ ଫେରିଲା ନାହିଁ । ଆଉ କେତେ ଦିନ ଗୃହିଁ ବସନ୍ତା ? ମଣିଷ ମନ ତ ! ପେଟ ପୋଷ, ନାହିଁ ଦୋଷ । ପେଟ ବଳରେ ଆସି ଦାଣ୍ଡରେ ଠିଆହେଲା । ସାହାସମ୍ବଳ କେହି ନାହିଁ ! ଗୃହ ଆଜ ଶୂନ୍ୟ । ସେ ଏକାଟୁହା ହୋଇ ଗୃଲିଲା—ଅନିଶ୍ଚିତର ଅନ୍ଧାର ଭିତରେ ଅଣ୍ଡାଳିହୋଇ ।

ଶେଷକୁ ନଗପୁରର ମହାଜନ ପଧାନଙ୍କର ନଜରରେ ପଡ଼ିଲା ସେ । କିଛି ବୁଢ଼ାହଡ଼ା ନୁହେଁ । ବଅସ ଥିଲା ମାଇପିଟା ଆଖିସହା ଚେହେରା,କାମ–ଦାମକୁ ସଖ୍ୟ । ତାଙ୍କର ତ ଘର ଭିତରର ଅବସ୍ଥା ଖରାପ । ସ୍ତ୍ରୀ—ଘରର ଘରଣୀ—ଗୃଲିଯାଇଥିଲେ, ସେତେ ବେଶି ବାଧ୍ୟ ନ ଥିଲା ! ଢେଉ ଥିଲାରୁ ଘରକାମରେ ଖରାପ ହୋଇ ନ ଥିଲା । ଏଣେ ଗେହ୍ଲା ପୁଅ ରଘୁର କାଳ ହୋଇଗଲା । ମୁଣ୍ଡରେ ସତେ କି ତାଙ୍କର ଚଡ଼କ ପଡ଼ିଲା । ତହିଁରେ ପୁଣି

ଲେଖାଯୋଖାରେ ପିସୀଝିଅ ଭଉଣୀର ଖୁଡୁତା ଦେଢ଼ୁତା ଝିଅଘ ହେବ ଅଗ, ଚୁଲ୍ଲିରେ ହାଣ୍ଡି ବସାଇ ମୁଠାଏ ଫୁଟାଇ ସେ ଉତାର ଦେଉଥିଲା । ହଠ୍ଚ ଗୋଟାଏ ଛୋଟ କଥା ନେଇ ତା ସଙ୍ଗେ ମତାନ୍ତର ହେବାରୁ ସେ ବ ଗୁଲିଗଲା ତା ବାପଘରକୁ । ଛଗୁଟା ତ ମଣିଷ ହେଲା ନାହିଁ, ଭଲ କଥାଟିଏ କହିଲେ ବୋଲକୁ ବାନ୍ତ କରିବ । ମାନ୍ୟଗଣ୍ୟ ଲୋକ ବାପ, ତାଙ୍କର କଥାକୁ ତେଡିଦେଇ ବାଖାଡାଦେଇ ବୁଲୁ ଥିବ । ବାଙ୍କେଣି ଘଣ୍ଟା, ଯେତେ କହିଲେ ଶୁଣିବ ନାହିଁ । କାମ ଚଳେ କେମିତି ? ପଧାନଙ୍କର ଦାନକୁ ଦାନ ବଅସ ଖସୁଛି, ଦେହରୁ ତାକତ କମୁଛି । କାହାକୁ ଗୋଟାଏ ଆପଣାର କରି ନ ରଖିଲେ ଗୃହଅଡ଼୍ଦ ଦାହଗଞ୍ଜ । ବୋହୂ ତ ପିଲା । ତହିଁରେ ପୁଣି ଅସହ । ପିଲା ବଅସରୁ ମୁଣ୍ଡରୁ ସିନ୍ଦୂର ଲିଭିଲ, କାନ୍ଦ କାନ୍ଦ ବେଳ କାଟୁଛନ୍ତି । ତାଙ୍କୁ ଏବେ କହିବ କଣ ?

ଶେଷକୁ ନେତା ଅସିଲା । କଥା ଗୃହପଦ ଶୁଣି ପଧାନେ ସନ୍ତୁଷ୍ଟ ହୋଇ ତାକୁ ଘରେ ସ୍ଥାନ ଦେଲେ । ଜାତର ଲୋକ, ଦାଣ୍ଡରେ କେହି ପଢେ ଖୁଣି କହିବାକୁ ବାଟ ପାଇଲେ ନାହିଁ । ନେତା ବେଶ୍ କାମିକା ଲୋକ, ଦାନ କେଇଟାରେ ସମସ୍ତଙ୍କର ବଡ଼ ପ୍ରିୟପାତ୍ରୀ ହୋଇପଡିଲା । ଏପରିକି ପଧାନେ ବ ତା କଥାରେ ଭୁଲିଲେ । ସେ ଯାହା କହିବ ସେଇଆ । ଧୀରେ ଧୀରେ ତେର ଲାଗିଗଲା । ଘଟଣାର ଚଳନ୍ତି ହାଉଆରେ ଟଳିପଡ଼ିବାର ସବୁ ଭୟ ତାର ଗଲା । ସେ ହେଲା ଘରର ଜଣେ ମାଲିକ—ସବୁ ଟଙ୍କ ପ୍ରତି ଲୋଭ, ସବୁ କଥାରେ ନଜର, ଅଖି ଅଗରୁ କୁଟା ଖିଏ କ ଶାଗ କେରାଏ କେହି ନେଇ ପାରିବ ନାହିଁ । କୋଠିଅ, ଗୃହର, ଗଲା ଅଇଲାଙ୍କର ତାର ସଙ୍ଗେ କଥାଭାଷା, ତାର ପାଖରେ ଓଜରଅପତ୍ତି, ଦୁଃଖଜଣାଣ । ଏପରିକି ପିଲାକୁଅଙ୍କଠାରୁ ଆରମ୍ଭ କରି, ଜଙ୍କେ ପଧାନ ବୁଢାଙ୍କର ବ ଦେହମୁଣ୍ଡକୁ ସାହା ଏକା ସେଇ, ଗୋଟା ଘଷାଠାରୁ ତେଲଲଗା ଯାଏ ।

କେତେ ମାସ କଟିଗଲା । ବେଣୁ ଜନ୍ମ ହେଲା । ନେତାର ତେର ମାଟିଭିତରେ ମାଡ଼ ମାଡ ଶେଷକୁ ତାର ମୂଳକୁ ଭିର ଟାଣ କରିଦେଲା । ପଧାନଙ୍କର ଅମାର ଘର, ଟଙ୍କା ବାକ୍ସର ଗୃବ ତା ହାତକୁ ଅସିଲା । ସେ ହେଲା ଏକପ୍ରକାର ଘରର ମୁରବୀ । ତାକୁ ନ ପଚ୍ଚରି ପଧାନେ କିଛି କରନ୍ତି

ନାହିଁ । ତାର ବିନା ପରାମର୍ଶରେ କାହାରେ କାହାକୁ ପଦେ କହିବାକୁ ଟିକେ ସାହସ କରନ୍ତି ନାହିଁ । ଏହିସବୁ କାରଣରୁ ନେଡି ବଳ ପାଇଲା । ତାର ମୁହଁ ବଢ଼ିଲା, ସାହସ ବଢ଼ିଲା । ବାରବୁଲା କୁକୁରଙ୍କୁ ଆଶ୍ୱାସନା ଦେଲେ ସେ ତ ଆହ୍ଳାଦରେ ମୁହଁରେ ବୋକ ଦେବ । ନେଡି ତ ଥୋଇଲାପୋଇଲା ଛାଡ଼ର ଲୋକ, ମୁହଁ ପାଇ ନିଜ ଗୁଣ ପ୍ରକାଶ ନ କରିବ କାହିଁକି ?

ବର୍ଷ ପରେ ବର୍ଷ କଟିଗଲା । ସେ ହୋଇଗଲା ସତେ କି ଘରର ମାଲିକ । ପଧାନ ବୁଢ଼ା ତ ତା ହାତମୁଠାରେ ରହିଲେ । ସେ ଯାହା କହେ ସେଇଆ, ଯାହା ବୁଝାଏ ସେଇଆ ବୁଝନ୍ତି, ଯେମିତି ନଚାଏ, ସେମିତି ନାଚନ୍ତି । ଏଣିକି ନେଡି ଭଲମନ୍ଦରେ କଥା ଅକଥାରେ ଓଲଟି ଜବାବ ଦିଏ, ଦାଉ ପଡ଼ିଲେ ନାଲିଆଖି ଦେଖାଇ ଚପାଇଦିଏ । ସମସ୍ତେ ସହନ୍ତି । ଜଗୁ ପଛରେ ଗୁଣୁ ଗୁଣୁ ହେଲେ ବି ଆଗରେ କିଛି କହିପାରେ ନାହିଁ । ଧନ ଦରବ ସବୁ ତାରି ହାତରେ । ନିଜର ତ ଉପାର୍ଜନ କରିବାର ସାହସ ନାହିଁ, ଶକ୍ତି ନାହିଁ । ଦରକାର ବେଳେ ନେଡିକୁ ଗୁରି ପଇସା ମାଗିଲେ ସେ ନାହିଁ କରେ ନାହିଁ, ବାପ ଅଜାଣତରେ ଦିଏ । ସେଇଥି-ପାଇଁ ଜଗୁ ତୁନି ରହେ । ନିଜ କାମ, ନିଜ ଗରଜ ଚଳିଲେ ଗଲା; କିନ୍ତୁ ସହିପାରନ୍ତି ନାହିଁ ଏକା ବେଣୁ ବୋଉ ।

ଭଲରେ ଭଲ, ତାଙ୍କର ଆଗରେ ଶ୍ୱଶୁରର କାଳି ତାକୁ ବାଟରୁ ଧରିଆଣି ଘରକାମ କରିବାକୁ ରଖିଛନ୍ତି । ସେ ପୁଣି ଅଜି ପୋଇଲାଟାର ହାତଟେକାରେ ରହିବେ ? ତାର ହୁକୁମ ମାନି ଚଳିବେ ? ସେ କଥା ସହିବ ନାହିଁ । ବେଣୁ ବୋଉ ମୁହେଁ ମୁହେଁ ତାକୁ ବତାନ୍ତି । ଅଖିଲ ମଣିଷ; କଥା ଯାଇଁ କେଉଁଠି ବାଜେ, ସେ କଥା କି ସେ ବୁଝନ୍ତି ? ଏହି ଗୋଟିଏ କାରଣରୁ ଶ୍ୱଶୁର ବି ତାଙ୍କ ଉପରେ ବିରକ୍ତ ଏବଂ କେବଳ ଏହି କାରଣରୁ ସେ ଅଧିକାଂଶ ବେଳେ ଗୁରି କୋଶ ଦୂର ବାପଘରେ ରହିଥାନ୍ତି—ରହିବାକୁ ଭଲ ପାନ୍ତି । ଶ୍ୱଶୁର ଘରେ ଗୋଡ଼ ଦେଲେ ମିଛଟାରେ ହେଲେ ଖିଟ୍‌ଖାଟ୍ ଲଗିବ, ଘରେ ଅଶାନ୍ତି ବଢ଼ିବ । କାହା କଥା ତ କାହା ଦେହରେ ଯାଏ ନାହିଁ । କିଏ ତାହାଙ୍କ କାହାର ଅନ୍ୟ-ଉପଣ ବରଦାସ୍ତ କରିବ ?

ବେଣୁ ବୋଉ ବାପଘରେ ଅଧିକ ଦିନ ରହନ୍ତି ବୋଲି ଯେ ବୁଢା ପଧାନଙ୍କ ମନରେ ଦୁଃଖ ହୁଏ, ସେପରୁ ନୁହେଁ; ବରଂ ସେ ସେହିଆ ଗୃହାନ୍ତି । ବେଳ ଯେପରି ପଡ଼ିଲାଣି, ମଣିଷଟିଏ ପୋଷିଲେ ଯିଏ, ହାତୀଟିଏ ପୋଷିଲେ ସିଏ । ଯାହାର କାମ କରି ଗୁରୁ ପଇସା ରୋଜଗାର କରିବାର କାଢ଼ ନାହିଁ, ଯାହାର ଘରଦ୍ୱାର ବାନଲବ୍ ପ୍ରତି ନଜର ନାହିଁ, ତକା କାରଣରେ ସେପରି ଲୋକକୁ ପୋଷିବା ଯାହା, ଧାନ ଠୋକେଇ ଖତକୁଡ଼ରେ ଅଜାଡବା ସେହିଆ । ପର ଝିଅ ତ, ଉପରେ ଉପରେ ଚାଲିଗଲେ ଯାଏ ।

କିନ୍ତୁ ଯାହାହେଉ ପଧାନେ ତାଙ୍କର ଆଖିର ପିତୁଳା ବେଣୁଟିକୁ ଆଖି ଅଗରୁ ଛାଡିବାକୁ ରାଜି ନୁହନ୍ତି । ସେଇଥିପାଇଁ ବେଣୁ ବୋଉ ଅଧେ ଦିନ ବାପଘରେ ରହିଲେ ବି ବେଣୁ ବୁଢ଼ାଙ୍କ ନିକଟରେ ରହେ । ବେଣି କନ୍ଦାକଟା କଲେ ବି ଅଝଟ ଲଗାଇଲେ, ମାକୁ ଦେଖିବାକୁ ଦିନକ ପାଇଁ ପଠାଇ ପିଲାକୁ ଗୋଡ଼େ ଗୋଡ଼େ ଫେରାଇ ଆଣନ୍ତି । ବେଣୁ ବି ବୁଢ଼ାଙ୍କୁ ଅଦର ଯାଇଛି । ଫେରି ଆସିବାକୁ ଆପତ୍ତି କରେ ନାହିଁ । ଆପତ୍ତି କଲେ ବା ଶୁଣୁଛି କିଏ ?

ବେଣୁ ବୋଉ ଆଜିକି ଗୁରିମାସ ହେବ ବାପଘରକୁ ଗଲେଣି— ତାଙ୍କର ମଲା ହଜିଲା କେହି ଖୋଜନ୍ତି ନାହିଁ; ବରଂ ଛଅଦିନ ପୂର୍ବେ ଅଗ ବାଲପଞ୍ଚ ତାଙ୍କ ବାପଘର ଲୋକ ପଠାଇଥିଲେ, ଖବର ଦେଇଥିଲେ— ତମ ବୋହୂକୁ ତମେ ନେଇ ଯା । ବେହେରା ଗଲା—ସବାରୀ ଗଳିଡ଼ ମିଳୁ ନାହାନ୍ତି, ଦିନବାର ବି ଭଲ ନାହିଁ, ବେଳ ଗଣି ଜଣା ପଠାଇବେ । ଲୋକ ଫେରିଗଲା ।

ସେହି ଦିନରୁ ବେଣୁ ମନରେ ସୁଖ ନାହିଁ । ପିଲା ଲୋକ, ହୁଏ ତ ମନେ ମନେ ମାକୁ ଝୁରୁଛି ! ଭରସି କରି କହିପାରୁ ନାହିଁ । ସେ ଦିନ ସେ ଜଣ ଭୁବନ କେଜାଣି, ଦିନ ଦିପହରେ ଦାଦାକୁ ଏକୁଟିଆ ଦେଖି କାନ୍ଦ ପକାଇଲା । ଯା ହେଉ ନେତାର କଥା ଶୁଣି ଜଗୁ କହିଲା—"ବେଣୁ କାନ୍ଦୁଛି ବୋଲି ମୁଁ ତାକୁ ଏଣୁ ତେଣୁ କହି ବୁଝାଉଥିଲି, ତୁ ଏଠୁ ଯାଉନୁ...।"

ନେତା ଜବରଦସ୍ତି ଓଠ ଉପରକୁ ହସଟାଏ ଟାଣି ଆଣି କହିଲା, "ଭଲରେ ମନରେ ସବୁବେଳେ ତ ତୋର ମୋ ଉପରେ ଅଦଉତି ରେ !

ମୁଁ ତ ତୋର ସବୁବେଳେ ଶୁଭ ମନାସୁଥାଏ । ମୋର ଛାଇ ପଡ଼ିଲେ, ତୋର ନାହି ଡିଅଁଏ କାହିଁକି ?

ଜଗୁ ଲାଜ ଲାଜ ହୋଇ କହିଲା, "ତୁ ଭୁଲ ବୁଝିଛୁ ନେତା ! ପିଲା ଭୁଲାଇବାକୁ କେତେବେଳେ କଣ ମିଛରେ କହିଦେଲି ବୋଲି ତୁ ମୋ କଥାକୁ ଧରିବସୁଛୁ !"

ନେତା ଜାଣେ ଜଗୁ ସୁବିଧା ପାଇଲେ ନିଶ୍ଚୟ ବେଳ ଦେଖି ତାର କହିଲା କାମ କରିବାକୁ ପଛେଇବ ନାହିଁ । ସେ ଯେତେ ଗୋଳେଇ-ଘୋଳେଇ ହେଲେ ବି, ବେଳେ ବେଳେ ପଇସା କଉଡ଼ି ଲାଞ୍ଚ ଦେଲେ ବି ଜଗୁଟାକୁ ଆପଣାର କରି ପାରିଲା ନାହିଁ । ଆଉ ଗୋଟାଏ ବାଟ ଅଛି । ସେ କେତେଦିନୁ ଭାବି ସ୍ଥିର କରିଛି । ମନ କଥା ମନରେ, ଯଦି ତାର ମନ୍ତ୍ର ଲାଗେ, ତେବେ ହୁଏ ତ ଏ ପାଖ—ନୋହିଲେ ସେ ପାଖ । ନେତା ଆଖିରୁ ଲୁହ ପୋଛି କହିଲା—"ତୋର କଥା ଯଦି ମୁଁ ଧରି ବସୁଥାନ୍ତି, ତେବେ ତ କେବଠୁଁ ଦଉଡ଼ି ଦେଇ ମରନ୍ତିଣି । କାଲିକା ଟୁଆଟା ତୁ, ଦି ବିଧା ମାଇଲେ ବି ତ ମୁଁ ସହିବି । କାହା ଆଗରେ କହିବାକୁ କଣ ମୋର ଜିଭ ଲେଉଟିବ ? ତମର ଜଞ୍ଜାଳ ଯଦି ମୁଁ ନ ସହିବି, ଆଉ ସହିବ କିଏ ରେ ବାବୁ !"

ପ୍ରକୃତରେ ଜଗୁ ମନରେ ଭାରି ଦୁଃଖ ହେଲା—ଆହା ! ବୃଥା ସେ ତାକୁ ଏମିତି କଥା କହିଲା କାହିଁକି ? ନ କହିଲେ ତ ବେଶ୍ ଚଳି-ଆନ୍ତା । କାଲି ପରି ସେ ବନସୀ କଣ୍ଟା, ଡୋର କିଣିବାକୁ କିଛି କିଛି ସଙ୍ଗେ ସଙ୍ଗେ ଚୋରି ପଇସା କାଢ଼ି ଦେଇଥିଲା । ବାପା ଜାଣିଥିଲେ ତାକୁ ଆଉ ରଖି-ଆନ୍ତେ ? ନା, ସେ ଏପରି କହି ବଡ଼ ଅନ୍ୟାୟ କରିଛି । ମନେ ମନେ ଅନୁତାପ କରି ସେ କହିଲା—"ମୋତେ ମାଫ୍ କର ।" ନେତା ଜାଣେ, ଜଗୁଟା ବରଝାଞ୍ଜି । କେତେବେଳେ କେଉଁ କଥାକୁ ଆଉଜ ପଡ଼େ, ତାର ଠିକଣା ନାହିଁ । ଆଜି ଯଦି ଭଲ ତ କାଲି ପୁଣି ବିଗିଡ଼ିଗଲାଣି । ସେ ଆଉ କିଛି ନ କହି ବେଣୁକୁ କାଖ କଲା । ତାର ଆଖିର ଲୁହ ପୋଛି କହିଲା—"ମରିଯାଉଥାଏଁ ଲୋ, ଦେଖିଲୁ ଟୁଆଟା କେତେ କାନ୍ଦୁଛି ମିଛଟାରେ ! ଆ, ଜମା ତୋ ପାଇଁ ଖଜା ଦେଇଛି, ଗୁଲ ଖାଇବୁ !"

ଏତିକି କହି ନେତା ଚାଲିଯାଉଥିଲା । ଲଗୁ ବନସୀଟାକୁ କୂଳରେ ପୋଛିଦେଇ ତାକୁ ପଛରୁ ଡାକ ପଚାରିଲା, "ଉମା କଣ ଆସିଛି କି ?"

ନେତା ବୁଲିପଡ଼ି କହିଲା—"ହଁ, ସେ ତାର ଅଛଣି ବୋଉକୁ ନେଇ ଏ ଭଣ୍ଡୁରିଦିଆ ଦପଦ୍ୱାରଟାରେ ଯୋଡ଼ ଆଡ଼େ ଯାଉଥିଲା । ମୋର ହାବୁଡ଼େ ଦେଲା ଯେ, ମୁଁ ତାକୁ ଘରକୁ ଡ଼ାକିଅଣିଛି । ସେ କଣ ଆସୁଥିଲା କି ? କେତେ ଗୁଣ ନୟନ ଦେଇ, ହାତ ଧରି ଟାଣି ଅଣିଛି ।" ମୁହୂର୍ତ୍ତେ ଚୁପ ରହି ପୁଣି କହିଲା—"ଅହା, ମା ଝିଅ ଦିହିଙ୍କି ଦେଖିଲେ ମୋତେ ଭାରି ବିକଳ ମାଡ଼େ । କଅଣ ପରି ଘର କରୁଥିଲେ;ବାପୁ ଥିଲେ ଆଜି ତାଙ୍କ ଅବସ୍ଥା ଏପରି କାହିଁକି ହୁଅନ୍ତା ? ଯାହା ବା ଥିଲା, କୁଅଙ୍କୁ ନଥାଁ ଲଗା ବସନ୍ତ ଆସି ଉମା ବୋଉର ଆଖି ଦିଟା ଗ୍ରେବାଇ ନେଲା । ସେଇ ଦିନରୁ ମା ଝିଅଙ୍କ ଅବସ୍ଥା କହିଲେ ନ ସରେ । ଏଡ଼େ ବଡ଼ ଟୋକୀଟା, ଦାଦ ଖୁଡ଼ୀ ତାକୁ କାମ କରେଇ କରେଇ ବୁଢ଼ୀ କରି ଦେଲେଣି । କପାଳ !"

ନେତା ଚୁ ଚୁ କରି ପୁଣି କହିଲା—"ଉମା ବୋଉ ତତେ ଖୋଜୁ-ଥିଲା ଲେ ଲଗୁ ! କାମ ସାରି ବେଳ ପାଇଲେ ଥିକେ ଯିବୁ ।" ନେତା ଚାଲିଗଲା ।

ଲଗୁ ମନେ ମନେ କଣ ବିଚାରି ପାଣିରୁ ବନସୀଟା ଉଠାଇ କୂଳରେ ରଖିଲା । ମୁଁ ମୁଣ୍ଡରୁ ଗାମୁଛା ଖୋଲି ଅଣ୍ଟାରେ ଗୁଡ଼ାଇ ଉମାକୁ ଦେଖିବ ବୋଲି ଘର ଆଡ଼କୁ ଗଲା ।

## —ଚାରି—

ଉମା ତା ବୋଉର ହାତ ଧରି ବାଟ କଢ଼ାଇ ବଦାଯ୍ୟ ନେଲା ପରେ ପ୍ରାୟ ପାଞ୍ଚ ମିନିଟ ଯାକେ ଘର ଭିତରେ ନୀରବତା ରାଜତ୍ୱ କଲା । ଦୁଆର ମୁହଁରେ ଦୁଇ ଗୋଡ଼ ଲମ୍ବାଇ ତଳକୁ ମୁହଁ ପୋତି ବସି ନେତା ସେମାନଙ୍କର କଥା ଭାବୁଥିଲା । ଲଗୁ ମଧ କାନ୍ଥକୁ ଆଉଜି ଉମାର ଗଲା ବାଟକୁ ଚାହିଁ କଣ ଭାବୁଥାଏ । ପାଖରେ କେଣୁ ନ ଥାଏ ।

ନେତା ଗୋଟିଏ ଦୀର୍ଘଶ୍ୱାସ ଛାଡ଼ି କହିଲା—"ଶୁଣିଲୁ ତ ରେ ପୁଅ, ଅନ୍ଧୁଣୀ କଣ କହିଗଲା ? ଧର୍ମ କେମିତି ସହି ରହିଛି ! ଓହୋ, ଆମ ଦେଖନ୍ତୁ

କଥା ତ କିଛି ବେଶି ଦିନର ନୁହେଁ, ସେହି ଝିଅର, ସେହି ଯାଙ୍କୁ ସେ ପୁଅ ଝିଅଠୁଁ ଅଧିକ କରିଥିଲା । ସେହିମାନେ ଏବେ ତାକୁ ବାର ହିନସ୍ତା କରୁଛନ୍ତି । ଘର ଉପରେ ମନ୍ଦାଏ ଚୋରଣି ଦେଇ ନାହାନ୍ତି ।”

ଜଗୁ ମୁଣ୍ଡ ହଲାଇ ଖାଲି କହିଲା—“ହୁଁ ।” ସେ କିନ୍ତୁ ଭାବୁଥିଲା ଅନ୍ୟ ପ୍ରକାର, ଜମାର କଥା । ଅବଶ୍ୟ ଦିନରେ ଥରେ ହେଲେ ତ ତା ସଙ୍ଗେ ତାର ଦେଖା ହୁଏ । ଜଗୁକୁ ଦେଖି ସଙ୍ଗେ ସଙ୍ଗେ ସେ ମୁଣ୍ଡରେ ଲୁଗା ଦେଇ ସବୁ କାମ ଛାଡ଼ି ତାର ପାଖକୁ ଆସେ । ନିଃସଙ୍କୋଚରେ ସେ ଯାହା ପଚାରେ, ତାର ସେ ଉତ୍ତର ଦିଏ; କିନ୍ତୁ କେବେ ହେଲେ ତ ସେ ତାର ଦୁଃଖର କଥା ତା ଆଗରେ କହି ନାହିଁ, ତାକୁ ଦେଖି ମନ ମାରି ମୁହଁ ଶୁଖାଇ ସେ କେବେ ହେଲେ ରହି ନାହିଁ । ସବୁବେଳେ ହସ ହସ, ସବୁବେଳେ ଆନନ୍ଦ । ଜମା ତେବେ କଣ ତାକୁ ଧର୍ମର ଭାଇ ବୋଲି ବିଶ୍ୱାସ କରେ ନାହିଁ ? ତାର ସାମନାରେ ଦିନେ ପରା ତାର ବୋଉ ଜଗୁ ହାତକୁ ନିମିଲି ଦେଇ ଧର୍ମପୁଅ କରିଥିଲା । ତେବେ କାହିଁକି ଜମା ତାକୁ ସବୁ ଲୁଚାଏ ?

ନେତା ଜଗୁ ମୁହଁକୁ ଚାହିଁ ତାର ମନର କଥା କଣ ବୁଝିଲା କେଜାଣି, ମନେ ମନେ ଖୁସି ହୋଇ କହିଲା—“ଏଡ଼େ ବଡ଼ ସତର ବର୍ଷର ବଢ଼ିଲା ଝିଅ । ଲକ୍ଷ୍ମୀ ମୂର୍ତ୍ତିପରି ରୂପ । ତା ଦେହରେ ହାତ ଦେବାକୁ କେମିତି ତା ଖୁଡ଼ୀର ମନ ହୁଏ କେଜାଣି ? କାମ କରେଇ କରେଇ ମୁଠାଏ ଭଲ କରି ଖାଇବାକୁ ତ ଦିଏ ନାହିଁ । ଏଡ଼େ ବଡ଼ ଝିଅ, ଚିରା ଲୁଗା ଖଣ୍ଡେ ବେଢ଼େଇ ହୋଇ ପଦାକୁ ବାହାରୁଛି । ତାକୁ ଟିକେ ମାଡ଼ ପଡ଼ୁ ନାହିଁ ? ତହିଁରେ ପୁଣି ଯାଉଣୁଆସୁଣୁ ମାଡ଼ ।”

ଏତେଗୁଡ଼ାଏ ଅତ୍ୟାଚାରର କିଛି ଗୋଟାଏ ପ୍ରତିକାର କରିବ ବୋଲି ଜଗୁ ମନରେ ପାଞ୍ଚୁଥିଲା । ନେତାର କଥା ଶୁଣି ସେ ପଚାରିଲା, “ତା ବାପ କଣ ଏ ସବୁ କିଛି ଦେଖେ ନାହିଁ ?”

ନେତା ହସି ହସି କହିଲା, “ମଲରେ ଚୁଲି ପାଉଁଶ ବାପ ! ଗଞ୍ଜେଇ ଚିଲମ ଟାଣି ଟାଣି ତ ସେ ଭୋଳ । ଭାରିଯା ଯାହା କହିବ ସେହିଆ [illegible] ନ ଶୁଣିଲେ ଖଡ଼ୁମୁଷା । ଏତ ବଡ଼ ଝିଅଟାଏ ହେଲାଣି, ଦୁଃଖୀ ରଙ୍କୀ ଘର ଦେଖି

ଯେଉଁଠି ହେଲେ ଥୋଇ ଦେଇ ନିଶ୍ଚିନ୍ତ ହେବ କଣ ଏଲଟି ନଠ ଦେଖୁଛ, ବାର ଲୋକଙ୍କର ବାର କଥା ଶୁଣୁଛ, ଛୁଆ ଲୋ…।”

ଲଗୁ ପୁଣି କଣ ଭାବିବାକୁ ଲାଗିଲା ।

ନେଡା ମନକୁ ମନ କହିଲା—“ଉମା ଯଦି ଅଣ୍ଟା ଗୁଣ୍ଡିଆ ଘର ଝିଅ ନ ହୋଇ ଚଷା ଘରେ ଜନ୍ମିଥାନ୍ତା… ! ଯେମିତି ସୁନ୍ଦର ସେମିତି ସୁଲକ୍ଷଣୀ ! କାମ ଧନ୍ଦା ତ ହାତ ଆଗରେ……ପଧାନଙ୍କ କଥାକୁ ମାନୁଛ କିଏ ? ଏ ଘରକୁ ସେହି ଏକା ସୁନ୍ଦର ଦିଶନ୍ତା । ଅହାରେ, କି ରୂପ ! କି ମିଠା କଥା ! ଗାଁଠା ଯାକରେ ଝିଅଟାଏ ତ ! ଖଡକୁଡ଼ରେ ପଦ୍ମ ! ସତେ କି ଚନ୍ଦ୍ର-ଉଦିଆ ! କଣ ହେବ, ଛାଡଅଣ କଥା……।”

ଜଗୁ କଣ ଭାବୁଥିଲା କେଜାଣି, ଅନ୍ୟମନସ୍କ ଭାବରେ କହିପକାଇଲା, “ହଁ, ଛାଡଅଣ କଥା ।” ନେଡା ଉତ୍ସାହିତ ହୋଇ କହିଲା, “ଏବ କାଳକୁ କିଏ ମାନୁଛ ଜାତିପତି ? ମନ ବଳି ଥିଲେ, ପାଞ୍ଚ ଲୋକଙ୍କ ପାଞ୍ଚ କଥାକୁ ଶୁଣୁଛି କିଏ ? ହାତରେ ଧନ ଥିଲେ ଜାତି ଆସି ଗୋଡ଼ତଳେ ମୁଣ୍ଡ ମାରିବ । ତେବେ ଏତେ ବଡ଼ କଥାଟା ପଧାନଙ୍କର ଅଣ୍ଟି ସହିବ ନାହିଁ । ମର-ହଟି ଲୋକ ! ନିଜର ଦେଖିଲା କାମ ନକେ କରିଗଲେ ଗଲା । ନର ମାୟା ନାରାୟଣଙ୍କୁ ଅଜଣା…।”

ଲଗୁ କଣ ଭାବି ନେଡା ମୁହଁକୁ ଚାହିଁଲା । ସେ ଯେ ଉପହାସ କରୁ ନାହିଁ, ଏହି କଥା ତାର ଗମ୍ଭୀର ମୁହଁ ଓ ସଜଳ ଆଖିପତାରୁ ବୁଝିପାରି ସେ ବୁଲିପଡ଼ି ଗୃହଆଡ଼କୁ ଯାଉଁ କହିଲା, “ମୁଁ ଅଉଛି…।” ନେଡା ମନେ ମନେ ଖୁସି ହୋଇ ଭାବିଲା—ମନ୍ଦ କାହିଁ କରୁଛ ।

ଉମା ବୋଉର ଦୁଃଖ କାହାଣୀ, ତହିଁରେ ପୁଣି ନେଡାର ଟିକା ଟିପ୍ପଣୀ ଶୁଣି ଲଗୁ ବଡ ଉତ୍ତେଜିତ ହୋଇଥିଲା । ଗାଁ ଦାଣ୍ଡକୁ ଆସି ସେ ପ୍ରଥମେ ବିଗୃରିଲା, କଣ କରିବ । ଉମାର ବାପ ଖୁଡ଼ାଙ୍କ ଉପରେ ତାର କି ଅଧିକାର ଅଛି ଯେ, ସେ ଡଆରି କହିବ । ଅନୁରୋଧ କରି ନେହୁରା ହୋଇ କହିଲେ ବା ତା କଥା ସେମାନେ ଶୁଣିବେ କାହିଁକି ? ବରଂ ତାରକଥା ଭାବି ହସିବେ । ନ କହିଲେ ବି ନ ଚଳେ । ନିରୀହ ପ୍ରାଣୀ ହଓଟି କେତେ ଦିନ

କଥା ତ କହୁଛ ବେଶି ଦିନର ନୁହେଁ, ସେହି ଦିଅର, ସେହି ଯାଙ୍କୁ ସେ ପୁଅ ଝିଅଠୁଁ ଅଧିକ କରିଥିଲା । ସେହିମାନେ ଏବେ ତାକୁ ବାର ହିନସ୍ତା କରୁ-ଛନ୍ତି । ଗୃହ ତଳରେ ମନ୍ଦାଏ ତୋରଣି ଦେଉ ନାହାନ୍ତି ।"

ଜଗୁ ମୁଣ୍ଡ ହଲାଇ ଖାଲି କହିଲା—"ହୁଁ ।" ସେ କିନ୍ତୁ ଭାବୁଥିଲା ଅନ୍ୟ ପ୍ରକାର, ଉମାର କଥା । ଅବଶ୍ୟ ଦିନରେ ଥରେ ହେଲେ ତ ତା ସଙ୍ଗେ ତାର ଦେଖା ହୁଏ । ଜଗୁକୁ ଦେଖି ସଙ୍ଗେ ସଙ୍ଗେ ସେ ମୁଣ୍ଡରେ ଲୁଗା ଦେଇ ସବୁ କାମ ଛାଡ଼ି ତାର ପାଖକୁ ଆସେ । କିଃସଙ୍କୋଚରେ ସେ ଯାହା ପଚାରେ, ତାର ସେ ଉତ୍ତର ଦିଏ; କିନ୍ତୁ କେବେ ହେଲେ ତ ସେ ତାର ଦୁଃଖର କଥା ତା ଆଗରେ କହି ନାହିଁ, ତାକୁ ଦେଖି ମନ ମାରି ମୁହଁ ଶୁଖାଇ ସେ କେବେହେଲେ ରହି ନାହିଁ । ସବୁବେଳେ ହସ ହସ, ସବୁବେଳେ ଆନନ୍ଦ । ଉମା ତେବେ କଣ ତାକୁ ଧର୍ମର ଭାଇ ବୋଲି ବିଶ୍ୱାସ କରେ ନାହିଁ ? ତାର ସାମନାରେ ଦିନେ ପରା ତାର ବୋଉ ଜଗୁ ହାତକୁ ନିମିଳି ଦେଇ ଧର୍ମପୁଅ କରିଥିଲା । ତେବେ କାହିଁକି ଉମା ତାକୁ ସବୁ ଲୁଚାଏ ?

ନେତା ଜଗୁ ମୁହଁକୁ ଚାହିଁ ତାର ମନର କଥା କଣ ବୁଝିଲା କେଜାଣି, ମନେ ମନେ ଖୁସି ହୋଇ କହିଲା—"ଏଡ଼େ ବଡ଼ ସୁନ୍ଦର ବର୍ଷର ବଢ଼ିଲା ଝିଅ । ଲକ୍ଷ୍ମୀ ମୂର୍ତ୍ତିପରି ରୂପ । ତା ଦିହରେ ହାତ ଦେବାକୁ କେମିତି ତା ଖୁଡ଼ୀର ମନ ହୁଏ କେଜାଣି ? କାମ କରେଇ କରେଇ ମୁଠାଏ ଭଲ କରି ଖାଇବାକୁ ତ ଦିଏ ନାହିଁ । ଏଡ଼େ ବଡ଼ ଝିଅ, ଚିରା ଲୁଗା ଖଣ୍ଡେ ବେଢ଼େଇ ହୋଇ ପଦାକୁ ବାହାରୁଛି । ତାକୁ ଟିକେ ମାଡ଼ ପଡ଼ୁ ନାହିଁ ? ତହିଁରେ ପୁଣି ଯାଉଣୁଆସୁଣୁ ମାଡ଼ ।"

ଏତେଗୁଡ଼ାଏ ଅତ୍ୟାଚାରର କଣ ଗୋଟାଏ ପ୍ରତିକାର କରିବ ବୋଲି ଜଗୁ ମନରେ ପାଞ୍ଚୁଥିଲା । ନେତାର କଥା ଶୁଣି ସେ ପଚାରିଲା, "ତା ଦାଦା କଣ ଏ ସବୁ କିଛି ଦେଖେ ନାହିଁ ?"

ନେତା ହସି ହସି କହିଲା, "ମଲାରେ ଚୁଲି ପାଉଁଶ ଦାଦା । ଗଞ୍ଜେଇ ଚିଲମ ଟାଣି ଟାଣି ତ ସେ ଭୋଳ । ଭାରିଯା ଯାହା କହିବ ସେହିଆ [illegible] ନ ଶୁଣିଲେ ଖଡ଼ୁମୂଷା । ଏତେ ବଡ଼ ଝିଅଟାଏ ହେଲାଣି, ଦୁଃଖୀ ରଙ୍କୀ ଘର ଦେଖି

ଯେଉଁଠି ହେଲେ ଥୋଇ ଦେଇ ନିଶ୍ଚିନ୍ତ ହେବ କଣ ?ଏଇଟି ନଡ଼ ଦେଖୁଛୁ, ବାଉ. ଲୋକଙ୍କର ବାର କଥା ଶୁଣୁଛୁ, ଛୁଆ ଲୋ…।”

ଜଗୁ ପୁଣି କଣ ଭାବିବାକୁ ଲାଗିଲା ।

ନେଟା ମନକୁ ମନ କହିଲା—“ଉମା ଯଦି ଅନ୍ଧ ଗୁଡ଼ିଆ ଘର ଝିଅ ନ ହୋଇ ଚଷା ଘରେ ଜନ୍ମିଥାନ୍ତା… । ଯେମିତି ସୁନ୍ଦର ସେମିତି ସୁଲକ୍ଷଣୀ । କାମ ଧନ୍ଦା ତ ହାତ ଆଗରେ……ପଧାନଙ୍କ କଥାକୁ ମାନୁଛୁ କିଏ ? ଏ ଘରକୁ ସେହି ଏକା ସୁନ୍ଦର ଦିଶନ୍ତା । ଆହାରେ, କି ରୂପ ! କି ମିଠା କଥା ! ଗାଁଟା ଯାକରେ ଝିଅଟାଏ ତ ! ଖତକୁଡ଼ରେ ପଦ୍ମ ! ସତେ କି ଚନ୍ଦ୍ର-ଉଦିଆ ! କଣ ହେବ, ଛାଡିଅଣ କଥା……।”

ଜଗୁ କଣ ଭାବୁଥିଲା କେଜାଣି, ଅନ୍ୟମନସ୍କ ଭାବରେ କହିପକାଇଲା, “ହିଁ, ଛାଡିଅଣ କଥା ।” ନେଟା ଉତ୍ସାହିତ ହୋଇ କହିଲା, “ଏବ କାଳକୁ କିଏ ମାନୁଛୁ ଛାଡପଛ ? ମନ ସ୍ୱଚ୍ଛ ଥିଲେ, ପାଞ୍ଚ ଲୋକଙ୍କ ପାଞ୍ଚ କଥାକୁ ଶୁଣୁଛି କିଏ ? ହାତରେ ଧନ ଥିଲେ ଛାଡ଼ ଆସି ଗୋଡ଼ତଳେ ମୁଣ୍ଡ ମାରିବ । ତେବେ ଏତେ ବଡ଼ କଥାଟା ପଧାନଙ୍କର ଆଖି ସହିବ ନାହିଁ । ମର-ହଟ ଲୋକ ! ନିଜର ଦେଖିଲା କାମ ନିଜେ କରିଗଲେ ଗଲା । ନର ମାୟା ନାରାୟଣଙ୍କୁ ଅଜଣା…।”

ଜଗୁ କଣ ଭାବି ନେଟା ମୁହଁକୁ ଗୃହିଁଲା । ସେ ଯେ ଉପହାସ କରୁ ନାହିଁ, ଏହି କଥା ତାର ଗମ୍ଭୀର ମୁହଁ ଓ ସଜଳ ଆଖିପତାରୁ ବୁଝିପାରି ସେ ଭୁଲପଡ଼ ଗୃହିଁ ଯାଉଁ ଯାଉଁ କହିଲା, “ମୁଁ ଅଉଛୁ…।” ନେଟା ମନେ ମନେ ଖୁସି ହୋଇ ଭାବିଲା—ମନ୍ଦ କାଟୁ କରୁଛୁ ।

ଉମା ବୋଉର ଦୁଃଖ କାହାଣୀ, ତହିଁରେ ପୁଣି ନେଟାର ଟିକା ଟିପ୍ପଣୀ ଶୁଣି ଜଗୁ ବଡ଼ ଉତ୍ତେଜିତ ହୋଇଥିଲା । ଗାଁ ଦାଣ୍ଡକୁ ଆସି ସେ ପ୍ରଥମେ ବିଗୃରିଲା, କଣ କରିବ । ଉମା'ର ଦାଦ ଖୁଡ଼ୀଙ୍କ ଉପରେ ତାର କି ଅଧିକାର ଅଛି ଯେ, ସେ ଛିଅରି କହିବ । ଅନୁରୋଧ କରି ନେହୁରା ହୋଇ କହିଲେ ବା ତା କଥା ସେମାନେ ଶୁଣିବେ କାହିଁକି ? ବରଂ ତାରକଥା ଭାବି ହସିବେ । ନ କହିଲେ ବି ନ ଚଳେ । ନିରୀହ ପ୍ରାଣୀ କିଏଟି କେତେ ଦିନ

ଅଉ ତାଡ଼ନା ସହ୍ନ ବଞ୍ଚିରହିବେ । ଏତେ ବଡ଼ ଗାଁଟା, ଧିଲରେ ପଡ଼ି କେହି ଚେହିଲେ ଜନ୍ତୁ ନାହାନ୍ତି ।

ଏହିପରି କେତେ କଣ ବଗୁରି ସେ ଅସି ଗାଁ ଆରମୁଣ୍ଡ ଗୁଡ଼ିଆଘର ଅଗରେ ମିଳିଲା । ଦାଣ୍ଡ କବାଟ ବନ୍ଦ ଥିଲା । ତଥାପି ସେ ଝଞ୍ଜିର ହଲାଇ ଗୋବନ୍ଦ ସାଉର ନାଁ ଧରି କେତେ ଡ଼ାକିଲା । କାହାରି ଜବାବ ନ ପାଇ, ପିଣ୍ଡା ଉପରୁ ତଳକୁ ଓହ୍ଲାଇ ଫେରି ଆସିବାକୁ ପାଞ୍ଚୁଛି; ଗାଁ ଦାଣ୍ଡରେ ଗୃଳ ଯାଉଁ ଯାଉଁ ମୋଛ ମା କହିଲା—"ଅରେ ପୁଅ, ଗୋବନ୍ଦାକୁ ଖୋଜୁଛୁ ? ସେ ପରି ପରିଆ ଦୋକାନରେ ବସି ଗଞ୍ଜେଇ ଟାଣୁଛି ! ଛାଡ଼ ତା କଥା । ଏତେବଡ ଭେଣ୍ଡାଟା, ଧୂଆଁ ଫୁଙ୍କି ଫୁଙ୍କି ତାର କଣ୍ଠା ଦୋହଲିଲଣି ! ଜାଣି ଜାଣି ସେ ମଣିଷପଣିଆରୁ ରହିଲାଣି ! ତା ସାଙ୍ଗରେ ସାଙ୍ଗ ହଅନାହିଁ ! ମୁଁ ଅଗରୁ କହୁଛି, ମୋ ସାନ କୁହା ମାନ ।"

ଜଗୁ ମୋଛ ମା କଥା ଶୁଣି କହିଲା—"ନାହିଁ ମୁଁ ତା ପାଖକୁ ଅସି ନାହିଁ ।" ଏତିକି କହି ସେ ବାଡ଼ିଅଡ ବାଟେ ବୁଲିଗଲା । ବାଡି କବାଟ ମୁକୁଳା ଥିଲା । ସେ କାହାକୁ ଆଉ ନ ଡ଼ାକି ଘର ଭିତରକୁ ପଶିଗଲା । ଗୁଡ଼ିଆ ଘର—ମୁଡ଼ି ଉଖୁଡ଼ା, ଖଜାମୁଆଁ ର ସବୁବେଳେ କାରବାର ! ଛକର ଖରଦ କରିବାକୁ ଗାଁ ଲୋକେ ବରାବର ଯା ଅସ କରନ୍ତି । କିଏ ମନା କରିବ ? ଉମା ବୋଉର ଅଖି ଗଲାଦିନୁ ସବୁ କାମ ରେଣୁ ବୋଉ ହାତରେ କରନ୍ତି, ଉମା ସାହାଯ୍ୟ କରେ; କିନ୍ତୁ ବିକାକିଣା କାମ ରେଣୁ ବୋଉ ଛଡ଼ା ଅଉ କେହି କରନ୍ତି ନାହିଁ ।

ଜଗୁ ଖଞ୍ଜା ଭିତରକୁ ଯାଇ ଦେଖିଲା, ରେଣୁ ବୋଉ ପଛପାଖ ଗୃଳରେ ବସି ମୁଢ଼ିମୁଆଁ ତିଆରି କରୁଛନ୍ତି । ତାଙ୍କ ପଛରେ ବସି ରେଣୁ ଗୋଟାଏ ମାଟି କଣେଇ ଧରି ଖେଳୁଛି । ମଣିଷର ଉତ୍ତେଜନା, ମଣିଷର ରାଗ ପରୋକ୍ଷରେ ଯେପରି ତେଜଉଠେ, ଅଗକୁ ଆସିଲେ ତାର ଭିହଟା ସେତିକି କମିଅସେ । ଜଗୁ ଯେପରି ଉତ୍ତେଜିତ ହୋଇ ଘରୁ ବାହାରିଥିଲା, ଭାବିଥିଲା କିଛି ଗୋଟାଏ କରିବ, ଗୋବନ୍ଦ ସାହୁର ଘରେ ପାଦ ଦେଇ ତାର ସବୁ ପାଶୋରି ଗଲା, ପ୍ରଥମରେ କିପରି ଆରମ୍ଭ କରିବ, ଭାଷା ପାଇଲା ନାହିଁ । କେତେ ଭାବିଚିନ୍ତି ଗଳା ଖଙ୍କାରି ପଗ୍ଗୁରିଲା, "ଗୋବନ୍ଦ ମଉସା କାହାନ୍ତି କି ?"

ରେଣୁ ବୋଉ ପଛକୁ ଫେରି ଗୃହଁ, ଜଗୁକୁ ଦେଖି ଓଠ ନେଫଡ଼ି, ମୁହଁଟାକୁ ଭ୍ରୂକୁଞ୍ଚା କରି କହିଲେ, "କେ-ଏଟାଣି । କାହିଁକି ?"

ଜଗୁ କହିଲା—"ଦି ପଦ କଥାଭୂଷା ଥିଲା ।"

ରେଣୁ ବୋଉ ଉତ୍ତର ନ ଦେଇ ମୁଆଁ ବଳାରେ ମନ ଦେଲେ ।

ଜଗୁ ପଚାରିଲା—"ସେ କେତେବେଳେ ଫେରିବେ ?"

ଜଗୁ ଆଡ଼କୁ ପଛଦେଇ ମୁଆଁ ଗଢ଼ି ଗଢ଼ି ରେଣୁ ବୋଉ କହିଲେ, "ମୋତେ କହି ଯାଇ ନାହିଁ । ତାକୁ ତ ସବୁ ଖେଳ ପରି ଲାଗିଛି । ଯେଉଁଠି ଯାହା ଲୁଚେଇ ସଞ୍ଚି ରଖିଲି, କେମିତି ସେ ଗନ୍ଧ ପାଏ କେଜାଣି, ମୂଷାପରି ତ ସବୁ ଗୁଳୁଗୁଳୁ କରି ବୋହି ନେଇ ପଦ୍ଶୁଆ ଦୋକାନରେ ଦେଇ ଗଞ୍ଜେଇ ଖାଉଛି । ତା ଜାଲାରେ ମୁଁ ଆଉ ଚଳି ପାରିବି ନାହିଁ । ବିଲରେ ଫସଲ ମଲା । ଘରେ ଯାହା ଧାନ ଅଛି, ଖାଇଦେଲେ ମାସକୁ କାଅଣ୍ଟ । ପିଲାଛୁଆଙ୍କ ମୁହଁରେ ତୋକେ ତୋକେ ତୋରାଣି ଦେଇ ତାଙ୍କୁ ଏପରି ଅସମୟରେ କେମିତି ବଞ୍ଚେଇ ରଖିବା, ସେଥିରି କିଛି ବନ୍ଦୋବସ୍ତ ନ କରି କହିଲେ ପିଠି ଆଡ଼େଇ ଗୃଲିଯାଏ । ଅଉ ଏ ମାଙ୍ଗିଅଙ୍କ ଗଡ଼ିକୁ ତ ଲଙ୍ଗଳ ଦାଜ୍ଜୋ ପାଇବ ନାହିଁ ......।"

ଜଗୁ ସେମାନଙ୍କ ବିଷୟରେ କଥା ଉଠାଇବାର ସୁବିଧା ପାଇଲା । ସେ ପଚାରିଲା—'ଉମା... ?'

ରେଣୁ ବୋଉ କହିଲା—'ତା ର ପାଖରେ ତମର କାମ ଅଛି ପରା ?"' ଏତକ କହି ହସିବାକୁ ଲାଗିଲା ।

ତାର ହସ ଦେଖି ଜଗୁ ବଡ଼ ବିବ୍ରତ ହୋଇପଡ଼ିଲା । ତାର ମନଟା ଯେତେ ପବିତ୍ର ଥିଲେ ବି ବେଳେବେଳେ ଗାଁ ଲେଣ୍ଡିଆଏ ଏହି ଉମା କଥା ନେଇ ପରିହାସ କରି ତାକୁ ଦେଖେଇ ଦେଖେଇ ପଦେ ଅଧେ ହାଙ୍କନ୍ତି । ହାଙ୍କିବାର ତ କଥା । ହିଁଅ ବଡ ହୋଇ ଘରେ ରହିଲେ ଗନ୍ଧ । ଉହିଁରେ ପୁଣି ଉମାର ବଅସ ଟିକେ ବଳେଇଗଲାଣି । ଏକେ ବାପ-ଛେଉଣ୍ଡ, ମା ଅକୁଣୀ । ଯେତେ ବର୍ଷ ବିଦାର ହେଲେ କଏ ଶୁଣୁଛି ? ଏଣ୍ଡୁଅ ଧାଉଡ କଥା ବାଡ଼କୁ । କହି କହି ସେ କହିବେ ଗୋବିନ୍ଦାକୁ, ନୋହିଲେ ତାଙ୍କ ବାଘୁଣୀ ଜାକୁ । ଗୋବିନ୍ଦଟା ମଣିଷ ନୁହେଁ । ତା ଠାକୁରାଣୀଙ୍କ

କଥା ଛାଡ଼ ! କିଏ ଉମା ପାଇଁ ବରଘର ଖୋଜିବ ? ଜଗୁ ଠିକିଏ ପଚରା-ଉଚରା କରେ, ଉମା ତାର ଆଗରେ ହୁଏ, ଭାଇଭଉଣୀ ପରି ତା ସଙ୍ଗେ କଥାଭାଷା କରେ, ଏହାହିଁ ଲୋକଙ୍କର ପରିହାସର କାରଣ । ସେମାନେ ତ ଆଉ ଜାଣନ୍ତି ନାହିଁ, ଉମା ବୋଉ ତାକୁ ମାହାର୍ଦ ଦେଇ ପୁଅ କରିଛି ; ସେ ବା କାହାକୁ କହିବାକୁ ଯିବ କାହିଁକି ? ତା ମନଟା ନିର୍ମଳ !

ଜଗୁ ସ୍ୱଗଟାକୁ ଗୁପିନେଇ କହିଲା—"ନା, ତା ପାଖରେ କାମ ନାହିଁ, କାମ ତମକୁ ପାଖରେ ।"

ରେଣୁ ବୋଉ ହସି ହସି ଆଗପରି ପରିହାସରେ କହିଲେ—"ମୋ ଠେଇଁ କି କାମ ବା ? ମୁଁ ତ ଚହେଟେବେଳେ ଛଇ-ଛଟକୀ ଟୋକୀ ନୁହେଁ......।" ଆଉ କଣ କହିବାକୁ ବସିଥିଲେ, ଫେରି ଗୁହିଁ ଜଗୁର ଗମ୍ଭୀର ମୁହଁ, ନାଲି ଆଖି ଦେଖି ହଠାତ୍ରେ ଚୁପ ହେଲେ । ଠିକିଏ ରହି କଥାର ସୁଅ ବଦଳାଇ କହିଲେ—"ପଧାନେ ପରା ତମ ପାଇଁ କେଉଁଠି କନିଆ ଖୋଜୁଥିଲେ ? ଏ ସାଲେ କିମିତ୍ୟ କରିବେଟି ? ପୁଅ ଆସି ଭେଣ୍ଡା ହେଲା, ଆଉ ବସିଛନ୍ତି କାହିଁକି ? ବେଳ ବଅସ କଣ ବସିଛି ? ଜଗୁଟା କାଲିକା ଜୁଆ, ଆମ ଆଗରେ ଲଙ୍ଗଳା । ଆଜି ଦେଖ ବାଆ ହବାକୁ ହେଲାଣି...... ।"

ରେଣୁ ବୋଉଙ୍କର କଥା ଶୁଣି ଜଗୁର ହାଡ଼ରେ ସତେ କି ନିଆଁ ଲାଗିଲା । ସେ କିଛି ଏପରି ପିଲାଜୁଆ ନୁହେଁ ଯେ, କଥାଟାକୁ ବାଁରେଇ ଦେଇ ଚଳାଇ ନେବାକୁ ବସିଲେ ସେ ଭୁଲିଯିବ । ରେଣୁ ବୋଉଙ୍କ ମନରେ କଣ ଅଛି, ସେ କଣ ମନେ କରୁଛନ୍ତି କି ? ସେ କଣ ଜଗୁକୁ ଚିହ୍ନନ୍ତି ନାହିଁ ! ଜାଣି ଜାଣି ବହୁଆଡ ଗଛରେ ଦେହ ଘଷୁଛନ୍ତି । ସେ କାହାର ନୁହେଁଟି !

ଜଗୁ ବିଗିଯାଇ କହିଲା—"ରଖ, ରଖ । ତମ ଉଲେଇପଣ ! ଜଗୁର ବାହାଘର ହବ କି ନ ହେବ ସେ ଖବର ବୁଝିବା ଆଗରୁ ଆଗ ନିଜ ଖବର ବୁଝ । ଉମାକୁ ଆସି... ।"

ରେଣୁ ବୋଉ କହିଲେ—"ମଲା ମୋର, ସବୁବେଳେ ଖାଲି ସେଇ ଉମା, ଉମା । କି ମନ୍ତ୍ର ଲାଗିଛି ତା ଠେଇଁ କେଜାଣି ଲୋ ମା...... ।"

ଜଗୁ ଅନ୍ତର ଭେଜଉଠି କହିଲା—"ବାସୁ ସାହୁର ସବୁ ସମ୍ପତ୍ତି ଭୋଗ କରୁ ତା ଅନ୍ତେ ତା ପିଲାମାନଙ୍କୁ ଗୃହ ଓଳିରେ ମନ୍ଦାଏ ପେଜ ଦେଉ ନାହିଁ । ଗାଁଲୋକେ କଣ ଏ କଥା ଦେଖୁ ନାହାନ୍ତି ନା ଜାଣୁ ନାହାନ୍ତି ! ଉମାଠା ଏତେ ହେଲାଣି, ତା ପାଇଁ ବରଘର ଖୋଜିବାକୁ ମନ ଦେଉ ନା । ଏଇଥିରୁ ତମ ମଣିଷପଣିଆ, ଭଲଲୋକ ଜଣାଯାଉ ନାହିଁ ଯେ...... ।"

ରେଣୁ ବୋଉ ତାଚ୍ଛଲ୍ୟ କରି କହିଲେ—"ଓହୋ, ବାସୁ ସାହୁର ଭେଣ୍ଡା ପୁଅ ଆସିଗଲେ ପରା ?" ଜଗୁ ବଦ୍ରୂପାତ୍ମକ ହସ ହସି କହିଲା, "ତା ହୋଇଥିଲେ କେବେଠୁଁ ତମ ବେକରେ ଧକ୍କା ଦେଇ ଗାଁ ସୀମା ପାର କରି ଦେଇ ଆସନ୍ତିଣି; ଆଜି ଜିଭ ଲେଉଟାଇବାକୁ ଏଠି ନ ଥାନ୍ତ ।"

ରାଗିଯାଇ ରେଣୁ ବୋଉ ଚୀତ୍କାର କଲା, "କି ରେ ଖଣ୍ଡିଆ, କଣ ବଡ଼ି ବଡ଼ି କଥା କହୁଛୁ ? କାହା ମୁହଁ ପାଇଛୁ କହ ରେ ! ଆସୁ ସେ ଚୁଲିପଶା ଆଜି । ମୁଁ କହୁଛି, ପହରେ ହେଲା ଗଲାଣି,କୁଆଡେ ରହିଲା ? ସେ ଯାଇଁ କାହା ଘରେ ପଶି ମୋର ଅବଗୁଣ ଗାଉଛି । ମା ରାଣ୍ଡ ତହୁଁ ବଳ । ଆସୁ ସେ ଆଜି; ଏଇ କାଠଫାଳିଆରେ ତାର ମୁହଁ ଭାଙ୍ଗୁଛି ! ତୁ, ଯା, ଯା, ଯିବୁଟି ମୋ ଘରୁ—ଯିବୁଟି ।"

ଏତେ ଅପମାନ ଏତେ ଧିକ୍କାର ସହି ତୁନି ହୋଇ ଜଗୁ ଫେରିବା ପିଲା ନୁହେଁ । ସେ ଥରେ ରାଗିଲେ ତାକୁ ଛନପୁର ଅନ୍ଧାର ଦିଶେ, ଭଲ-ମନ୍ଦ ଜ୍ଞାନ ତାର ରହେ ନାହିଁ; କଥା ଅକଥା ବୁଝିବାକୁ ତାର ତର ସହେ ନାହିଁ, ମୁଣ୍ଡକୁ ତାର ରକ୍ତ ଚଢ଼ିଯାଏ । ରେଣୁ ବୋଉର କଥା ଶୁଣି, ସେ ଖଣ୍ଡେ କାଠଫାଳିଆ ଧରି ଚମକିଗଲା । "କାହାକୁ କଣ କହୁଛୁ ? ଏଇଖିଣେ ଦେଖିବୁ ?" କହି ସେ ଓଠ କାମୁଡ଼ି କାଠଫାଳିଆ ମୁଣ୍ଡ ଉପରକୁ ଟେକିଲା ।

ରେଣୁ ବୋଉ ପ୍ରମାଦ ଗଣିଲେ । ସେ କଣ ଜାଣିଥିଲେ, ଜଗୁ ଏପରି ହଠାତ୍ ରାଗି ଯାଇ ମାରିବାକୁ ଧାଇଁ ଆସିବ । କହୁ କହୁ କଣ ସିନା କହି ପକାଇଥିଲେ । ଜଗୁର ବିଶ୍ୱମୂର୍ତ୍ତି ଦେଖି ତାଙ୍କର ଜ୍ଞାନ ହଜିଗଲା । ହୁଣ୍ଡାଠା, ଦୁଇ ପାହାର ପକାଇଲେ କିଏ ଅଛି ପିଠିରେ ପଡ଼ିବ ? ସେ ଭୟରେ

ରେଣୁକୁ କାଖ କରି କାନ୍ଥ କଡ଼କୁ ଘୁଞ୍ଚି ଠିଆ ହେଲେ । ଦେହସାରା ଘୋଡ଼ାଇ ଦେଇ ଥରୁଥାଏ । ତୁଣ୍ଡରୁ କଥା ବାହାରିଲା ନାହିଁ ।

ସ୍ୱଗ ଯେ ବୃଦ୍ଧଚଣ୍ଡାଳ ! ଯେତେବେଳେ ଜଗୁ ସ୍ୱଗରେ ହାତ ଟେକି ରେଣୁ ବୋଉଙ୍କ ଆଡ଼କୁ ଚାହିଁଲା, ଉମା ପଛଆଡୁ ଧାଇଁ ଆସି ତାର ହାତ ଧରିପକାଇଲା । ଜଗୁ ଫେରି ଚାହିଁବାରୁ ଉମା ତାର ଖୁଣ୍ଟି ପାଖକୁ ଘୁଞ୍ଚି ଯାଇ କେତେ କରୁଣ ସ୍ୱରରେ କହିଲା, "ଛିଃ ଏ କଣ ଜଗୁ ଭାଇ, ଏ କଣ ?"

ଜଗୁ କହିଲା,'ତୁ ଆଗରୁ ଉଠି ଯା ।' ସେ ଅନ୍ଧାର ପାଖକୁ ଘୁଞ୍ଚି ଆସିଲା । ଉମା ତାର ବାହୁଲତା ଦଉଟି ଉପରକୁ ଟେକି କହିଲା,'ମୋ ରାଣ ଜଗୁ ଭାଇ, ଘୁଞ୍ଚିଯାଅ । ଏ କଣ ?' ତାର ଦୁଇ ଆଖିରେ ଲୁହ ଛଳ ଛଳ ହେଲା । "ଘୁଞ୍ଚିଯାଅ ଜଗୁ ଭାଇ, ନୋହିଲେ ମୋର ମୁଣ୍ଡରେ... ।" ଆଉ କହି ପାରିଲା ନାହିଁ । ଦୁଃଖରେ କ୍ଷୋଭରେ ତାର ଗୋଲାପୀ ଓଠ ଦଉଟି ଥରି ଉଠିଲା । ମନ୍ତ୍ରମୁଗ୍ଧ ପରି କ୍ଷଣକାଳ ଜଗୁ ଉମାର କରୁଣ ମୂର୍ତ୍ତିକୁ ଚାହିଁ ରହିଲା । ଯାହା ପାଇଁ ସେ ଆଜ ଏତେବଡ଼ ଅନ୍ୟାୟ କରିବାକୁ ଯାଉଛି, ସେହି ସେ ଉମା । ଫୁଟିଲା ଚମ୍ପାଫୁଲ ପରି ଗୋରା ଦେହଟି, ସତେ କି ବିଜୁଳି ପରି ଚଞ୍ଚଳ ହୋଇଉଠିଲା କ୍ଷଣକ ପାଇଁ । ଦେହ ସାରା ତାର ଆଦ୍ୟ ଯୌବନର ଲୋଭନୀୟ କୋମଳ ଶ୍ରୀ ଖେଳିଯାଉଛି । ସୁନ୍ଦର ପୂରିଲା ମୁହଁଟି ସଦ୍ୟ-ଫୁଟା କନିଅର ଫୁଲର ଶୋଭା । କେଡେ ଗମ୍ଭୀର, ବିସ୍ମୟବିସ୍ଫାରିତ ଆଖି ଦଉଟିରୁ ଫୁଟିଉଠୁଛି ନିରୀହତା, ଝରି ପଡ଼ୁଛି ଅଶ୍ରୁକଣା । ଭୟରେ ଭ୍ରୂଲତା ଦଉଟି ଉପରକୁ ଉଠିଛି, କପାଳ ରେଖାଙ୍କିତ ହୋଇଛି । ବାହୁ ଦୁଇଟି ତୋରଣ ପରି ମୁଣ୍ଡ ଉପରକୁ ଟେକି, କମ୍ପିତ ଗଳାରେ ପୁଣି ତଳକୁ ଆଣି ସେ ଯେତେବେଳେ ତାର କୋମଳ ଓଠ ପାଖୁଡ଼ା ଦଉଟି ଥରାଇ ଭଙ୍ଗା ସ୍ୱରରେ କହିଲା, "ଏ କଣ କରୁଛ, ଜଗୁ ଭାଇ, ଛିଃ......" ଜଗୁ ମୁଗ୍ଧ ଚକ୍ଷୁରେ କ୍ଷଣେମାତ୍ର ତାର ସେ ଶୋଭାସମ୍ପଦକୁ ଚାହିଁଲା । ପରମୁହୂର୍ତ୍ତରେ କଣ ଭାବ କେଜାଣି ଆଖି ତଳକୁ କଲା । ଶିଥିଳ ହାତ ମୁଠା-ଭିତରୁ କାଠଖଣ୍ଡ ତଳେ ଖସିପଡ଼ିଲା ।

କ୍ଷଣକ ପରେ ଢଗୁ ପୁଣି ମୁହଁ ଟେକିଲା । ଆଖି ଦିଓଟି ଜମାର ମୁହଁରେ ନ୍ୟସ୍ତ କଲା । ଜମାର ଆଖି ଦିଓଟି ଲୁହରେ ପୂର୍ଣ୍ଣ । କେଜାଣି କାହିଁକି ତାର ନାକପୁଡ଼ା ଫୁଲିଉଠୁଛି । ସେ ତଳକୁ ଚାହିଁ କହିଲା, "ଯାଅ, ଢଗୁ ଭାଇ ! ତମେ ଏଠୁ ଚାଲିଯାଅ··· ।"

ଢଗୁ କିଛି କହିଲା ନାହିଁ—କିଛି କହି ପାରିଲା ନାହିଁ । ଜମାର ଆଦେଶ ଭାଙ୍ଗିବା ସତେ ଯେପରି ତା ପକ୍ଷରେ ଅସମ୍ଭବ ! ସେ ଛୋଟପିଲାଟି ପରି ଧୀରେ ଧୀରେ ଶୋଭନ ସାହୁର ଘର ଛାଡ଼ି ପଦାକୁ ବାହାରିଆସିଲା ।

## —ପାଞ୍ଚ—

ଅଠରଶ ଛଷଠି ସାଲର ମେ ମାସ ପନ୍ଦର ତାରିଖ ।

ଗାଧୁଆବେଳ ଗଡ଼ିଗଲାଣି । ବୈଶାଖୀ ତାତଲା ବାଆ ଦୟା ନଦୀ ଉପରୁ ବାଲିକଣା ଉଡ଼ାଇ ଆଣି ଗାଁଯାକ ବିଛେଇ ଦେଉଛି । ନଈକୂଳ ବଡ଼ ଅମ୍ବତୋଟାରେ ମାଙ୍କଡ଼ଗୁଡ଼ା ଖେଁ ଖାଁ ହେଉଛନ୍ତି । ତଳେ ଏକା ଢଗୁ ହାତରେ ଛୋଟ୍‌କଣୀ ଧରି ସେମାନଙ୍କୁ ହୁରୁଡ଼େଇବାରେ ବ୍ୟସ୍ତ । ଯେତେ ଟେକା ମାରିଲେ ସେମାନେ ଜମା ଶୁଣୁ ନାହାନ୍ତି । ବେଳେବେଳେ ଏ ଗଛରୁ ସେ ଗଛକୁ ଡେଇଁ ଦାନ୍ତ ଦେଖାଇ ତାକୁ ଗୋଡ଼ାଇ ଆସୁଛନ୍ତି— ଢଗୁ ଛାଡ଼ିବାର ପିଲା ନୁହେଁ । ଏତେ ସହଜରେ କା ସେ ହାର୍ ମାନି ମୁହଁ ଫେରାଇ ଚାଲିଯିବ ? ଅସମ୍ଭବ ! ସେ ଦ୍ୱିଗୁଣ ଉତ୍ସାହରେ ଦୁହାଟ ମାରି ସେମାନଙ୍କୁ ଟେକା ଫୋପାଡ଼ିବାରେ ବ୍ୟସ୍ତ । କିଣ କରିବ, ଏକୁଟିଆ— ଶେଷକୁ ଥକିଯାଇ ଗୋଟିଏ ଗଛକୁ ଆଉଜି ଠିଆହେଲା ।

ନଈକୂଳରୁ ଗାଁ ଭିତରକୁ ବାଟ ପଡିଛି ତୋଟା ମଝିଦେଇ । ତୋଟା ପାଖରୁ ନଈକୂଳ ଅବଶ୍ୟ ଛଡ଼ାଇବ କେତେଗୁଡ଼ାଏ ବାଟ । ମଝିରେ ପୁଣି ଉଚ କିଆବାଡ଼—ତୋଟା ଭିତରକୁ ନ ଆସିବା ଯାଏ ଆସିବା ଲୋକ ଦେଖା-ଯାଏ ନାହିଁ ।

ଢଗୁ ଠିଆହୋଇ ଗଛ ଉପରକୁ ଚାହିଁ ମାଙ୍କଡ଼ ଜଗିଛି । ତା କାନରେ କାହାର ଥିରି ଥିରି କଥା ବାଜିଲା, "ବୋଉ ମ ! ମୋ ପାଇଁ ତୁ

ଦୁଃଖ କରିବୁ ନାହିଁ । ଠାକୁରେ ଯେତେବେଳେ ଯାହା କରୁଛନ୍ତି, ସେଥିରେ ମଣିଷର କି ଦୃଷ୍ଟି ଅଛି ? ଯାହା ଭାଗ୍ୟରେ ଥିବ... ।”

“ଅଲୋ ମା, ମୋର ପାଇଁ ତ ତୁ ଦହଗଞ୍ଜ । ମୁଁ ତୋର ବୋଝ । ମୁଁ ଯଦି ମରନ୍ତି··· ।”

“ସେ କଥା କହନା ବୋଉ... ” କେତେ କରୁଣ ସ୍ୱରରେ ସେ କହିଲା ।

“ମୁଁ ଯଦି ମରନ୍ତି, ତତେ ତିନି ଓଳରେ ତୋରାଣି ଟୋପାଏ ଦେବାକୁ ହେଲେ ତାଙ୍କ ମନ ତଟନ୍ତା । ଏପରି ଉପାସଭୋକରେ କେତେ ଦିନ ଚଳିବ ।...”

“ଆମେ ତ କିଛି ଏକା ଉପାସ ରହୁନୁ, ଗାଁର ଅଧେ ଲୋକଙ୍କର ବର୍ତ୍ତମାନ ସେହି ଅବସ୍ଥା । ବାଉରି ସାହିଆ ତ କେଉଁ ମୂଳୁ, ଘାସପନି ସିଝେଇ ସିଝେଇ କିଛିଦିନ ଖାଇ ଚଳିଗଲେ । ଏବେ ସେତକର ବି ଅଭାବ ହେଲାରୁ ପିଲାଛୁଆ ଧେଇ ଭୁଆଡ଼େ ପଳେଇଲେଣି ।”

“ହୁଁ ।”

“ଆଉ ପାଣ ସାହିଆଙ୍କ କଥା ଶୁଣିଛୁ ବୋଉ ? ସେମାନେ ଏକା ମହା ନିଶ୍ଚିନ୍ତରେ ଅଛନ୍ତି । ଗାଁରେ ଯେତକ ଯାକ ଗାଈଗୋରୁ ମରୁଛନ୍ତି, ମଢ଼ ସବୁ କାଟି ସିଝାଇ ଖାଉଛନ୍ତି । ତାଙ୍କର ତ ପାଳିକ ପଡ଼ିଛି । ମହା ନିଶ୍ଚିନ୍ତରେ ଅଛନ୍ତି ।”

କହୁ କହୁ ମା-ଝିଅ ଧଡ଼ୈ କଅବାଡ଼ କଢ଼ ଦେଇ ତୋଟା ଭିତରକୁ ପଶିଲେ । ଜଗୁ ଅଣଆଡ଼ୁଆ ହୋଇ ଗଛ ଉହାଡ଼ରେ ଥିବାରୁ ତାକୁ ଉମା ଦେଖିପାରିଲା ନାହିଁ । ସେମାନେ ଟିକିଏ ଆଗକୁ ଗୃଲିଯିବାରୁ ଜଗୁ ଗଛ ଉହାଡ଼ରୁ ଧୀରେ ଧୀରେ ବାଟକୁ ଆସି ତାଙ୍କର ପଛେ ପଛେ ଗୃଲିଲା । ଉଦ୍ଦେଶ୍ୟ, ସେମାନେ କଣ କଥାଭାଷା ହେଉଛନ୍ତି ଶୁଣିବ ।

ଉମା ଆଗରେ ଗୃଲିଛି । ତାର କାଖରେ ଗୋଟିଏ ବଡ଼ ମାଠିଆ । ସୁନା ପରି ଉଜ୍ଜ୍ୱଳ ମାଂସଳ ବାହୁଲତାଟି ମାଟିଆଟାକୁ ବେଷ୍ଟନ କରି ରହିଛି—ସତେ କି କଳା ମେଘ ଦେହରେ ବିଜୁଳିର ସ୍ଥିର-ସୁନାରେଖା । ମୁଣ୍ଡ ଉପରେ ମଧ୍ୟ ଗୋଟିଏ ଜଳପୂର୍ଣ୍ଣ ମାଠିଆ । ଲୁଗା କାନିର ଅବଶିଷ୍ଟ

ଅଂଶଟି ମୋଡ ମଳା କରି ମୁଣ୍ଡ ଉପରେ ରଖିଛି । ଗୃଳନ୍ତବେଳେ ମାଠିଆଟି ଖସି ପଡ଼ିବ ନାହିଁ ବୋଲି ଗୃଲନ୍ତ ବେଳେ ପାଣି ଚହଲି ମୁଣ୍ଡ ଉପରୁ ନିଗିଡ଼ି ପିଠିବାଟେ ଗୋଡ଼ ତଳପାକୁ ବୋହି ଅସୁଛି । ଅଧଧୋଷ୍ତ ପିଠି ଉପରର ଦରଫଟା ମଇଳା ଲୁଗାଟି ଓ ଜଙ୍ଘଯାଏ ଲମ୍ବି ଦୋହଲୁଥିବା କଳା କେଶ ପାଣିରେ ଯୁଡ୍‌ବୁଡ୍ ହୋଇଗଲଣି । ଆଉ ହାତଟିରେ ସେ ତାର ବୋଉର ହାତ ଧରି ବାଟ କଢ଼ାଉଛି ।

ଲଗୁ କିଛି ନ କହି ଖଣ୍ଡେ ଦୂର ସେମାନଙ୍କ ପଛେ ପଛେ ଗୃଲି ଅସିଲା । ସତେକି ତାର ଆଖି ଦିଟା ଉମାର ସୁନ୍ଦର ଦେହ, ମନ୍ଥର ଗତି, ଲଳାୟିତ ଭଙ୍ଗୀରେ ଲାଗି ରହିଛି, ପଲକ ପକାଇବାକୁ ତାର ଇଚ୍ଛା ହେଉ ନାହିଁ ।

"ବୋଉ, ମୋ ବେକ ଭଣ ହେଲଣି । ଟିକିଏ ରହ, ମୁଁ ମାଠିଆଟି ଓହ୍ଲାଏଁ—"କହି ଉମା ଠିଆ ହେଲା । ତାର ମୁଣ୍ଡର ଭାର ଲାଘବ କରିବାକୁ ଲଗୁ ତର ତର ହୋଇ ଅଗକୁ ଯାଇ କହିଲା, "ରହ, ମୁଁ ଧରୁଛି... ।"

ଲଗୁକୁ ଦେଖି ଉମା ହଠାତ୍ ଚମକିପଡ଼ିଲା । ଲଗୁ ଲାଗି ଅସିଛି ଆଗରେ; ଅଥଚ ସେ ଟିକିଏ ଭଲଭାବରେ ତାର ଦେହହାତ ଘୋଡ଼ାଇ ପାରିଲା ନାହିଁ । ମୁଣ୍ଡ ଉପରୁ ଲୁଗାଟା ଖସିଯାଇଛି, ପିଠିଟା ଫୁଙ୍ଗୁଳା, ଛୋଟ ଲୁଗାଟା ପିନ୍ଧି ଅଣ୍ଟୁ ଲୁଚୁ ନାହିଁ, ଗୃଲନ୍ତବେଳେ । ବାଳଗୁଡ଼ା ମୁକୁଳା ତହିଁରେ ପୁଣି ଓଦା ଲୁଗାଟା ଚୁପୁଡ଼ା ହୋଇ ନ ଥିବାରୁ ଦେହରେ ଲାଗି ଯାଇଛି । ଛିଃ···; କିନ୍ତୁ ଉପାୟ କଣ ? ତାର ହାତ ଦୁଇଟି ବନ୍ଧ ଯେ । ଲଜ୍ଜାରେ ତାର ମୁହଁ ରଙ୍ଗା ପଡ଼ିଗଲା—ସେ ଆଖି ତଳକୁ କଲା ।

ଲଗୁ ତାର ଉତ୍ତରକୁ ଅପେକ୍ଷା ନ କରି ଦୁଇ ହାତ ବଢ଼ାଇ ତାର ମୁଣ୍ଡ ଉପରୁ ମାଠିଆ ଓହ୍ଲାଇ ହାତରେ ଧରିଲା । ଉମା ସୁବିଧା ପାଇ ସଙ୍ଗେ ସଙ୍ଗେ ଅର ମାଠିଆଟି କାଖରୁ ଓହ୍ଲାଇ ତଳେ ରଖିଲା । ମୁଣ୍ଡ ଉପରୁ କାନ୍ଧ କାଡି ଲୁଗା ସଜାଡ଼ିଦେବାକୁ ଚେଷ୍ଟା କଲା । ଅହା ! କେଡ଼େ ଦୁର୍ଦ୍ଦଶା ! ପୁରୁଣା ଚିରା ଲୁଗାଟିକୁ ଯେତେ ଟଣାଟଣି କଲେ ମଧ ତାର ଅଣ୍ଟା ମେଣ୍ଟିଲା ନାହିଁ । ମୁଣ୍ଡ ଉପରକୁ ଓଢ଼ଣା ଟାଣିଲେ, ପିଠିରୁ ଖସିଲଣି । ପିଠି ଘୋଡ଼ାଇବାକୁ ବସିଲେ, ବାହୁ ଉପରେ ଚିରା ପଡ଼ିଲଣି । ଶେଷକୁ ନିରସ୍ତ ହେଲା ।

ଜଗୁ ଉମାର ଦୁରବସ୍ଥା ବୁଝି ପରେ ଅନ୍ୟ ଆଡ଼କୁ ମୁହଁ ପଚାରିଲା, "ତୋର ତ ଭାରି ସାହସ ଉମି, ଏକା ସଙ୍ଗେ ଦ ମାଠିଆ ପାଣି !"

ଉମା ବୋଉ ଜଗୁର କଣ୍ଠ ବାରି ଖୁସି ହୋଇ କହିଲେ, "କଏ, ଜଗୁ କରେ ? କଣ କରିବ ସେ ? ନ ନେଲେ ଚାହି ଅଛି ? ଦପହର ଦଆଁ-ପର ଖରା ତାଉରେ ପୁଣି ପାଣି ପାଇଁ ତା ଖୁଡ଼ୀ ତାକୁ ଏକୁଟିଆ ଛଡ଼ିବ ! ଟିକିଏ କଣ ଦୟାମାୟା ତାର ଅଛି ? ଏତେ କଷ୍ଟଠାଇଁ ତ ଛନ ଓଳରେ ମୁଠାଏ ମିଳୁ ନାହିଁ ।"

ଉମା ମୁହଁକୁ ମୁହଁ ଜଗୁ ପଚାରିଲା, "ହଇଲେ ସତ ରେ ? ତମକୁ ସେଇଆ । ସେ ଦିନ ପରି ମୋ ହାତରୁ କାଠଫାଳିଆ ଛଡ଼େଇ ମୋତେ ଘରୁ ବାହାର କରିଦେଲୁ ! ସେଇ ଦିନଠୁ ପରି ମୁଁ ତମ ଦୁଆର ମୁହଁ ମାଡ଼େ ନାହିଁ ।"

ଉମା ବଡ଼ ବିକଳ ହୋଇ ପଚାରିଲା, "ସତ ରେ ଜଗୁ ଭାଇ, ତମେ ତେତେ ମୋ ଉପରେ ରାଗିଛ । ମୁଁ କହୁଛି, ଜଗୁ ଭାଇର କାହିଁକି ଦେଖା ନାହିଁ ।"

ଜଗୁ ହସି ହସି କହିଲା, "ମୁଁ କଣ ତୋ ଉପରେ କେବେ ରାଗି ପାରେ, ଉମି ! ଗୋଟାଏ ଆନନ୍ଦରେ ମୁଁ ରହୁଛି । ତୁ ବ ତ ଆମ ଦର ଆଡ଼େ ଯାଉନୁ ଏବେ ?"

"ମତେ ମରିବାକୁ ଡର କାହିଁ ?"

ଉମା ବୋଉ କହିଲା—"ନଈରୁ ପାଣି ବୋହି ବୋହି ତାର ବେକ ଯାଉଛି । ଯୋଡ଼ ଫାଟି ଆଁ କଲାଣି; ନୋହିଲେ ସେଠିକି ଯାନ୍ତା । ଆଜିଠୁ ଆମ ସାହିର ସବୁ କୂଅରୁ ପାଣି ଶୁଖିଲାଣି । ଅସଲ ଖରାଦିନ ତ ରହିଛି ।"

"ଏତେ ବାଟକୁ ନ ଆସି ଆମ କୂଅରୁ --"

"ଆଉ କେଉଁଠିକି ଯିବାକୁ ମନା ।"

ଜଗୁ ଘଡ଼ିଏ ଭାବିଲା । କହିଲା—"ମନା ଫନା ମୁଁ ଜାଣେ ନାହିଁ । କାଲିଠୁ ତୁ ଆମ ବଗିଚା କୂଅରୁ ପାଣି ଆଣିବୁ । ଦେଖିବି, ମନା କରିବାକୁ କାହାର ସାହସ ଅଛି । ତାଙ୍କ ଦେହକୁ କଣ ଲାଗୁଛି ? ପର ହାଣିଲା କୋଡ଼ ପାଣି ପରି ଯାଉଛି ପରା !" ଟିକିଏ ରହି ଉମାର ହାତ ଧରି ହଲାଇଦେଇ କହିଲା—"ଶୁଣିଲୁ ତ ?"

ଉମା ଧୀରେ ଧୀରେ କହିଲା, "ହଁ..."

"ଯିବୁ ତ ? ତୋ ମୁଣ୍ଡରେ ଏ କଣ ଲାଗିଛି ?" ଜଗୁ ଉମା କପାଳରୁ ବାଳ ଆଡ଼େଇଦେଲା । ଉମା ଟିକେ ସଙ୍କୁଚିତ ହୋଇ ତଳକୁ ମୁହଁ କରି କହିଲା— "ହଉ...... ।"

ଜଗୁ ଉମା ବୋଉକୁ ପଚାରିଲା, "ଉମୀର କ'ଣ ଆଉ ଲୁଗା ନାହିଁ, ବୋଉ... ?"

ସେ କହିଲେ, "ନାହିଁ ରେ ପୁଅ, ସେଇ ଖଣ୍ଡିକ ସେ ନିତି ପିନ୍ଧେ । ଦିହରେ ଓଦା ହୁଏ, ପୁଣି ଦିହରେ ଶୁଖେ । କଣ କରିବ ? ଏତେ ବଡ଼ ଝିଅ । ସେହି ଛିଣ୍ଡା ପୋରୁଅଁ ଲୁଗା ପିନ୍ଧି ପଦାକୁ ବାହାରୁଛି । କପାଳ !"

"ଯାହା କହ ପଛେ, ଉମୀ ବଡ଼ କପଟୀ । ତା ମନଟା ସଫା ନୁହେଁ । ମୁଁ ଯଦି ଏକଥା ଆଗରୁ ଜାଣିଥାନ୍ତି... । ସେ କଣ କହିବ କି ? ଖାଲି ମୁହଁରେ ସିନା 'ଜଗୁ-ଭାଇ, ଜଗୁ ଭାଇ...' । ଦେଖିଲ, କେମିତି ଅଦେଖାଙ୍କ ପରି ପଦାକୁ ଆସିଛି... ।"

ଉମା ଅଧିକ ସଙ୍କୁଚିତ ହେଲା । କି ଦୁଃଖରେ କେଜାଣି ତାର ଆଖି ଲୁହରେ ଟଳ ଟଳ ହୋଇଆସିଲା । କଣ କହିବାକୁ ବସିଥିଲା, ସତେ ଯେପରି କଥାକୁ ଚୋବି ନେଇ ତୁନି ରହିଲା ।

ଉମା ବୋଉ କହିଲେ, "ତତେ କହିବାକୁ ଲାଜ ମାଡ଼େ ତାକୁ...।"

ଜଗୁ ଅଟ୍ଟ କରି କହିଲା—"ମୋତେ ପର ମନେ କରେ ବୋଲି ସିନା । ଯଦି ମୋତେ ଭାଇ ବୋଲି ସେ ସ୍ନେହ କରୁଥାନ୍ତା...କହିଲେ ଉମି, ମୁଁ ମିଛ କହୁଛି ?" ଜଗୁ ତା ମୁହଁକୁ ଚାହିଁଲା ।

ଆଖିରୁ ଲୁହ ଝରାଇ ଉମା କହିଲା, "ସେ କଥା ନୁହେଁ ଭାଇ, ଖୁଡ଼ୀ ପରା...।"

"ମନା କରିଛି ?"

"ନା ଏଣୁ ତେଣୁ କହେ ।" ସେ ମୁହଁ ପୋଛି କାନ୍ଦିଲା ।

"ଲୋକ ନିଜ ପରି ସମସ୍ତଙ୍କୁ ଭାବେ ସିନା । ଆଛା, ତୁ କାନ୍ଦୁଛୁ କାହିଁକି ?" ନିଜ ହାତରେ ତା ଆଖିରୁ ଲୁହ ପୋଛି କହିଲା—"ତୁନି ହ । ତୋ ଖୁଡ଼ୀର ମନଟା ମୁଁ ଜାଣେ ଦେଖୁଛି । ଅଜ୍ଞ ଲୋକ ତ ସେ । ନହେଲେ

ଯିବ ନାହିଁ କି ବାଟ ଛାଡ଼ିବ ନାହିଁ । ମୁଁ ଲୁଗା ଦେବି, ସେ କଣ କହୁଛି ଦେଖିବ ।”

ଉତ୍ତର ହେବ ବୋଲି ଉମା କଳସୀ କାଖକୁ ନେଲା । ଜଗୁ ଆଉଥରେ ଧରି କହିଲା—“ଯାଅ, ଗାଁ ମୁଣ୍ଡରେ ନେବୁ ।”

—ଛଅ—

ଜଗୁ ଉମାକୁ ବିଦାୟ ଦେଇ ଘରକୁ ଫେରିଲା । ବାଟରେ କେତେ କଣ ଚିନ୍ତା କରିବାକୁ ଲାଗିଲା । ଉମା କେଡ଼େ ସୁନ୍ଦର ପିଲାଟା, କେଡ଼େ ଲାଜକୁଳୀ, ଧୀର ସ୍ଥିର । ଆହା ! ଏପରି ଅସମୟରେ ବଣ୍ଟା ଅମଣିଷଙ୍କ ହାତରେ ପଡ଼ି ସେ କେଡ଼େ ହରକତ ହେଉଛି । ଭୂକ ହୋଇ ସବୁ ଦୁଃଖ, ସବୁ ତାଡ଼ନା ସହୁଛି, ମୁହଁ ଖୋଲି ବାଦ ଖୁଡୀଙ୍କର ଅତ୍ୟାଚାର କାହାରି ଆଗରେ କହୁ ନାହିଁ । ଧନ୍ୟ ତାର ଧୈର୍ଯ୍ୟ, ଧନ୍ୟ ତାର ଧୈର୍ଯ୍ୟ, ଧନ୍ୟ ତାର ସହଣିଗୁଣ ! କିନ୍ତୁ ସେ ବା ତା ପାଇଁ କଣ କରିପାରେ ? କିଛି କରିବାର ଇଚ୍ଛା ଥିଲେ ବି ତାର ସେ ସ୍ୱାଧୀନତା କାହିଁ ? ତେଣେ ଘରେ ବାପା; ସେ ତ ମହାନ୍ ଲୋକ । ଜାଣୁ ଜାଣୁ ଯେ ନେତାର ଟିଖୋରେ ପଡ଼ି ବେଶ୍ ବୋଉ ଭାଉଜକୁ ତାଙ୍କର ବାପଘରୁ ଅଣିବାକୁ ମନ ଦେଉ ନାହାନ୍ତି ସରିଯିବ ବୋଲି । ସେ କି କେବେ ମାଗିଲେ କିଛି ଧାନ ଚୂଡ଼ିଲ ଦେବେ ପଚା ପାଇଁ ? ଅସମ୍ଭବ । ତେବେ ସେ କଣ କରିବ ?

ଆଛା, ଗୋଟିଏ ଉପାୟ ଅଛି । ଠିକ୍ ସେ ତା'କୁ ଲୁଗା ଦେବ ବୋଲି କହି ଆସିଛି, ସେ କଥା ସେ ନେତାକୁ କହିବ । ନେତା ବୋଉଣି କାହିଁକି ଅଜକାଲି ତାର କଥା ମାନୁଛି । ଏ ବିଷୟ କହିଲେ ସେ ଅବଶ୍ୟ ମଙ୍ଗିବ । ନ ମଙ୍ଗିବ କାହିଁକି ? ଯାହା କିଛି ଦେଉ, ସେ ତ ତାଙ୍କର ମାଲ; କିଛି ନେତାର ଗଣ୍ଠି ମାଲ ନୁହେଁ । ଗୋଟାଏ ଦେଲେ ଆଉ ଗୋଟାଏ ପାଇବ. ଖର୍ଚ୍ଚ ଦେଇ ଭଲ ପାଇବ । ବେଶ୍, କିନ୍ତୁ ପେଟକୁ ମୁଠାଏ ନ ଦେଲେ ତ ହେବ ନାହିଁ । ଖାଲି ଲୁଗା ଖଣ୍ଡେ ପିନ୍ଧିଲେ ପ୍ରାଣ ରହେ ନାହିଁ, ଅସଲ କଥା ମୁଠାଏ । ସେ ପଦ ଭଣ୍ଡାର ଘରୁ ଚୂଡ଼ିଲ ଚୋରି କରି ଦବ ?

ତା ହେଲେ ଏକା ଉମା ପାଇଁ ତାକୁ ଗୋବିନ୍ଦ ସାହୁର ବଂଶଠାରୁ ଚଲାଇବାକୁ ପଡ଼ିବ । କାହାର ଅଙ୍କୁଶରେ ସେ ସ୍ୱେଚ୍ଛାବାସ କରି ପାରିବ ନାହିଁ । ଫଳରେ ଦେବା ନ ଦେବା ସମାନ ହେବ । ଉମା ପାଇଁ ନିଜ ଘରୁ ନିଜେ ଗୈର ଛଇବା ସାର୍ଥକ ହେବ ନାହିଁ । ନେତୀ ମନ କଲେ ସବୁ ହୋଇପାରେ । ଏ କଥା ବି ସେ ନେତୀକୁ କହିବ । ସେ ଉମାକୁ କହି ଆସିଛି , ନିରାଟ ଖରାରେ ପାଣି ପାଇଁ ନଈକୁ ନ ଯାଇ ପଧାନଙ୍କ ଗଡ଼ିଆଡ଼ା କୂଅକୁ ଆସିବାକୁ । ପାଣି ଶୁଖିଯିବ ବୋଲି ଗାଁ ଲୋକଙ୍କୁ ସେଥିରୁ ପାଣି ନେବାକୁ ବାପା ମନା କରିଛନ୍ତି । ସେ ଦିନ ଭଗୀ ରାଉଳ ନୋଠାଏ ପାଣି କାଢ଼ିଲା ବୋଲି ସେ କେତେ ଶୋଧା ଖାଇଛି । ଜାଣିଲେ ଅବଶ୍ୟ ଗାଳି ଦେବେ, ନେତୀ ନ କହିଲେ ସେ ଜାଣିବେ ବା କିପରି ? ଏ ବିଷୟରେ ବି ନେତୀକୁ ହାତ କରିବାକୁ ହେବ । ଉମା ପାଣି ପାଇଁ ଆସିଲେ, ମୁଁ ଥାଏ ନ ଥାଏ, ତାକୁ ସେ ଯେମିତି ହେଲେ ହବୁଦନେ ମୁଠିଏ ଲେଖାଏଁ ଲୁଚେଇ ଖାଇବାକୁ ଦେବ । ଏଥିରେ ନେତୀ ଯଦି ରାଜି ନ ହୁଏ, ସେ ନିଶ୍ଚୟ ତାର ଗୋଡ଼ ଧରିବ ।

ନେତୀ ଉମାକୁ ଭାରି ଭଲ ପାଏ । ଦେଖା ହେଲେ ପାଖରେ ବସାଇ କେତେ ଦୁଃଖସୁଖ ହୁଏ , ତା ଆଖିରୁ ଲୁହ ପୋଛିଦିଏ, ପିଠିରେ ହାତ ବୁଲାଇ କେତେ ବୋଧଶୋଧ କରେ । ସ୍ନେହରେ ସେଦିନ ତାକୁ କୁଣ୍ଢାଇ ଧରି ତା କାନରେ କେତେ କଣ ଭୁନ ଭୁନ କରି କହିଲା କେଜାଣି, ଉମା ଟିକିଏ ଦୂରି ଅସି ବଡ଼ କରୁଣ ଭାବରେ ତା ମୁହଁକୁ ଚାହିଁଲା । ତା ଆଖିରୁ ଠପ୍ ଠପ୍ ହୋଇ ଲୁହ ଝରି ପଡ଼ିଲା । ନେତୀ କଣ ବୁଝି କେଜାଣି ପୁଣି ତାକୁ କୋଳକୁ ଅଉଜାଇ ନେଲା । ଟିକିଏ ଉଚ୍ଚସ୍ୱରରେ କହିଲା, "ମୁଁ କଣ ଖରାପ କଥା କହିଲି, ଉମା ?...ଯାହା କହିଲି ତା ହେଲେ ତ ମୋର ଛାତି ଉପରୁ ତୋତେ ଅଲଗା କରନ୍ତି ନାହିଁ...... ।" ଏତିକି କହି ସେ ହସ ହସ ମୁହଁରେ ଜଗୁ ଆଡ଼କୁ ଚାହିଁଲା । ଜଗୁ ଟିକିଏ ଦୂରରେ ଆଡ଼ୁଆଳରେ ଠିଆ ହୋଇ କିଛି ନ ଦେଖିଲା ପରି, କିଛି ନ ଶୁଣିଲା ପରି ତାର ବାଠୁଆ ଝଡ଼ାରେ ଗୁଣ ଚଢ଼ାଉଥିଲା । ସେ ସବୁ ଦେଖିଛି । ଉମା ଯେତେବେଳେ ତାର ଗମ୍ଭୀର ମୁହଁଟି ଜଗୁ ଆଡ଼େ ବୁଲାଇ, ଜଗୁର ଉଜ୍ଜ୍ୱଳ ଆଖି ଦୁଇଟାର

ତେଜ ସହି ନ ପାରି; ମୁହଁରେ ରଙ୍ଗ ଉକୁଠାଇ, ଆଖି ଫେରାଇଲା, ଧୀରେ ଧୀରେ କହିଲା,"ଛିଃ, ତୁ ବଡ଼ ଦୁଷ୍ଟ ନେଟା ମାଉସି ! - ଛଡ଼୍, ମୁଁ ଯାଏଁ...।" ଜଗୁ ଗୋଟାଏ କାନ୍ଥ ଅଡ଼ୁଆଳକୁ ଘୁଞ୍ଚିଗଲା । ନେଟା ଅହ୍ଲାଦ କରି କହିଲା, "ଯିବୁ କୁଆଡ଼େ ଲୋ ଫ୍ଲେଇ··· !"

ଜଗୁ ଭାବିଲା—ନେଟା ନିଶ୍ଚୟ ତାର ଅନୁରୋଧ ରଖିବ । କହିଲା କଥା ତଳେ ପକାଇବ ନାହିଁ । ସେ ଯାଏଁ ଯାଏଁ ଆଗ ବଳପଡ ଥା ଆଗରେ ଉମାର ପ୍ରଶଂସା ଗାଏ, ଉମାର ରୂପ ବଖାଣେ । ତା ପ୍ରତି ସବୁବେଳେ ଦୟା ରଖିଥିବାକୁ ବୁଝାଏ—ଆଜ ମଧ୍ୟ ଜଗୁକୁ ଶୁଣାଇ ମନକୁ ମନକୁ କହି ହୁଏ—ଜଗୁ ନାଣି ଏକା ! ଆହା ! ପୋଢ଼ାକପାଳୀକି ବିଧାତା ମନ୍ଦ ଚଷାଘରେ ଜନମ କରିଥାନ୍ତା... । ପୁଣି ଗୁଣୁ ଗୁଣୁ ହୋଇ ବଡ଼ ପାଟି କରି ଭାବେ—ସରଗ ଗୃନ୍ଦ ପାଖରେ ଦେଖି , ହାତରେ ପାଇ, ଯିଏ ଜାଣି ପଡି ଘେନ ପାଇଲା ଦରବ ଛାଡ ଦେଇ ବସେ,ତାଠୁଁ ବଳି ଓଲୁ କିଏ ଅଛି ? ଜାତି,ଓହୋ ରେ ଜାତି ! ଜାତି କଣ ମଣିଷ ଦେହରେ ଲଗି ରହିଛି; ଦକ୍ଷିଣୀ ସୁନାକୁ ଅଉଟି ତାଳ, ପିଟି ପାଟି, ଯେଉଁ ଗହଣା ଗଢିଲେ ବ ତ ଯିଏ କହିବ ଖାଣ୍ଟି ସୁନା, ତମ୍ବା କି ପିତ୍ତଳ କେହି କହିବ ନାହିଁ । କେବେ କେବେ ନେଟା କାନ୍ଥ ବାଡ଼କୁ ଦେଖାଇ କହେ, ଅବଶ୍ୟ ଜଗୁକୁ ଶୁଣାଇ—"କାହା ବାପ ମା ସବୁଦନେ ବଞ୍ଚି ରହିଛନ୍ତି ? କାହାର କେଉଁ କଥାଟା ବା ବାକି ରହିଯିବ ? ପର ମୁହଁରୁ ନିନ୍ଦା ଶୁଣିଲେ ସମ୍ପତ୍ତିରୁ ତ କେହି ଭାଗ ବାଣ୍ଟି ଗୃହିଁବେ ନାହିଁ । ଜାତି ଭାତ ମୁଠାଏ ଦେଲେ ଜାତି ଭାଇଙ୍କ ମୁହଁ ଭଡ଼କି କୁଆଡ଼େ ଯିବ, ପାଟି ବାନ୍ଧ ହୋଇଯିବ । ତେଣିକି ତ ସବୁ ଚୁପ୍ ।···ଜଗୁଟା ବେହେଳ୍ଡାଟାଏ, କିଛି ତାର କାଣ୍ଡଜ୍ଞାନ ନାହିଁ... ।" ଦନେ ସେ ମୁହେଁ ମୁହେଁ ଜଗୁକୁ କହିଲା—"ଉମା ତତେ ଭାରି ଭଲ ପାଏ ରେ, ତୋ କଥା ପଡ଼ିଲେ ସେ କାନ ଡେରି ଶୁଣେ । ତୋ କଥା କହିଲେ, ସେ ଲାଜରେ ମୁହଁ ପୋତେ । ଖାସ୍ ତୋତେ ଦେଖିବାକୁ—ସେ କେଉଁ ଛାଟକରେ ହେଲେ ଧାଇଁ ଆସି ଏଣେ ତେଣେ ଆଖି ପକାଇ ତୋତେ ଖୋଜେ···। ତୁ ତାକୁ ମୋଟେ ବୁଝୁ ନାହଁ, ମୁହଁରେ କହୁ ସିନା—ସତରେ ତାକୁ ତୁ ମୋଟେ ଭଲ ପାଉ ନାହଁ ···ବେହେଳ୍ଡାଟା... ।"

ଇସ୍ବର ଧକ୍କୁଣ ମନଟା ଛଅଁଳ ହୋଇ ଉଠିଲା । ସତେ ଉମା ତାକୁ କେତେ ଭଲ ପାଏ ! ଆଉ ସେ ! ସେ କଣ ଉମାକୁ ଭଲ ପାଏ ନାହିଁ ! ଭଲ ପାଇବା ଭିତରେ ଜାତର ବ୍ୟବଧାନ କଛି ନୁହେଁ । ଉମା ସୁନ୍ଦର— କେତେ ସୁନ୍ଦର ! ଇସ୍ବର ଅନ୍ତର ଭିତରେ କେଉଁ ସୂକ୍ଷ୍ମ-ତନ୍ତ୍ରୀଟି ଥର ଉଠିଲା, ସେ ଜାଣେ ନାହିଁ । ମନଟା ଆପେ ଆପେ ଯାଇ ଗୋଟାଏ ମାୟାପୁରୀରେ ସ୍ୱପ୍ନ-ରାଜ୍ୟ ସୃଷ୍ଟି କଲା । ଆଖି ଆଗରେ କେତେ ଆମୋଦପ୍ରଦର ସୁନେଲୀ ଚିତ୍ର କ୍ଷଣକ ଭିତରେ ଦେଖା ଦେଇ ତାର ତରଳ ପ୍ରାଣ ଭିତରେ ଉନ୍ମା- ଦନାର ତରଙ୍ଗ ସୃଷ୍ଟି କଲା । ସେ ଭାବିବାକୁ ଲାଗିଲା—ଉମା ତ ଅମର- ପୁରୀର ଅପ୍‌ସରା ! ସେ ତେବେ ସତରେ ତାକୁ ଭଲ ପାଏ । ଇସୁ ଯାଉଁ ଯାଉଁ ମଝି ବାଟରେ ଠିଆ ହୋଇରହିଲା । ପଛକୁ ଫେରି ଚାହିଁଲା, ଉମା ଅନେକ ବେଳୁଁ ଅଦୃଶ୍ୟ ହୋଇଗଲାଣି । କେଜାଣି କାହିଁକି ତାର ଛାତି ଭିତରଟା ଥର ଉଠିଲା । ନା, ସେ ଫେରିଯିବ, ଉମାକୁ ଆଜିଯାଏ ସେ ଆଖି ପୁରାଇ ଦେଖି ନାହିଁ, ଆଜି ଦେଖିବ । ଆଜି ତାର ହୃଦୟ-ବୀଣାର ସୂକ୍ଷ୍ମ ତନ୍ତ୍ରୀଟିରେ ଗୋଟିଏ ଅବୁଝା ଗୀତର, ଅପରିଚିତ ରାଗିଣୀର ଯେଉଁ ମୃଦୁ କରୁଣ ମୂର୍ଚ୍ଛନା ଉଠୁଛି, ଉମାକୁ ସେ ତାହା ଶୁଣାଇ ମୁଗ୍ଧ କରିବ । ଆଉ ତାର ଉଜ୍ଜ୍ୱଳ ଆଖିରେ ଲୁହ ଦେଖି ତାର ପ୍ରାଣର ତୃଷା ବୁଝିବ ।

ତାର ଦେହସାରା ସତେ କି ଗୋଟାଏ ଅଜଣିତ ଭୟର ଭାବନାରେ ଥର ଉଠିଲା ପୁଣି । ଆଗକୁ ଚାହିଁଲା, କେହି ନାହିଁ । ଭୟ କଣ ? ଭୟ କାହାକୁ କରିବ ସେ ? ଫେରିଯିବାକୁ ମନ କଲା,ଗୋଡ଼ ଚଳିଲା ନାହିଁ । ସତେ ଯେପରି କିଏ ତାକୁ ଧରି ଅଟକାଇ ରଖୁଛି । ବକୁଳ ପରି ବନ୍ଧୁବନ ତଳର ଗୋଟିଏ ଘଟଣା ତା ମନଭିତରେ ଚମକି ଉଠିଲା, ଆପେ ଆପେ ତାର ଭ୍ରୂଲତା ଦୁଇଟି ଉପରକୁ ଉଠିଲା, ଆଖିପତା ବିସ୍ଫାରିତ ହେଲା । ପରକ୍ଷଣରେ ଲଜରେ ମୁଣ୍ଡ ତଳକୁ ନୁଆଁଇଲା । ଛିଃ, ସେ ଏଣୁ ତେଣୁ କଣ ଗୁଡ଼ାଏ ଭାବୁଛି । ଉମା ବୋଉ ସେଦିନ ପରା ତା ହାତରେ ମହାପ୍ରସାଦ ଦେଇ ତାକୁ ଧର୍ମପୁଅ କରିଛି । ଉମା ତାର ଧର୍ମର ଭଉଣୀ । ଛିଃ, ଧର୍ମ କଣ ଲୁଚିଯିବ । ଜଗନ୍ନାଥ କଣ ଏତିକି ଅନ୍ଧ ?

ଜଗୁ ଫେରି ଗୁଲ୍ଲା । ଉମା ତାକୁ ଭଲ ପାଏ, ସେ ମଧ ତାକୁ ଭଲ ପାଏ । ଭାଇଭଉଣୀ, ଭଲ ପାଇବା ତ ସ୍ୱାଭାବିକ । ଲୋକେ ତାର କଥା ଭାବିବେ, ଅଥବା କହୁବେ । ସେଥିକି ସେ ଛାଲ କରିବ କାହିଁକି ? ସେ ଯାହାକୁ ଠିକ୍ ବୋଲି ମନେକରେ, ଯାହାକୁ ନିଜର କର୍ତ୍ତବ୍ୟ ବୋଲି ଧେନେ, ଅବଶ୍ୟ ସେ ତାହା କରିବ । ପର ହାତକୁ ଗୁହିଁ ବସିବ କାହିଁକି ? ପରର କଥା ବା ଶୁଣିବ କିଆଁ ?

ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ । ବୈଶାଖର ଗୁଇଁଗୁଇଁଆ ଖରାରେ ତାର ଦେହ ମୁଣ୍ଡ ଗରମ ହୋଇଗଲା । ଗୁଲିବା ବାଟର ବାଲି ଏଣେ ତାତି-ଗଲଣି । ଜଗୁର ଗାଧୁଆ ହୋଇ ନାହିଁ । ନେଟ ତେଣେ ଗୁହିଁ ବସିଥିବ, ମନେ ମନେ ଭାବି ଚଢ଼ୁଥିବ । ଜଗୁ ଗାମୁଛା ଖୋଲି ମୁଣ୍ଡରେ ପକାଇଲା । ଘରେ ଜଲଦି ପହଞ୍ଚିବ ବୋଲି ଗମନର ବେଗ ବଢ଼ାଇଲା ।

"ଜଗୁ କରେ...।" ଗାଁ ମଝି ଦାଣ୍ଡ ବରଗଛ ଅଡ଼ୁ କିଏ ଜଣେ ଡ଼ାକ ଛାଡ଼ିଲା, "କୁମ୍ଭୀର ନେଇ ଅଧ ନଈରେ କଲଣି, ପୁଅ ଛାଟିକିଣି ଧରି ମାଙ୍କଡ଼ ତଡ଼ୁଛ...!"

ଆଉ ଜଣେ କିଏ କହିଲା ବଙ୍କ ପାଟିରେ, "ତାଙ୍କର କଣ—ହୋଇଲେ, ନା ହୋଇଲେ । ବାପ ଧାନ ଗୁଡ଼ାଇ ଖାଇଛ ଚଖିଛୁ, ମୂଠିଏ ମାରିଦେଇ ଯା ବୁଲୁଥା...।"

ବାଡ଼ ଆଡ଼ୁଆଳରୁ ଜଗୁ କାହାରିକି ଚିହ୍ନି ପାରିଲା ନାହିଁ । ତୁଣ୍ଡ ବାଟେ ସେ ଉଚ୍ଚସ୍ୱରରେ କହିଲା, "କଣ ହେଲା କି ମଉସା ..."

"ଆରେ, ଗଉଡ଼ଙ୍କ ଗୁହାରି ଠିକେ ଶୁଣ—।"

ଜଗୁ ବାଟ ଭାଙ୍ଗି ଗାଁ ଦାଣ୍ଡ ବରଗଛ ଅଡ଼େ ମୋଡ଼ିଁଲା ।

—ସାତ—

ବରଗଛ ଛାଇରେ ଗାଁର ଲୋକଯାକ ଠୁଳ ହୋଇଛନ୍ତି । କାହାର ମୁହଁରେ ସରସତା ନାହିଁ କି କାହାରି ତୁଣ୍ଡରୁ ସେପରି ଖୁସି କଥା ଫିଟେ ନାହିଁ । ଶବ୍ଦେ ପାଟିଏ ବଢ଼ାଇଲା ପରି ସମସ୍ତେ ଗମ୍ଭୀର, ସମସ୍ତେ

ବରଷ । ସତେ କି ବୁଢ଼ାଯାକଙ୍କୁ ସମାଧି ଠାଣୁଛି ଆଉ ଠୋକାଯାକଙ୍କର ଅକାଳବାର୍ଦ୍ଧକ୍ୟ ଆସି ଘଟୁଛି । କିଏ ମୁଣ୍ଡରେ ହାତ ଦେଇ ତଳକୁ ଗୃହିଁ ସଦ୍ୟ ବିଧବା ଷୋଡ଼ଶୀ ପରି ମୌନ, କିଏ ବା ଥୋଡରେ ହାତ ଦେଇ ଯୋଗମଗ୍ନ ଋଷି ପରି ବରଗଛ ଉପରକୁ ଗୃହିଁ ରହୁଛି । କଥା କଣ ? ହଠାତ୍ ଗାଁରେ ଏତେବଡ଼ ବିପଦ କଣ ପଡ଼ିଲା ?

ବର ଦାଣ୍ଡରେ ଏତେ ଲୋକ ଜୁଣ୍ଡ ହୁଅନ୍ତି ସାଧାରଣତଃ ପୂର୍ଣ୍ୟପର୍ବ ଦିନରେ, ନୋହିଲେ ଭାଇଅଣ ସଭାରେ । ଲୋକଙ୍କ କୋଳାହଳରେ ଗାଁ ସାରା କମ୍ପିଯାଏ, ଠୋକାଙ୍କର ଫୂର୍ତ୍ତିରେ ଗାଁ ଦାଣ୍ଡ ଚମକାଉଠେ । ପିଲାଙ୍କର ଖେଳ, ଦୌଡ଼ାଦୌଡରେ ଧୂଳି ଉଡ଼ି ପବନରେ ମିଶେ । ଆଜି କାହିଁକି ତାର ସବୁ ଓଲଟା ? ଗାଁ ଲୋକଙ୍କ ପିଣ୍ଡରେ ପ୍ରାଣ ନାହିଁ । ଯେପରି କି ଭୂମିଙ୍କର ଆଶଙ୍କାରେ ଅଛି ଉତ୍ତେଜନା ଅଲୋକ ନବାଣୋନ୍ମୁଖ ।

ମରହଟ୍ଟା ବର୍ଗି ଆସିଲା ପରା ! ନା, ସେ ବହୁଦିନ ତଳର କଥା ! ୧୮୦୩ ସାଲ ପୂର୍ବର କଥା । ହୁଏ ତ ବୁଢ଼ାବୁଢ଼ୀଙ୍କର ମନେ ଥିବ । ଠୋକାଏ କାହୁଁ ଜାଣିବେ ସେ କଥା, ଆଖି ଆଗରେ ନ ଦେଖିଲେ । ବାପଅଜାଙ୍କ- ଠାରୁ ଶୁଣାଶୁଣି କରି ଯାହା ବୁଝିବା କଥା ! ବର୍ଗି ଆସିଲା ! ଓହୋ ! କି ଉତ୍ତେଜନା, କି ଭୟ, କି ଚହଳ, ଗାଁ ଗାଁରେ ଆତଙ୍କ ପଡଯାଏ ! ଧନ ଜନ, ଜୀବନ ରକ୍ଷା କରିବାକୁ ଲୋକେ ତତ୍ପର ହୋଇଉଠନ୍ତି । ନୋହିଲେ ସର୍ବନାଶ ! ବର୍ଗି ଅସିବେ—ବଳାତ୍କାରରେ ଘରେ ପଶି ବାସନକୁସନ, ଟଙ୍କାସୁନା ଯାହା ପାଇବେ ସବୁ ବୋହି ନେବେ । ଘରେ, ପାଚିଲା ଧାନ କିଆରୀରେ ନିଅାଁ ଲଗାଇବେ । ସୁନ୍ଦର ବୋହୂଝିଅ ଦେଖିଲେ ଅତ୍ୟାଗୃର କରିବେ । ବାଧା ଦେବାକୁ ବସିଲେ, ପ୍ରାଣ ଯାଏ । ବାଧା ଦେବ କିଏ ? ବାଧା ଦେବାକୁ ଆସିବ ବା କିଏ ? ପ୍ରାଣବିକଳରେ ପିଲାକୁଅ ଘେନି ପଳାଇବାକୁ ବାଟ ସନ୍ଧେ ନାହିଁ । ମୁଣ୍ଡରେ ହାତ ଦେଇ ବର ଦାଣ୍ଡରେ ବସି ଭାବିଲେଣି କହିବାକୁ ବେଳ କାହିଁ ?

ବର୍ଗିର ଅତ୍ୟାଗୃର, ଓଡ଼ିଅର ପଳାୟନ ! ଗୋରୁ ପରି ପଳାଇ ଯାଇ ଆତ୍ମରକ୍ଷା କରିବାକୁ ଓଡ଼ିଆ ବଣଜଙ୍ଗଲରେ ଲୁଚେ ! ଏଇଟି ମନରେ ଟିକିଏ ସନ୍ଦେହ ଆସୁଛି । ଓଡ଼ିଆ ପରା ଏତେ ବୀର ଜାତି ! ଇତିହାସ

ଦମୟନ୍ତୀ ତାର ବୀରକାହାଣୀ ଶତ ସହସ୍ର ମୁଖରେ ଗାଉଛି । ବର୍ଗି ଆସିଲେ, ହଠାତ୍ ତାର ସମରସ୍ପୃହା, ବୀରହୃଦୟ ନଇଁପଡ଼ିଲା କାହିଁକି ? ଖାଲି ବେଳ, ଅନଙ୍ଗ, ପୁରୁଷୋତ୍ତମ ଜୀବନଭୟରେ ବାଲୁଆ ପଥ ପଳାଇ ଯାଇ ଗାତ ଭିତରେ ଲୁଚିବାର ବ୍ୟବସ୍ଥା କଲେ ଶେଷରେ ! ହୁଏ ତ ଇତିହାସ ମିଛ, ଦମୟନ୍ତୀ କାଳ୍ପନିକ; ନୋହିଲେ ଏ ଜାତିର ସମରସ୍ପୃହା, ବୀର ମନର କ୍ରମିକ ପତନର ଅନ୍ୟ କାରଣ ଅଛି, ଯେଉଁଥି ପାଇଁ ଓଡ଼ିଆ ଆଜି ଭୀରୁ, ଓଡ଼ିଆ କାପୁରୁଷ, ଓଡ଼ିଆ ନିଃସ୍ୱ ।

କି ଦୁର୍ଯୋଗରେ ସେଦିନ ଓଡ଼ିଆର ଶେଷ ସ୍ୱାଧୀନ ସମ୍ରାଟ୍ ପ୍ରତାପରୁଦ୍ରଙ୍କର ଦେଖା ହେଲା ନିମାଇଁ ସନ୍ନ୍ୟାସୀ ସଙ୍ଗରେ । କି ଅସମୟରେ ଓଡ଼ିଆର ବୀର ସେନାପତି ରାମାନନ୍ଦର ମିଳନ ହେଲା ନିମାଇଁ ସନ୍ନ୍ୟାସୀଙ୍କ ସହିତ ଗୋଦାବରୀ ତୀରରେ । ସେହି ଦିନରୁ ଏ ଜାତିର ସମରସ୍ପୃହାର କ୍ରମିକ ହ୍ରାସ । ଜୀବନ ଅନିତ୍ୟ । ଧନସମ୍ପତ୍ତି ଅଳୀକ । ବାପପୁଅ ବନ୍ଧୁବାନ୍ଧବ— ସବୁ ମିଛ । ନିତ୍ୟ ଶାଶ୍ୱତ ସତ୍ୟ ଏକା କୃଷ୍ଣ । ମାଳା ଧରି, ମୁଣ୍ଡରେ ଦେହରେ ଛାପା ମାରି, ଖାଲି କୃଷ୍ଣଙ୍କୁ ଭଜ, ମୁକ୍ତି ପାଇବ, ଅନନ୍ତ ସ୍ୱର୍ଗରେ ସୁଖ ଲାଭ କରିବ । ଶତ୍ରୁକୁ କ୍ଷମା କର, ଭଗବାନ ତୁମକୁ କ୍ଷମା କରିବେ । ଓଡ଼ିଆ, ସମର-ପ୍ରିୟ ଓଡ଼ିଆ, ଯାହାର ବାଁ ହାତରେ ମାଳା, ଡାହାଣ ହାତରେ ଖଣ୍ଡା, ସେ ଢୋକା-ସନ୍ନ୍ୟାସୀର ଗାରୁଡ଼ି ମନ୍ତ୍ରରେ ଭୁଲିଲା । ନିଜର ବୀର ଧର୍ମ ଭୁଲି, ସେ ହେଲା ବୈଷ୍ଣବ ! ଜୀବନ ତ ଅନିତ୍ୟ । ଐହିକ ସୁଖରେ କି ପ୍ରୟୋଜନ ? ଧନସମ୍ପତ୍ତି ଅଳୀକ । କି ଲାଭ ମିଳିବ ଅର୍ଜନ କରି ? ସୁଖେ-ଦୁଃଖେ ଜୀବନର କେଇଟା ଦିନ ହରି ନାମ ଗାଇ କଟାଇ ଦେଲେ, ତେଣିକି ସ୍ୱର୍ଗରେ ଅମୃତ ପାରଣା ଭୋଗ । ବାପପୁଅ ବନ୍ଧୁବାନ୍ଧବ ସବୁ ମିଛ । ତାହା ପାଇଁ ତେବେ ଅକ୍ଳାନ୍ତ ପରିଶ୍ରମ କରି ଧନ ସଞ୍ଚୟ ? କେଇ ଦିନ ବଞ୍ଚିବା, ଶତ୍ରୁମିତ ଧରି ବସିବା ? ନୂଆ ଧର୍ମରେ ଦୀକ୍ଷିତ ଓଡ଼ିଆ କ୍ରମେ କ୍ରମେ ତାର ସବୁ ହରାଇବସିଲା ପରା ପ୍ରଭୁଙ୍କର ପାଦପଦ୍ମରେ ଲୟ ଦେଇ । ସେ ଜଗନ୍ନାଥ ମୂର୍ତ୍ତି ପରି ଜଡ଼ ନିସ୍ତେଜ ହୋଇବସିଲା ସତେ !

ଜଗୁ ବରଗଛ ମୂଳକୁ ଆସି ଲୋକଙ୍କର ଏପରି ଅବସ୍ଥା ଦେଖି କିଛି ଭାବି ପାରିଲା ନାହିଁ । ବଲ ବଲ କରି ଯା ମୁହଁ ତା ମୁହଁକୁ ଚାହିଁଲା ।

ଗୋବିନ୍ଦ ସାଉ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ଆରମ୍ଭ କଲା, "ତମର ଘରକୁ ଆମେ ସବୁ ବାହାଚକୁରେ ଜଗୁ, ପ୍ରାଣ ବଞ୍ଚାଇବାର ଅନ୍ୟ ବାଟ ଆଉ ଦେଖାଯାଉ ନାହିଁ ! ଗାଁ ଯାକ ଉପାସରେ ସଡ଼ୁଛନ୍ତି...।"

ମଧୁ ସ୍ୱାଇଁ ମୁଣ୍ଡରୁ ହାତ କାଢ଼ି କହିଲେ; "ଆମ ଘରେ ଦିନ ଓଳି ହେଲା ଚୂଲିରେ କୁହୁଳା ପଡ଼ି ନାହିଁ । ପିଲାକୁଆଗୁଡ଼ିକ ଉପାସରେ କାଉବାଉ ହଉଛନ୍ତି, ଭୁଣ୍ଡରେ ଅଧାର ବାକି ନାହିଁ । ଗହଣା ଗଣ୍ଠି ଯାହା ଥିଲା, ବନ୍ଧକ ବାକର କରି ଏ ଗାଁ ସେ ଗାଁ ଦଉଡ଼ ଧପଡ଼ ଟଙ୍କାରେ ପାଁ ସେର ଭିତରେ ଯେଉଁ ଚୂଡ଼ା ଆଣି ଘରେ ସାଇତି ରଖିଥିଲି, ସେତିକି ସରିଲା ! ଏବେ କରେ କଣ... ?"

ରାମ ଭୋଇ କହିଲା, "ସାନ୍ତେ, ଏ ଗରିବର ଗୁହାରି ଟିକିଏ ଶୁଣିବା ହେଉ ! ଆମ ସାହିଆ ଛତରରେ ପଶିଲେ । ଅଧେ ଲୋକ ଗାଁ ଛାଡ଼ି ପଳାଇଲେଣି । ବାକିତକ ପାଣକ ସଙ୍ଗେ ମିଶି ଗୋରୁ କାଟି ଖାଉଛନ୍ତି । ପ୍ରାଣବିକଳରେ ଜାତି ଠାଣି ରଖୁଛି କିଏ ? ପୋଖରୀ ଯୋଡ଼ ଶୁଖି ଠକ୍ ଠକ୍ ହେଲାଣି । ଗେଣ୍ଡା କୋଚିଆ ମିଳିବା ଡେଣିକି ଥାଉ, ଅନାବନା ଶାଗ-ପତରର ଦେଖା ନାହିଁ···କଣ ଖାଇ ବଞ୍ଚିବା ?"

ଗୋପୀ ମହାରଣା କହିଲା, "ବାବୁ, ଆମର ତ କିଛି ଜମିବାଡ଼ି ନାହିଁ । ବନ୍ଧାଲି ଟୁକ୍ ଟୁକ୍ କରି ପର ଘରେ ମୂଲ ଲାଗି ବେଳ କାଟୁଥିଲୁ । ଗାଁ ଲୋକଙ୍କ ଅବସ୍ଥା ବାରଣ୍ଡା ହକଡ଼ା, କାମ କରାଉଛି କିଏ ? ମାଣେ କି ପୋଷେ କାହାରିକୁ ଉଧାରେ ମାଗିଲେ କେହି ଦେଉ ନାହାନ୍ତି, ଚଳୁ କେମିତି ...?"

ଭଗୀ ଜେନା କହିଲା, "ଗାଈ ଗୋରୁ ପଘାରେ ମଲେ । ମୁହିଁ ଆଗରେ ପକାଇବାକୁ କୁଟାଖିଅ ଘରେ ନାହିଁ । ଗୁହାଳ ସବୁ ପଦା ହୋଇଗଲାଣି । କି ବିପଦ ପଡ଼ିଲା, ଆହା ଭଗବାନ୍ ! ପିଲାକୁଆଙ୍କ ପ୍ରାଣ ବଞ୍ଚାଇବା କେମିତି ? ନଡ଼ା ବିଡାଏ ମାଗିଲେ ଗାଁଲୋକେ ଦେଉ ନାହାନ୍ତି । ଖରାଦିନ, ବିଲ-ବାଡ଼ରେ ଘାସ ପତ୍ର ନାହିଁ, ଭୂଇଁ ଶୁଙ୍ଘି ଶୁଙ୍ଘି କେଇ ଦିନ ଗାଈ ଗୋରୁ ଆଉ ବଞ୍ଚିବେ ? ବୁଦ୍ଧି ଦିଶୁ ନାହିଁ, କଣ କରିବା···?"

ବୁଢ଼ୁଡା କେଉଟ କହିଲା, "ଆରେ ନଡ଼ା କଥା କଣ କହୁଛ ? ବର୍ଷାଦିନ ମାଡ଼ି ଆସୁଛି, ଘର ଉପରେ ଖିଏ ନଡ଼ା ପକାଇବା କେମିତି, ସେ

କଥା ଆଉ କହ । ନଈକୂଳିଆ ପବନରେ ଘରଦ୍ୱାର ସବୁ ଉଡ଼ିଗଲା । ଯାହା କିଛି ଥିଲା, କାହୁଁ ଏ ହନୁପଲ ଆସିଲେ ଯେ...?”

ଏତେବେଳକେ ଜଗୁ ତୁଣ୍ଡରୁ କଥା ବାହାରିଲା । ସେ କହିଲା, “ସମସ୍ତେ ଯଦି ମନ କରନ୍ତି, ଘଡ଼ିକରେ ଏ ମାଙ୍କଡ଼ପଲ ଗାଁ ଛାଡ଼ି ପଳାନ୍ତେ । ମୁଁ ଏକୁଟିଆ କଣ କରିବି ? ସକାଳୁ ତାଙ୍କ ପଛରେ ଲାଗିଛି । ତଡ଼ି ତଡ଼ି ତାଙ୍କୁ ନଈକୂଳ ଯାଏ ନେଲି । ଏ ଗଛରୁ ସେ ଗଛକୁ ଡେଇଁ ମୋତେ ହଇରାଣ କରିପକାଇଲେ । ଶେଷକୁ ଫେରିଲି, ଆଉ ଏକୁଟିଆ କଣ କରନ୍ତି ମୁଁ ?”

ତା କଥା ଶୁଣି କେହି କିଛି ଉତ୍ତର ଦେଲେ ନାହିଁ । ଟିକଏ ରହି ଗୋବିନ୍ଦ ସାଉ କହିଲା, “ଗାଁ ଲୋକେ ଆଜି ଚମର ଦୁଆରକୁ ଏକଜୋଟ ହୋଇଯିବାକୁ ବସିଛନ୍ତି । ବୁଢ଼ା ପଧାନେ ଯଦି ଦୟା କରନ୍ତି, ଗାଁଟା ରକ୍ଷା ହେବ, ନୋହିଲେ ଅଧରଦ୍ୱାରୀ ସମସ୍ତେ ପେଟବିକଳରେ ଛତରରେ ପଶିବେ ।”

ଭଗୀ ଜେନା କହିଲା, “କଥା ତ ସେଇଆ । ଚାଲ, ସମସ୍ତେ ତାଙ୍କ ଗୋଡ଼ତଳେ ଲମ୍ବ ଲମ୍ବ ହୋଇ ପଡ଼ିବା । ସେହି ମାରିଲେ ମାରିବେ, ତାରିଲେ ତାରିବେ । ଗାଁରେ ଧାନ ଗୁଣ୍ଡିଲ, ନଡ଼ା କୁଟା ଥାଉଁ ଥାଉଁ ଆମେ ଆଉ କାହା ଦ୍ୱାରକୁ ଯିବା ?”

ମଧୁ ସ୍ୱାଇଁ କହିଲେ, “ଆମର ହୋଇ ଜଗବନ୍ଧୁ ଯଦି ବାପାଙ୍କୁ ଆମ ପାଇଁ ଲଢ଼ି ଗୁହାରିପଦ କହନ୍ତେ, ବୁଢ଼ା ଅବଶ୍ୟ ତାଙ୍କ କଥା ଶୁଣନ୍ତେ । ଆମେ ସବୁ କିଛି ଦେବାକୁ କହୁ ନାହୁଁ । ନିଜ ଖର୍ଚ୍ଚକୁ ବର୍ଷକ କାହିଁକି, ଦି ବର୍ଷର ଖର୍ଚ୍ଚ ରଖି ବାକି ଧାନ ନଡ଼ା ଆମକୁ ଦେଇ ଦିଅନ୍ତୁ । ନୋହିଲେ ଯଦି ବିଶ୍ୱାସ ନ ପାଉଛି, ଜମିବାଡ଼ି ବନ୍ଧକ ରଖି ଦେଉନ୍ତୁ; ଯେମିତି ଇଚ୍ଛା !”

ବନ୍ଧୁ ବୈଶାଖ ଓଠ ନେଫେଡ଼ି କହିଲା, “ଜଗବନ୍ଧୁ ତ ଜଗବନ୍ଧୁ ! ବ୍ରହ୍ମା ଆସି କହିଲେ ତ ବୁଢ଼ା ଶୁଣିବେ ନାହିଁ ! ଏକବାଗିଆ ଲୋକ, ମହାସଢ଼ ! ମନ ନ ମାନିଲେ ମୁଣ୍ଡ ପିଟି ଦେଲେ ବି ସେ ବଙ୍କେଇବା ଲୋକ ନୁହନ୍ତି ! ମିଛଟାରେ ବୁଢ଼ା ବାଡ଼େଇ କି ଫଳ ! ଅନ୍ୟ ଉପାୟ ବିଚାର କର । ନ ହେଲା କଥାରେ ମୁଣ୍ଡ ଘୂରାଉଛ କାହିଁକି ?”

ଭୋକ ଦାଉରେ ସେତେବେଳକୁ ଜଗୁର ଜଠରାଗ୍ନି ଜଳୁଥିଲା; ପିଲା ଦିନରୁ ସୁଖରେ ବଢ଼ି ଆସିଛି; ଉପାସ ଭୋକ ସହି ମଣିଷ ହୋଇ ନାହିଁ। ଭୋକ ହେଲେ ତାକୁ ଦିନ ଦୁର ଅନ୍ଧାର ଦିଶେ। ଘଡ଼ିକରେ ସେ ଦୁନିଆରେ ନିଆଁ ଲଗାଇଦେବା ଲୋକ। ଗାଁଲୋକଙ୍କ କବଳରୁ ମୁକ୍ତ ହୋଇ ସେ ଶୀଘ୍ର କପର ସେଠାରୁ ଖସି ଚାଲିଯିବ, ଏହି କଥା ଚିନ୍ତା କରୁଥିଲା। ବନ୍ଧୁର କଥା ଶୁଣି ତାକୁ ପଳାଇଯିବାର ଗୋଟାଏ ଉପାୟ ମିଳିଗଲା।

ସେ କହିଲା, "ବନ୍ଧୁ ଭାଇ ଯାହା କହିଲ, ସବୁ ଅକ୍ଷରେ ଅକ୍ଷରେ ସତ। ବାପା କାହାର କଥା ଶୁଣିବା ଲୋକ ନୁହନ୍ତି। ବରଂ ତୁମେମାନେ କହିଲେ ସେ ଶୁଣନ୍ତେ। ମୁଁ କହିଲେ ତ ସେ ମୋତେ ଶୁଣିବେ ନାହିଁ; ଠେଙ୍ଗା ଧରି ଗୋଡ଼ାଇବେ। ବଦ୍‌ରାଗୀ ଲୋକ! ତୁମେ ସବୁ କଣ ଏହା ଜାଣ ନାହିଁ! ଥରେ ରାଗିଲେ, ତାଙ୍କ ମୁଣ୍ଡକୁ ପିତ୍ତ ଚଢ଼ିଯାଏ...... ! ଦେଖ ତ...... ।"

ଏତିକି କହି ଜଗୁ ବିଦାୟ ନେଲା। ଲୋକେ ନୀରବ ହେଲେ। ଉପାୟ ବା କଣ ଅଛି? ନିଜ କଲା କର୍ମ ଅବଶ୍ୟ ଭୋଗିବାକୁ ପଡ଼ିବ। ନେଡ଼ି ଗୁଡ଼ କହୁଣିକି ବୋହିଯାଇଛି। ଯେତେ ଜିଭ ବଢ଼ାଇଲେ ଏବେ ପାଉଛୁ କେଉଁଠି? ଯେତେବେଳେ ହୁସିଆର ହେବାର କଥା, ସେତେବେଳେ ତ ହୁଡ଼ିଛନ୍ତି, ବର୍ତ୍ତମାନ କାମୁଡ଼ି କଗୃଡ଼ ହେଲେ କି ଫଳ ମିଳିବ? ବଡ଼ ବଢ଼ିଙ୍କ କଥା ନ ମାନିଲେ ବିପଦ ତ ପଡ଼ିବାର କଥା।

ଆରବର୍ଷ ଏହି ଦିନେ, ଏହି ବୈଶାଖ ମାସରେ ଯେତେବେଳେ କୁମୁଟି ମହାଜନମାନେ ଆସି ଗାଁ ଗାଁ, ଘର ଘର ବୁଲି ଧାନ କିଣିବାକୁ ଲାଗିଲେ, ଆଗରୁ ଭାଉ ଥିଲା ଟଙ୍କାରେ ପନ୍ଦର ଗଉଣୀ, ମହାଜନମାନେ ଦର ବଢ଼େଇ ଦେଲେ ଟଙ୍କାରେ ତିରିଶ ଗଉଣୀ। ଲୋକେ ସୁବିଧା ଦର ପାଇ ବାଲୁର ଲାଗିଲା ପରି ଘରଦ୍ୱାର ଖାଲି କରି ଧାନ ବୁହା ଲଗାଇଲେ। କମ୍ କଥା! ଅଧିକୁ ଅଧେ। ଏ ସୁବିଧା କି ଛାଡ଼ିବାର କଥା! ଏ ବର୍ଷଟା ଯଦି ଠାକୁରେ କରନ୍ତି, ଫସଲ ଫଳେ, ତେବେ ଆଉ ଭାବନା କଣ? ଜ୍ୟେଷ୍ଠ ମାସରେ ବୁଣାବୁଣି। ପୌଷ ସରିକି ଫସଲ ଉଠିବ, ନୂଆ ଧାନ ଅମଳ ହେବ। ତେଣିକି ନିଶ୍ଚିନ୍ତ। ବିହନ ଗଣ୍ଡାକ ଛଡ଼ା ଛ ସାତ ମାସ ମାନିଆ

ହିସାବ କରି ଧାନ ରଖି, ଚାଷୀମାନେ ବହୁକା ଧାନ ଛଡ଼ାଇ ଦେଇ ଅଣ୍ଟାରେ ଟଙ୍କା ଖୋସିଲେ । ଗରିବ ଚାଷୀର ଆନନ୍ଦ କହିଲେ ନ ସରେ । ନୂଆ ନୂଆ ଚକ୍ ଚକ୍ ସୁନ୍ଦର ଟଙ୍କା, କେଡ଼େ ବାଜେଣି; ପ୍ରଲୋଭନ ସମ୍ଭାଳ ରହିବା କି ଗରିବ ଓଡ଼ିଆ ପକ୍ଷରେ ସମ୍ଭବ ?

ମଚ୍ଛବୁଦ୍ଧିଆ ଜାତଭାଇ ଆମର ମାଡ଼ ଖାଇଲେ, କଷ୍ଟ ସହିଲେ ଯାଇଁ ବୁଦ୍ଧି ବାହାରେ । କୁମୁଟି ବେପାରୀମାନେ ତ ଶଗଡ଼ ଶଗଡ଼ କରି ଧାନ-ବୁହା ଲଗାଇଲେ । ସମୁଦ୍ର କୂଳରେ ଗୋରା-ଜାହାଜ ଠିଆ ହୋଇଛି । ଟଙ୍କାରେ କୋଡ଼ିଏ ଗଉଣୀ ଦରରେ ଧାନ ନେଇ ନୂଆ ବାଜେଣି ଟଙ୍କା ଦେବାକୁ ଆଗ୍ରହରେ ଚାହିଁ ରହିଛି । ଦେଶରୁ ଯେତେ ଧାନ ଦୁଇ ମାସ ଧରି ବୁହା ଲାଗିଲା, ସବୁ ଯାଇ ପଶିଲା ଜାହାଜ-ରାକ୍ଷସ ପେଟରେ । କେତେ ରାକ୍ଷସ ଯେ ପୁରୀ ଜିଲ୍ଲାର ସମୁଦ୍ର କୂଳରୁ ଧାନ ଗ୍ରାସ କରି, ପାଲ ବାନ୍ଧି, ଆନନ୍ଦରେ ଡେଣା ଉଡ଼ାଇ ସମୁଦ୍ର ସେପାରିକି ଚାଲିଗଲେ ତାର କଳନା ନାହିଁ । କୁମୁଟି ବେପାରୀ ଅଣ୍ଟାରେ ଟଙ୍କା ମାରି ମନଖୁସିରେ ଘରକୁ ଫେରିଲେ । ଦେଶ ଲୋକେ ବି ନିଶ୍ଚିନ୍ତରେ ଘରଣୀମାନଙ୍କ ପାଇଁ ଗହଣା ବରାଦ ଦେଲେ । ନୋହିଲେ ଟଙ୍କାତକ କରନ୍ତେ କଣ ?

ବୈଶାଖ ଯାଇ ଜ୍ୟେଷ୍ଠ ଆସିଲା, ବର୍ଷାର ଦେଖା ନାହିଁ । ଚାଷୀ ମହଲରେ ଆତଙ୍କ ପଡ଼ିଲା, ବିଲ ବାଡ଼ି ଫାଟି ଆଁ କରିଛି । ଲଙ୍ଗଳ ଲୁହା ଶୁଣୁ ନାହିଁ ! କି ବୁଦ୍ଧି କରିବେ ? କେତେ ହୋମ ଧୂମ, କେତେ ଯାଗ ଯଜ୍ଞ, ଠାକୁରମାଜଣା, ଠାକୁରାଣୀ ଗାଧୁଆ ବ୍ୟର୍ଥ ହେଲା । ଗରିବ ପ୍ରଜାର ଡାକ ଇନ୍ଦ୍ର ରଜାର କାନରେ ବାଜିଲା ନାହିଁ । ସର୍ବନାଶ ! ଚାରିଆଡ଼େ ହାହାକାର ପଡ଼ିଲା । ଚାଷୀ ମହଲରେ କାନ୍ଦ ବୋବାଳି ପଡ଼ିଗଲା —ସରିଲା, ସବୁ ସରିଲା । ନରପୁର ଗାଁର ମୁଣ୍ଡ ଉପରେ ଦେଇ କେତେ କେତେ ରଙ୍ଗଙ୍ଗିଆ ମେଘ ନିତି ଭାସିଯାନ୍ତି, ଲୋକଙ୍କର ଆକୁଳ ପ୍ରାର୍ଥନା ସତେ କି ତାଙ୍କର କାନରେ ପଶେ ନାହିଁ । କେବେହେଲେ ଭୁଲରେ ଥରେ ସେମାନେ ଆଖି ଫେରାଇ ଚାହାନ୍ତି ନାହିଁ । ଲୋକେ ହତାଶ ହୁଅନ୍ତି ।

ଜ୍ୟେଷ୍ଠ ଯାଇ ଆଷାଢ଼ ଆସିଲା, ଲୋକଙ୍କର ହତାଶ ଭାଙ୍ଗିବାକୁ ଝଡ଼ ବର୍ଷା ଛୁଟିଗଲା । ଚାଷୀ ମନ-ଆନନ୍ଦରେ ବିଲକୁ ହଳ ନେଲେ ।

ବୁଣାବୁଣି କାମ ଆରମ୍ଭ ହେଲା, ଶେଷ ହେଲା; ଶ୍ରାବଣ ଆସିଲା, ହେଲା ବର୍ଷା ! ଅହା ! ଇନ୍ଦ୍ର ରଜାର କେଡ଼େ ଦୟା ! ସେ ସବୁ ଲୋକଙ୍କ ବିକଳ ସହି ପାରନ୍ତି ନାହିଁ । କି ସୁନ୍ଦର ପାଳକ ! ଧାନ ବିଲକୁ ଗୃହିଁଲେ ପେଟ ପୂରିବ । ବଛବଛା ସରିଲା, ଖାଲି ବେଙ୍ଗୁଷଣ୍ଠା ବାକି । ପ୍ରଜାର ଗୁହାରି ଶୁଣି ଇନ୍ଦ୍ର ରଜା ଟିକିଏ ଆଖି ଫେରାଇଲେ ହେଲା । ଦେଲ ଦେଖି ଅସହିଏ ବର୍ଷା ହେଲେ ହେଲା । ବର୍ଷା କାହିଁ ? ଓହୋ, ଏ କି କରାଟ ଖରା ! ବିଲ ବାଡ ଶୁଖି ଝଣ ଝଣ ହେଲଣି । ହେ ଇନ୍ଦ୍ର ରଜା, ଟିକିଏ ସୁବୃଷ୍ଟି ମକା । ଏତିକ ବେଳକୁ ସେ ଶୋଇଲେ ।

ଅହା' ବୃଷୀକୁ ଡ଼ହଳ ବିକଳ କରି ଡାର ବାହନଗଣ୍ଡିକ ସରିଲା ଯାହା, ଧାନ ବିଲରେ ଗଛ ଶୁଖିଲା । ପ୍ରଜାଙ୍କର ଆଖିର ଲୁହ ଆଖିରେ ମଲା । କଣ କରିବେ ? ହାତର କଥା କି ? ଏଥର ପିଲ୍ଲଙ୍କ ମନରେ ପଶିଲା— ଆରେ, ଧାନଗୁଡ଼ାକ ପାଖରେ ଥିଲା ଛଡ଼ିଦେଇ ବସିଲେ, ଏଣିକି କରିବେ କଣ ? ଟଙ୍କା ସୁନାକୁ ଗୃହିଁଲେ ତ ରସ ବାହାରିବ ନାହିଁ । ଧନ ଦଉଲତକୁ ଅନାଇ ବସିଲେ ପେଟ ପୂରିବ ନାହିଁ । ଉପାୟ ?

ଲୋକେ ଭୁକ ହୋଇ ରହିଲେ । ହେଉ, ଦେଖାଯାଉ କଷ୍ଟେ-ମଷ୍ଟେ କେତେ ଦିନ ଚଳୁଛୁ । କାଅଣ୍ଟ ବେଳକୁ ଅବଶ୍ୟ ବେପାରୀମାନେ ଆସି ଧାନ ଚେଉସା କରିବେ । ବନ୍ଧାଛନ୍ଦା ପକାଇ କୌଣସିମତେ ବର୍ଷକ କଟିଗଲେ ଆଉ ଫସଲତକ ଗୃଲଯିବ ।

ଛ ମାସ କଟିଗଲା । ଧାନ ବେପାରୀ କେହି ଧାନ ନେଇ ଆସିଲେ ନାହିଁ । ଗୃରଆଡ଼େ ପୃଥିବୀସାରା ତ ସେହି ଅବସ୍ଥା, ଧାନ ଆସିବ କାହୁଁ ? ଧୀରେ ଧୀରେ ଧାନର ଭାଉ ଚଢିଲା । ବନ୍ଦିବାକୁ, ବନ୍ଧାଛନ୍ଦା ପକାଇ ଓଳିଏ ଖାଇ ଦି ଓଳି ଉପାସ ରହି ଲୋକେ ବେଳ କାଟିଲେ । ଫଗୁଣ ଯାଇ ଚଇତ ପଡିଲା, ଲୋକଙ୍କର ଦୁର୍ଭାବନା ବଢିଲା, ଦୁର୍ଭିକ୍ଷର ଆଶଙ୍କାରେ ଜମିଦାର, ମଠ-ମହନ୍ତ, ଦେଶର ଛୋଟ ଛୋଟ ମହାଜନ-ମାନେ ବିକି ଖର୍ଦ୍ଦି ବନ୍ଦ କରିଦେଲେ । ଯାହା ପାଖରେ ଯାହା ଥିଲା, ଲୋକେ ଜାକି ରଖିଲେ, ଦୁଇଟି କାରଣରୁ । ପ୍ରଥମତଃ ନିଜର କୁଟୁମ୍ବ ସ୍ୱଜନଙ୍କର ଭରଣପୋଷଣ, ଦ୍ୱିତୀୟତଃ ଭାଉ ଟିକେ ଭଲ କରି ଚଢିଗଲେ ଟଙ୍କ ବ ମାଲ ଦଶ ଟଙ୍କା କରି ବିକିବେ ।

ଲୋକଙ୍କ ଭିତରେ ଚହଲ ପଡ଼ିଲା—ଦୁର୍ଭିକ୍ଷ । ଲୋକଙ୍କ ମନରେ ଆତଙ୍କ ପଶିଲା—କଣ କରିବେ ? ଲକ୍ଷ୍ମୀଠାକୁରାଣୀଙ୍କୁ ଛାଣୁ ଛାଣୁ ହାତାଦର କରି, ଜାହାଜ ଚଢ଼ାଇ ବିଦେଶ ପଠାଇଲେ । ତାଙ୍କର ତ ରୁଷିବାର କଥା । ଘରଦ୍ୱାର, ଜମିବାଡ଼ି, ଟଙ୍କା ସୁନା—ସବୁ ପଡ଼ି ରହିଛି; ଏକା ଲକ୍ଷ୍ମୀ ନାହାନ୍ତି । ଲୋକେ ଆକାଶକୁ ଚୁହିଁ ହାହାକାର କଲେ । କେତେ ଲୋକ ଗାଁଗଣ୍ଡା ଛାଡ଼ି ମାଗି ଖାଇ ଜୀବନ ରଖିବାକୁ ବାହାରି-ଗଲେ । କାଳ ପଡ଼ିଲା । ଗାଁଟାରେ ଚଳାଖିଆ ଲୋକ ଏକା ପଧାନେ । ତାଙ୍କର ମଉରସି ସମ୍ପତ୍ତି ଭିତରେ—ଘର, ଖାନାବାଡ଼ିକୁ ଛାଡ଼ି ଜମିବାଡ଼ି ଯାହା ଥିଲା, ଫସଲ ଅମଦାନିରୁ ବର୍ଷକର ଖରଚବେଚ ଯାଇ ଧାନ କୋଡ଼ିଏ ପଚିଶ ଭରଣ ବଳିପଡ଼େ । ସେତିକ ସେ ଦେଢ଼ି ମହାଜନରେ ଲଗାନ୍ତି । ନିଜ ଦହାନ୍ତରେ ସେ କାହିଁ କେଉଁଠି ଗୁଣ୍ଠେ କ ବିଶ୍ୱାଏ ଜମି କିଣି ନାହାନ୍ତି । କଣ ହେବ ? ଯେତିକି ଅଛି, ସେତିକ ତ ନେଇ ଅଣି ଥୋଇ ପାରିବା ମୁସ୍କିଲ ।

ଯାହା କହ, ଦେଢି ମହାଜନ ବିଦ୍ୟାରେ ସେ ବଡ଼ ପାରଙ୍ଗମ । ପଇସାକ ଚୂରି ପଇସା କରି ଯାଖରେ ମାରୁଥିଲେ । ସୁନା ସଞ୍ଚି ରଖିବାକୁ ସେ ଭଲ ପାନ୍ତି । ନରପୁର ଗାଁରେ ଏପରି କେହି ଲୋକ ନାହିଁ, ଯେ ତାଙ୍କଠୁ ଧାର ଉଧାର କରି କେବେ ହେଲେ ନ ଚଳିଛି । ଆଜି ବୁଝି ଆସିଲେ, ଅଧେ ଲୋକ ତାଙ୍କର ଧାରୁଆ ବାହାରିବେ । ଅନ୍ୟର ଏକ କଥା, ପଧାନଙ୍କର ଆଗ ପଛକୁ ସବୁବେଳେ ନଜର । ଯେତେବେଳେ ଗାଁଯାକ ଜଲୁରି ଲାଗିଲା ପରି ଧାନ ସବୁ ବିକିବାକୁ ବସିଲେ, ଏକା ପଧାନେ ବଳକା ପଇବଢ଼ିରେ ବର୍ଚ କିଣି ଧାନ ମରେଇ ବାନ୍ଧି ରଖିଲେ । ଖୁଉ ତ ଚଢ଼ୁଛି, ବେଳ ପଡ଼ିଲେ ଅବଶ୍ୟ ଚୂରି ପଇଧା ଲାଭରେ ଛଡ଼ାଇ ଦେଇ ପାରିବେ । ଲାଭ ଆଶାରେ ତ ଦୁନିଆ ଅତଯାତ । ପଧାନେ ଏବେ ତିନଶ ଭରଣ ଧାନ ଢିବଟା ମରେଇ କରି ବାଡରେ ଜମା କରି ରଖିଛନ୍ତି । ସେଥିକି ଲୋକେ କାହିଁକି ଅଖି ପକାଇବେ ?

ନଜେ ତ ବେଲୁର କାମ କରିଛନ୍ତି । ଏହିକ୍ଷଣି ପର ମାଲରେ ଆଖି ପକାଇ ପର ଟଙ୍କ ଦେଖି ହାଇଁପାଇଁ ହେଲେ କିଏ ଶୁଣୁଛି ? ପଧାନେ ଭଲ ଧାରୁରେ

ଗଢ଼ା । ପରନ୍ତୁ ହାକିମରେ ନ ଥାନ୍ତି କ ଲୋକରେ ନ ଥାନ୍ତି । ତେବେ ଝିନାଲୋକରେ ସେ କେବେ ବେଉସା ଚଳାନ୍ତି ନାହିଁ । ଯେତେବେଳେ ଦର ସୁବିଧା ହେଲା ବୋଲି ସେ ବୁଝିବେ, ସେତିକିବେଳେ ସେ ବେଉସା କରିବାକୁ ମନେଇ ଭାଙ୍ଗିବେ । ଗାଁଲୋକ ଉପାସ ଭୋକରେ ଗଡଯାଉଛନ୍ତି ବୋଲି ଯେ ଲୋକେ କହିଲେ, ସେ ମନେଇ ଭାଙ୍ଗିବେ, ସେ କଥା ନୁହେଁ ।

ଏହି ସବୁ କଥା ଭାବି ବଗୃର ଗୋବିନ୍ଦ ସାଉ ଗାଁଲୋକଙ୍କୁ କହିଲେ, "ଅରେ ପଧାନେ ତ ଶୁଖିଲା କାଠ, ସେ କ ଆମର ଗୁହାରି ଶୁଣିବେ ? ମୁଁ କହୁଛି, ଚାଲ ଗ୍ରାମବାସୀଏ ଆଜି ଏକଜୋଟ ହୋଇ ଜମିଦାରଙ୍କ ନିକଟକୁ ଯିବା , ନାଏବ ବାବୁଙ୍କ ଗୋଡ଼ତଳେ ପଡ଼ି ଦୁଃଖ ଜଣାଣ କରିବା । ମୁଁ ଶୁଣୁଛି , ଜମିଦାରଙ୍କ ଅମାରରେ ଧାନ ଜମା ଅଛି । ଦୟା କରି ସେ ଯଦି ଧାର ଉଧାର ଦିଅନ୍ତି, ତେବେ ପଧାନଙ୍କ ଗୋଡ଼ ଧରିବା କିଛି ଦରକାର ହେବ ନାହିଁ ।"

ମଧୁ ସ୍ୱାଇଁ କହିଲା, "ଯିବାକୁ ମୁଁ ମନା କରୁ ନାହିଁ । ଚାଲ; କିନ୍ତୁ ସେକାଳ ପଶାଳ ଆଉ ନାହିଁ ରେ ବାଇଆ ! ଜମିଦାରକୁ ବାପ ବୋଲି ମାନି ଚଳୁଥିଲ । ସେ ବି ପ୍ରଜାଙ୍କୁ ପୁଅ ପରି ପାଳୁଥିଲେ । ଆଜିକାଲିକା ଜମିଦାର ତ ସହସ୍ର କୋଶରେ ରହିଲେ । ତମର ଦୁଃଖ ଶୁଣିବ କିଏ ? ତମର ହାରି ଗୁହାରିରେ ପିଠିରେ ପଡ଼ିବ କିଏ ? ଯେଉଁମାନେ ଏଠି ରହିଲେ, ସେମାନେ ଚାକର ବାକର ଲୋକ । ଟଙ୍କାର ପିଅଶ... ।"

ଗୋପୀ ମହାରଣା କହିଲା, "ସମସ୍ତେ ସେଇଆ । ତେବେ ବଥ ବଥାଏ, ନା ଆଉ ବଥାଏ ? ଆମ ପୁରୁଣା ଜମିଦାର ଥିଲେ ଆମର ଲୋକ— ଏକା ରକ୍ତ, ଏକା ନାହି ଦଖଣ୍ଡ । ଆଉ ଏ କାହୁଁ ଅଇଲା ଜମିଦାର, ପୋଷା ପୁଅ ଗଞ୍ଜା ଗୁଅ; ଭୁଛେଇଁକ ବାର ହୋଇପଡିବେ । ତେଲରେ ସିନା ତେଲ ମିଶେ ରେ ଭାଇ, ପାଣି ମିଶିବ କୋଉଠୁ ? ସତେ ଭାଇ, ବିନା ଦୋଷରେ ମାହାଲ ହରିଲି, ସାଆନ୍ତେ ଆମର ପିଲାଛୁଆ ଘେନି ଗଡଜାତକୁ ଗଲେ, ଜଙ୍ଗଲରେ ପଶିଲେ, ଦେଶରୁ ଲକ୍ଷ୍ମୀ ଛାଡ଼ି ତାଙ୍କର ସଙ୍ଗରେ ଗଲେ ।"

ଭଗୀ ଜେନା କହିଲା, "ନାଏବ ଯଦି ମନା କରନ୍ତି...।"

ଗୋବିନ୍ଦ ସାଉ କହିଲେ, "ତେଣିକି ପଧାନଙ୍କୁ କହିବା ।"

ମଧୁ ସ୍ବାଇଁ, "ସେ ବି ଯଦି ନ ମାନନ୍ତି...?"

ଗୋପୀ—"ଖାଇବା ବିନା ତ କିଛି ମରିବା ନାହିଁ । ତା ଆଗରୁ ଦେଖିଲା କାମ କରିବା । ଖସି ମାଡ଼ି ଆସୁଛି । ଚାଲ, ଉପରବେଳା ଯିବା ପରା......।"

—ଆଠ—

ସେହିଦିନ ଉପର ଓଳି ।

ଜଗୁ ମୁହଁରୁ ସବୁକଥା ଶୁଣି ନେଟା ମନେ ମନେ କଣ ଯେପରି ସନ୍ଦେହ କଲା; କିନ୍ତୁ କଣ ଯେ ସନ୍ଦେହ କଲା, ଠିକ୍ ବୁଝି ପାରିଲା ନାହିଁ । ଆଉ ଯାହା ହେଉ, ଏଥର ଯେ ଜଗୁ ତାର ହାତମୁଠା ଭିତରକୁ ଆସିବ, ସେ ବିଷୟରେ କିଛି ସନ୍ଦେହ ନାହିଁ । ପୋଲୁଅ ଭିତରେ ମାଛ, ଯେତେ ଛଟପଟ ହେଲେ ଯିବ କୁଆଡ଼େ ?

ସେ ମୁହଁ ଶୁଖାଇ କହିଲା, "ପଧାନଙ୍କ କଥା କି ତତେ ଅଜଣା ଅଛି ରେ ଜଗୁ ? ଲୁଗା ଖଣ୍ଡେ ନ ହେଲା ପେଟରୁ କାଟିଦେବ । ତାର ହିସାବ କିଏ ରଖୁଛି ? ପଧାନେ ନ ଜାଣିଲେ ହେଲା । କିଏ ନ ଦେବ ? ତୁମ୍ଭ ଯେପରି ପିଲା, ତାକୁ ଦେଖିଲେ, ତା ମୁହଁରୁ ଦି ପଦ କଥା ଶୁଣିଲେ, ଯେତେ ଶତ୍ରୁ ହେଲେ ବି ତାର ମନ ଟଳିବ । ତୁ ଯେତେବେଳେ ଶରଧାରେ କହୁଛୁ, ତୋ କଥା ତଳେ ପକାଇବି କେମିତି ? ତମର ସୁଖ, ତମର ଆନନ୍ଦ ଦେଖିଲେ ମୋ ଆଖି ପୂରେ ।"

ନେଟାର ବ୍ୟବହାରରେ ଜଗୁର ବିଦ୍ରୋହୀ ମନଟା କେତେ ବନ୍ଧୁ ବଶ ହୋଇଥିଲା । ତାର କଅଁଳ ମନଭୁଲାଣିଆ କଥା ଶୁଣି ସେ କହିଲା, "ଲୁଗା କଥାଟା ସେତେ ବଡ଼ ନୁହେଁ । ଲୁଗା ଖଣ୍ଡେ ପିନ୍ଧିଲେ ମଣିଷର ପେଟ ପୂରେ ନାହିଁ କି ପ୍ରାଣ ରହେ ନାହିଁ । ମୁଠାଏ ଖାଇବା କଥା ହେଉଛି ଆଗ ।"

ନେତା କହିଲା, "ଠିକ୍ କଥା । ଜଣେ ଲୋକକୁ ଦାନରେ ମୁଠାଏ ଖାଇବାକୁ ଦେଲେ ଆମର ସରିଯିବ ନାହିଁ ।"

ଜଗୁ, "ଦିପହରେ ଯେତେବେଳେ ସେ ପାଣି ପାଇଁ ଆସିବ, ସେତିକି-ବେଳେ ତୁ ତାକୁ ଘର ଭିତରକୁ ଡାକି ନେଇ ଚୁଡ଼ାଭୁଜା ଯାହା ମିଳିବ, ମୁଠାଏ ଖାଇବାକୁ ଦବୁ । ଆଉ କିଏ ଜାଣିବ କାହିଁକି ?"

ନେତା, "ବେଣୁଅକୁ ବଣ କମ୍ ଦେଖିବୁ କରେ ! ସେ ଖୁବ ଜଣେ...!"

ଜଗୁ—"ବେଣୁକୁ ମୁଁ ବାଁରେଇ ସାଙ୍ଗରେ ନେଇଯିବ ବଗିଗୁକୁ ।"

ନେତା—" ଉମା ଆମ ଘରେ ଖାଇବାକୁ ମଙ୍ଗିବ ତ ?"

ଜଗୁ—"ନ ମଙ୍ଗିବ କାହିଁକି ?"

ନେତା—"ଅରେ ତା ବାପ ଖୁଡ଼ୀଙ୍କ କଥା ଜାଣୁ ନାହିଁ ? ସେମାନେ ଜାଣିଲେ ତାକୁ ବାର କଥା କହି ହିଙ୍ଗାସିବେ ।"

ଜଗୁ—"ସେମାନେ ଜାଣିବେ କିପରି ? ସେ ଯଦି ନ ମଙ୍ଗେ, ତୁ ମୋତେ ଡାକି ଆଣିବୁ ।"

ଜଗୁ ତାର କଥା ଶେଷ କରି ବାଡ଼ିଘରକୁ ଗଲା । ନେତା ସଜନା ଶାଗ ବାଛୁ ବାଛୁ ମନକୁ ମନ ଗୁଣୁ ଗୁଣୁ ହୋଇ କହିଲା— "ଓହୋ ରେ, କି ସୋହାଗ । ଏଇ ସୋହାଗରୁ ରୋଗ ବାହାରେ । ଦେଖା-ଯାଉ, କେଉଁ ପାଣି କେଉଁ ସୁଅରେ ଯାଉଛି ?"

ବାଡ଼ିଘର କଡ଼କୁ ଆସି ସେ ଉଙ୍କିମାରି ବାଡ଼ିକୁ ଚାହିଁଲା, କେହି ନାହାନ୍ତି । ଅମାର ଘରୁ ପଧାନଙ୍କର ପାଟି ଶୁଭୁଛି । ସେ ବୋଧହୁଏ କାହାକୁ କଣ ବୁଝାଇ କହୁଛନ୍ତି । ବେଳେ ବେଳେ ବେଣୁର ପାଟି ଶୁଭୁଛି ।

ଦି ପହରଟା ଏ ପାଖ ସେ ପାଖ, ନପର ଚପର ହୋଇ ତାର କିଛି କାମ ହୋଇପାରିଲା ନାହିଁ । ପୋଖରୀ ତ ଶୁଖିଲା,ମାଛ ଧରିବାର ସୁବିଧା ଆଉ ନାହିଁ । ବର୍ତ୍ତମାନ ଜଗୁର ପ୍ରଧାନ କାମ ହେଉଛି ମାଙ୍କଡ଼ ଘଉଡ଼ିବା । ଛୁଟିକିଣିର ଟେକାମାଡ଼କୁ ଆଉ ସେମାନେ ଖାତିର କରୁ ନାହାନ୍ତି । ବନା ବାଠୁଳିଖଡ଼ା ନ ହେଲେ ସେମାନେ ସାଧି ହେବେ ନାହିଁ କି ବୋଲି ମାନିବେ ନାହିଁ । ଚକଟା ମାଟି ବାଡ଼ିଅଡ଼ି କଦଳୀଗଛ ମୂଳରେ ଜମା ହୋଇଛି । ବାଠୁଳି ବାଳିବାକୁ ଡର କାହିଁ ? ଆଜି ବି ଖବର ଅସି ନଇଁଲାଣି । ବେଣୁ ଯଦି ତା

ସଙ୍ଗରେ ମିଶି ବାହୁଳ ତଳାରେ ସାହାଯ୍ୟ କରନ୍ତା, ତେବେ ହୁଏ ତ କାଲ ସରକ ବାହୁଳ ଶୁଣିପାରନ୍ତା । ଏହି ଉଦ୍ଦେଶ୍ୟରେ ଜଗୁର ବେଣୁକୁ ଗୁହିଁବାର କଥା ।

ବେଣୁକୁ ପାଟି କରି ଡାକିବାକୁ ତାର ସାହସ ହେଲା ନାହିଁ । ଅପେକ୍ଷା କରିବାକୁ ଆଜ ବେଳ ନାହିଁ । କଣ କରିବ ସେହି କଥା ଭାବୁଛି । ବେଣୁ ହାତରେ ଖଣ୍ଡେ କାଗଜ ଧରି ଦଉଡ଼ ଦଉଡ଼ ଆସି ତା ପାଖରେ ପହଞ୍ଚିଲା ! ଜଗୁକୁ ଦେଖି ଖୁସି ହୋଇ କହିଲା—

"ଦାଦା, ମୁଁ କାଲି ମାମୁଘରକୁ ଯାଉଛି ।"

ଜଗୁ ଟିକିଏ ବିସ୍ମିତ ହୋଇ କହିଲା, "କାହିଁକି ରେ···?"

ବେଣୁ କହିଲା, "ବୈଷ୍ଣବ ମାମୁ ଲୋକ ପଠାଇଛନ୍ତି ।"

"ତତେ ନେଇ ଯିବାକୁ ?"

"ନା"

"ଆଉ···"

"ବୋଉ ଆସିବାକୁ ଖବର ପଠାଇଛନ୍ତି ।"

"ତୁ ତେବେ ଯିବୁ କାହିଁକି ?"

"ମୋ ଯିବା କଥା ସେ କିଛି ଲେଖି ନାହାନ୍ତି । କେବଳ କହିଲେ— ବର୍ତ୍ତମାନ ବେଳ ଭଲ ନୁହେଁ । ବୋଉର ଆସିବା କିଛି ଦରକାର ନାହିଁ । ବୋଉ ମତେ ଦେଖିବାକୁ କୁଆଡ଼େ ଭାରି କାନ୍ଦୁଛି । ସେଥିପାଇଁ ମୁଁ ଯିବି । ବୋଉ ପାଖରେ ରହିବି । ଆଉ ଏଠିକି ଆସିବି ନାହିଁ ।"

ଜଗୁ ଗମ୍ଭୀର ହେଲା । ହଠାତ୍ ତା ମୁଣ୍ଡ ଭିତରେ ସତେ କି ଗୋଟାଏ ତୋଫାନର ସୃଷ୍ଟି ହେଲା । ବାପାଙ୍କ ବିରୁଦ୍ଧରେ ତାର ମନ ବିଦ୍ରୋହୀ ହୋଇଉଠିଲା । କାହିଁକି ? ବେଳ କଣ କେବେ ଭଲ ପଡ଼ିବ ନାହିଁ ବୋଲି ଭାଉଜ ବୋଉ, ଘରର ଲକ୍ଷ୍ମୀ, ସେ ସାରା ଜୀବନ ବାପଘରେ ପଡ଼ିଥିବେ ? ବୈଷ୍ଣବ ବାବୁ ବାରମ୍ବାର ଖବର ପଠାଉଛନ୍ତି; ଅଥଚ ସେ ତାଙ୍କର କଥା ଶୁଣୁ ନାହାନ୍ତି । ବେଣୁକୁ ପାଖରୁ ଅନ୍ତର କରିବାକୁ ବସିଛନ୍ତି । ଯେତିକି ବୁଢ଼ା ହେଉଛନ୍ତି ତାଙ୍କର ବୁଦ୍ଧି ସେତିକି ବାମ ହେଉଛି ।

ଏ ସବୁ ନିଷ୍ଠୁର ନେତାର ଶିକ୍ଷା ! ଡେଣା ଧରୁ ଦାଣ୍ଡକୁ ବାହାର କରି ଦେଲେ କାଲି ଯାଇଁ ଛତରରେ ପଶିବ । ଘରେ ବସି ସାଆନ୍ତାଣୀ ହୋଇ ସୁଖରେ ମୁଠିଏ ଖାଇବାକୁ ମିଳୁଛି ବୋଲି ଗୁଡର ବାହାରୁଛି !

ଜଗୁର ମୁଣ୍ଡ ଗରମ ହୋଇଉଠିଲା । ଇଚ୍ଛା ହେଲା, ସଙ୍ଗେ ସଙ୍ଗେ ଯାଇ ନେତାକୁ ମୁହେଁ ମୁହେଁ ଅସଲ କଥାଟା ପଚାରିଦେବ । ଯଦି ଆବଶ୍ୟକ ପଡେ ଉତ୍ତମ ମଧ୍ୟମ ଦେବାକୁ ଛାଡିବ ନାହିଁ । କିନ୍ତୁ ଉମା ? ଉମାକୁ ସାହାଯ୍ୟ କରିବ ବୋଲି ସେ ପ୍ରତିଜ୍ଞା କରିଛି । ତାକୁ ଯଦି ସେ କଡ଼ା କଥା କହେ, ତେବେ ସେ ଉମା ପ୍ରତି ଆଉ ସଦୟ ହେବ ନାହିଁ । ଜଗୁର ରାଗଟା ଅପେ ଅପେ କମି ଆସିଲା । କିନ୍ତୁ ଯାହା ହେଉ, ପଧାନଙ୍କର ଏପରି ଅବିବେକ କାର୍ଯ୍ୟକୁ ସେ କଦାପି ସଫଳ କରିଦେବ ନାହିଁ ।

କେତେ କଣ ଚିନ୍ତା କରି ବେଣୁର ହାତ ଧରି ସେ ଦାଣ୍ଡର ଘରକୁ ଟାଣି ନେଲା । ତା କାନ ପାଖକୁ ମୁହଁ ନେଇ ଅତି ଧୀରେ ଧୀରେ ପଚାରିଲା, "ସେ ଲୋକ କାହିଁ ?"

ବେଣୁ କିଛି ବୁଝି ପାରିଲା ନାହିଁ । ତାର ଆନନ୍ଦରେ ସହସା ବାଧା ପଡିବାରୁ ସେ ମୁହଁ ମଉଳାଇ କହିଲା, "କୁଆଡ଼େ ଯାଇଛି ମୁଁ ଜାଣେ ନାହିଁ । ସଞ୍ଜବେଳେ ଆସି ମୋତେ ଶାଢି ନେଇଯିବ, କହିଛି ।"

ଜଗୁ ପଚାରିଲା—"ବାପା କଣ କରୁଛନ୍ତି ?"

ବେଣୁ କହିଲା—"ସେ ମଇଦାନ ଯିବାକୁ ଗାମୁଛା ପାଲଟୁଛନ୍ତି ।"

ଜଗୁ—"ବେଣୁ, ମୁଁ ଯାହା କହିବି ତୁ କରିବୁ ?"

ବେଣୁ ଡ଼ରି ଡ଼ରି କହିଲା, "ହଁ—"

"ଆଉ କାହାକୁ କହିବୁ ନାହିଁ ତ ?"

"ନା ।"

ଜଗୁ—"ଆମର ଘରେ ଆଉ କିଏ ଅଛି ?"

ବେଣୁ—"ବଲିଆ ଥିଲା । ସେ ଗୁହାଳକୁ ଗଲାଣି ।"

ଜଗୁ ପୁଣି କଣ ଭାବିଲା । ଚୁପ୍ ଚୁପ୍ କରି କହିଲା—"ତୁ ଦଉଡ ଯା, ଟିକା ମାମୁଙ୍କ ଶାଢିଖଣ୍ଡ ନେଇ ଆସିବୁ ।" ଦାଦାର ଆଦେଶ ପାଇ ବେଣୁ ଚାଲି ପରି ଛୁଟିଗଲା । ଆମର ଘରେ କେହି ନ ଥିଲେ । ସେ ଶାଢି

ଖଣ୍ଡିକୁ ଖୁବ ଖୋଜଲା, ପାଇଲା ନାହିଁ । ପଧାନେ କେଉଁଠି ଲୁଗୁଇ ଦେଇଛନ୍ତି । ତାର ମନେ ପଡିଲା, ଚିଠି ପଢ଼ିଲା ବେଳେ ପଧାନେ ବଟୁଆ ଖୋଲି ବସିଥିଲେ । ହୁଏ ତ ତାର ଭିତରେ ରଖି ଦେଇଥିବେ । ସେ ଘରର ଗୁହାଳଆଡ଼େ ନଜର ପକାଇଲା—ବଟୁଆଟି କାନ୍ଥରେ ଝୁଲୁଛି । ଅଣିବାକୁ ବହୁତ ଚେଷ୍ଟା କଲା । ଯେତେ ଡେଇଁ ଡେଇଁ କଲେ ବି ତାର ହାତ ପାଇଲା ନାହିଁ । ଶେଷକୁ ଗୋଟାଏ ବୁଦ୍ଧି ପାଞ୍ଚିଲା । ଧାନରଖା ବଡ଼ ବେତାଟାକୁ ଢଳେ ଓଗାଡ଼ି ତା ଉପରେ ଗଉଣୀ ଓଲଟାଇ ରଖିଲା । ଗଉଣୀ ଉପରେ ଚଢ଼ି ବଟୁଆଟି କାଢ଼ିଲା । ସତକୁ ସତ ବଟୁଆ ଭିତରେ ଚିଠି ଅଛି । ସେ ଚିଠିଟି ଆଣି ତାର ଦାଦା ହାତରେ ଦେଲା ।

ଜଗୁ ସ୍ନେହରେ ତାକୁ ଆଲିଙ୍ଗନ କଲା । ଚିଠିକୁ ଏ ପାଖ ସେ ପାଖ ଓଲଟ ପାଲଟ କଲା । ପିଲା ଦିନଟା ଅବଧାନଙ୍କୁ ଫାଙ୍କି ମାରି ପାଠ ପଢ଼ି ନାହିଁ । ଆଜ ଯୁବା ବୟସରେ ମନ ମାରି ଚିଠି ଓଲଟ ପାଲଟ କଲେ ପଢ଼ି ପାରୁଛି କେଉଁଠି ? ଏତେ ଦିନକେ ବୁଝିଲା, ଚଗଲାମି କରି ସେ ଅବଧାନକୁ ଠକି ନାହିଁ ଯେ, ନିଜକୁ ଠକିଛି । ଯାହା ହେଉ, ନିଜର ଦୁର୍ବଳତାଟା ସେ ଛୁଆଟାକୁ ଦେଖାନ୍ତା କିପରି ? ସେ ପୁଣି ବେଣୁକୁ କୋଳେଇ କରି କହିଲା, "ଆଚ୍ଛା ବେଣୁ, ତୁ ତ ପାଠ ପଢ଼ିଛୁ ! ଏ ଚିଠିଟା ପଢ଼ିଲୁ ଭଲା, ଦେଖିବା ଅବଧାନେ ତତେ କେମିତି ପାଠ ପଢ଼େଇଛି ।"

ବେଣୁ ଖୁବ ଚଲାଖ ପିଲା । ସେ ଏତେ ଦିନ ପାଠ ପଢ଼ିଛି । ଛାର ଚିଠିଟା ସେ ପଢ଼ି ପାରିବ ନାହିଁ ? ସେ ଚିଠି ଖଣ୍ଡି ଜଗୁ ହାତରୁ ନେଇ ପଢ଼ିବାକୁ ଆରମ୍ଭ କଲା । ଚିଠିଟି ସେତେ ବଡ଼ ନୁହେଁ, ବେଶ୍ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି—

"ମଉସା,

ଆପଣ କଣ ମୋର ଅବସ୍ଥା ଜାଣନ୍ତି ନାହିଁ ? ଘରେ ପିଲାଛୁଆ ଧରି ପାଞ୍ଚ ପ୍ରାଣୀ କୁଟୁମ୍ବ । ଗତବର୍ଷ ବିଲରୁ ମାଣେ ବି ପୋଷେ ଫସଲ ମିଳିଲା ନାହିଁ, ବନ୍ଧନ ବୁଡ଼ିଲା । ଭଦବସ୍ତାର କହକା ଫସଲରେ କଷ୍ଟେମଷ୍ଟେ ଆଜଯାଏ ଚଳାଇ ଅଣିଲି । ନୂଆ ଫସଲ ହେବା ଯାଏ କିପରି ପିଲାଙ୍କ ମୁହଁରେ ପାଣି ଦେଇ ତାଙ୍କୁ ବଞ୍ଚାଇ ରଖିବି, ମୋର ସେହି ଭାବନା । ଗାଁ ଛାଡ଼ି ଅଧେ

ଲୋକ ବୁଅଡ଼େ ପଳେଇଲେଣି । ଯେଉଁମାନେ ମାଟି କାମୁଡ଼ି ରହିଛନ୍ତି, ତାଙ୍କର ଅବସ୍ଥା କହିଲେ ନ ସରେ; ଏଣୁ ତେଣୁ ଖାଇ ପ୍ରାଣ ବଞ୍ଚାଇବାକୁ ବସିଛନ୍ତି; କିନ୍ତୁ ଏଣୁ ତେଣୁ ଖାଇ ଓଲଟା ପେଟ ବଗିଡ଼ି ହଇଜା ହେଉଛି । ହଇଜାରେ ବହୁ ତିନି ଚାରି ଜଣ ମରୁଛନ୍ତି । ଗାଈ ଗୋରୁ ମରି ପଦା ହୋଇଗଲେଣି । ଖାଇବାକୁ ନ ପାଇ, ଲାଜରେ ପଦାକୁ ବାହାରି ନ ପାରି ଘର ଭୁଆସୁଣୀ ସବୁ ଗଳାରେ ଦଉଡ଼ି ଦେଇ ମରୁଛନ୍ତି । ଗାଁଟା ଛନଛନ ହୋଇଗଲାଣି । ଗୃହଅଡ଼ର ଅବସ୍ଥା ତ ଏହାପରି, ଅଧିକା ଗୁଡ଼ାଏ କଣ ଲେଖିବି ।

କେଉଁ କେଉଁ ଗାଁରୁ ଲକାସ୍ତ ପଲ ଆସି ଗାଁରେ ପଶୁଛନ୍ତି । ଟିକିଏ ସୁବିଧା ପାଇଲେ ଯାହା ପାଉଛନ୍ତି, କେଉଁ ଛଟକରେ ନେଇଯାଉଛନ୍ତି । ଘର ଛାଡ଼ି ପଦାକୁ ଗୋଡ଼ କାଢିବାକୁ ଡର ମାଡୁଛି । ନୋହିଲେ କଣ ମୁଁ ଆପଣଙ୍କ ପାଖକୁ ନ ଯାଇ, ଘର କୋଠିଆକୁ ପଠାନ୍ତି କାହିଁକି ? ଦିନରାତି ଡରି ଡରି ବେଳ କାଟୁଛି । ମନରେ ସୁଖ ନାହିଁ ।

ଲେଖିବାକୁ ଲାଜ ମାଡୁଛି; ନ ଲେଖି ରହି ପାରୁ ନାହିଁ । ରୁକ ମୋର ଗୋଟିଏ ବୋଲି ଭଉଣୀ । ତାକୁ ମୁଁ କିପରି ଭଲ ପାଏ ଆପଣ ତ ଜାଣନ୍ତି । ତାର କପାଳ ଫାଟିଲା ଦିନୁ, ତାକୁ ମୁଁ ଆପଣଙ୍କ ଘରେ ପୁରା ମାସେ ରଖାଇ ଦିଏ ନାହିଁ । ସେ ଆପଣଙ୍କର ବୋହୂ । ମୋ ଅପେକ୍ଷା ଆପଣଙ୍କର ଯେ ତା ପ୍ରତି ବେଶି ସ୍ନେହ ଏ କଥା ଯେ କେହି କହିବେ । ସେ ସିନା ଗରିବର ଭଉଣୀ, ବଡ଼ଲୋକର ବୋହୂ ତ । ସେ କାହିଁକି ଏ ଅସମୟରେ ଆମ ସଙ୍ଗେ ପଡ଼ି ପାଞ୍ଚଟାଙ୍କ ସଙ୍ଗେ ହଇରାଣ ହେବ, ତିନି ଓଳିରେ ପେଜ ପାଣି ଟିକେ ପାଇବ ନାହିଁ ? ତାକୁ ଦେଖି ମୋର ବଡ଼ ଦୁଃଖ ହେଉଛି । ଗଉଡ଼ ସାଆନ୍ତ ତ ମୁଣ୍ଡରେ ହାତ ଦେଇ ବସିଛନ୍ତି । ଯେତେ ଖୋସାମତ କଲି, କେହି ଶୁଣିଲେ ନାହିଁ । ନୋହିଲେ ମୁଁ ସଙ୍ଗରେ ନେଇ ତାକୁ ଆପଣଙ୍କ ଛାମୁ କରି ଆସିଥାନ୍ତି । ସେ ବି ବେଣୁକୁ ଦେଖିବାକୁ ଭାରି କାନ୍ଦୁଛି ।

ଅନୁରୋଧ କରୁଛି, ଆପଣ ଦୟା କରି ଯେତେ ଶୀଘ୍ର ପାରନ୍ତି, ସବାରୀ ଗଉଡ଼ ପଠାଇ ତାକୁ ଏଠାରୁ ନେଇଯିବେ । ମୁଁ ଏକୁଟିଆ ଲୋକ ।

ଘର ଛାଡ଼ି ତା ସଙ୍ଗରେ ଯାଇ ପାରିବ ନାହିଁ । ଜଗୁକୁ ପଠାଇବେ ।
× × × । ଇତି ।

ଆପଣଙ୍କର
'ବୈଷ୍ଣବ"

ଜଗୁ ଚିଠିଟିକୁ ମନଦେଇ ଶୁଣିଲା । ଚିଠି ପଢ଼ା ସରିଲାରୁ ସେ ଭାବିଲା ବୈଷ୍ଣବ ଭାଇ ଯାହା ଲେଖିଛନ୍ତି, ସେଥିରେ ଅନ୍ୟାୟ ଅସଙ୍ଗତ କିଛି ନାହିଁ । ଲୋକ ବିପଦରେ ପଡ଼ିଲେ ଅନ୍ୟର ସାହା ଲୋଡେ । ଦେଶଟାକୁ ଗୋଟାଏ ବଡ଼ ବିପଦ ଗ୍ରାସ କରିବାକୁ ଧୋଡିଆସୁଛି । କେତେବେଳେ କି ବିପଦ ଆସି ଅଲକ୍ଷ୍ୟରେ ଚଡ଼କ ପରି ମୁଣ୍ଡରେ ପଡ଼ିବ, ସେ କଥା କେହି କହି ପାରିବେ ନାହିଁ । ଏପରି ଅସମୟରେ ଆତ୍ମୀୟସ୍ୱଜନଙ୍କୁ ଦୂରରେ ଛାଡି ରହିବା ବୁଦ୍ଧିଆର କାମ ନୁହେଁ ।

ଜଗୁ ଦୀର୍ଘଶ୍ୱାସ ଛାଡ଼ି କହିଲା, "ସେ ଚିଠିଖଣ୍ଡି କଣ ?"

ବେଣୁ କହିଲା, "ଜେଜେଙ୍କ ନାମରେ ମାମୁଙ୍କୁ ମୁଁ ଲେଖିଛି ।"

ଜଗୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ତତେ ଚିଠି ଲେଖି ଆସିଲାଣି ? ବାଃ...!"

ବେଣୁ କହିଲା, "ଜେଜେ ଯାହା ଡାକଛନ୍ତି, ମୁଁ ସେହିଆ ଲେଖିଛି । ମୋତେ କହିଛନ୍ତି, ଯାକୁ ଗୋଟାଏ ଲଫାଫାରେ ବନ୍ଦ କରି ସେ ଲୋକ ସଞ୍ଜବେଳେ ଆସିଲେ ତାକୁ ଦେଇଦେବ ।"

"କଣ ଲେଖିଛୁ ପଢ଼ ତ..."

ବେଣୁ ଖୁସି ହୋଇ ଆରମ୍ଭ କଲା—

"ବାବୁ ବୈଷ୍ଣବ,

ତମର ଚିଠି ପାଇ ସବୁ କଥା ବୁଝିଲି । ପୃଥ୍ୱୀ ସାରା ତ ବିପଦ ପଡ଼ିଛି । ଠାକୁରଙ୍କୁ ଡ଼ାକିବା ଛଡା ଏପରି ଅସମୟରେ ଆଉ ଉପାୟ କଣ ଅଛି ? ତମ ଗାଁର ହାଲଚାଲ ଯାହା ଲେଖିଛ, ଆମ ଗାଁର ଅବସ୍ଥା ତାଠୁଁ ବଳି । ଲୋକେ ଘରଦ୍ୱାର ଛାଡି ପଳାଇବାକୁ ବସିଲେଣି । କେତେ ଲୋକ ପିଲାଛୁଆ ଛାଡ଼ି ପଳାଇଗଲେଣି ।

ସେ ଯାହାହେଉ, ବର୍ତ୍ତମାନ ତୋହ୍ମଙ୍କର ଆସିବା କଥା ସ୍ଥଗିତ ରହିଲା । ସମୟ ଖରାପ । ସବାରି-ଗାଡ଼ି ମିଳୁ ନାହାନ୍ତି । ଜଗୁଟା ତ ଚଗଲା ପିଲା,

ସେ ଯିବାକୁ ରାଜି ନୁହେଁ । ଏପରି ଅବସ୍ଥାରେ ବୋହୂ ଆସିବେ କିପରି ? ମୋ ଶଶୁରରେ ତାଙ୍କର ଆସିବା କଥା ବର୍ତ୍ତମାନ ବନ୍ଦ ଥାଉ ।

ବେଣୁକୁ ଦେଖିବାକୁ ଯଦି ସେ ନିତାନ୍ତ ବ୍ୟସ୍ତ ଅଛନ୍ତି, ଦିନେ ଦି ଦିନ ଛାଡ଼ି ଲୋକ ପଠାଇଲେ ମୁଁ ତାକୁ ପଠାଇଦେବି । ସେ ତା'ର ବୋଉ ପାଖରେ କିଛିଦିନ ରହି ମନ ଭୁଲିଗଲେ ପୁଣି ଫେରି ଆସିବ । ଇତି ।

ତମର
ମଉସା ”

ଏତିକି ଶୁଣି ଜଗୁ ମୁଣ୍ଡରେ ହାତ ଦେଇ ବସିଲା । ଓହୋ ! ପଧାନଙ୍କର ଏତେ ସ୍ନେହ ! ଏତେ ଅମଣିଷ ସେ ! କାହା ପାଇଁ ଏ ଘର-ଦ୍ୱାର ? କାହା ପାଇଁ ବା ଏ ସମ୍ପତ୍ତି ? କୁଳର ଉଜ୍ଜ୍ୱଳ ଦୀପ ବେଣୁ ! ଘର ଛାଡ଼ି ପର ଘରକୁ ଯିବ ! ଜଗୁ କି ଏହା ସହିପାରେ ? ଏଥିପାଇଁ ଦାୟୀ କିଏ ।

ଜଗୁ କେତେ କଣ ଚିନ୍ତା କରି ବେଣୁକୁ କୋଳ କରି ତା ମୁହଁରେ ବାରମ୍ବାର ଚୁମା ଦେଲା । ତାର ଛୋଟ ମୁହଁଟିକୁ ଛାତି ଭିତରେ ଜାକି ଧରି କାନ ପାଖରେ କହିଲା, “ମୋତେ ଛାଡ଼ି ତୁ ଯିବୁ କିପରି ବେଣୁ ?”

ବେଣୁ କହିଲା, “ମୋଟେ ଦି ଦିନ ରହି ମୁଁ ପଳାଇ ଆସିବି ଯେ...।”

ଜଗୁ ତାକୁ କୋଳରୁ ଓହ୍ଲାଇ କହିଲା, “ନା ତୋତେ ଯିବାକୁ ହେବ ନାହିଁ । ତୋ ବୋଉ ଏଠିକି ଆସିବ । ମୁଁ ତାର ବନ୍ଦୋବସ୍ତ କରୁଛି, ମୁଁ ଯାହା କହିବି ତୁ କରିବୁ ?”

ବେଣୁ ଖୁସି ହୋଇ ମୁଣ୍ଡ ହଲାଇ ସମ୍ମତି ପ୍ରକାଶ କଲାରୁ ଜଗୁ କହିଲା, “ତୁ ତୋର ଦୁଆତ କଲମ ଆଉ କାଗଜ ନେଇଆ । ମୁଁ ଯାହା କହିବି ତୁ ଲେଖିବୁ—ଏଁ ?”

ବେଣୁ ସଙ୍ଗେ ସଙ୍ଗେ ଧାଇଁ ଯାଇ ଜଗୁର କହିବାମତେ କାଗଜ କଲମ ଓ ଦୁଆତ ଅମାର ଘରୁ ନେଇ ଆସିଲା । ଜାନୁକୁ ଅଭଜ ବସି ଦୁଇ ଅଣ୍ଟୁ ଯୋଡ଼ି ଲେଖିବାକୁ ପ୍ରସ୍ତୁତ ହୋଇଗଲା । ପିଲା ଲୋକ, ସେ ଛନ୍ଦ-କପଟ, ବାଦବିସମ୍ବାଦ, ଛକ ଛଳନା କିଛି ଜାଣେ ନାହିଁ । ଯେ ଯାହା କହିଲା, ସବୁ ଭଲ । ଟିକିଏ ପ୍ରଶଂସା ଶୁଣିଲେ, ଗେଲ୍ହା ପାଇଲେ, ନିଆଁକୁ ଗୋଡ଼ କଟାଇବେ, ସାପ ଲାଙ୍ଗୁଳରେ ହାତ ମାରିବେ । ସେ ତାର ଦାଦା ମୁହଁକୁ ଆଦେଶ ଅପେକ୍ଷାରେ ଗୃହିଁ ରହିଲା ।

ଜଗୁ ଡାକିଲା—

"ବାବୁ ବୈଷ୍ଣବ,

ତମର ଚିଠି ପାଇ ସବୁ କଥା ବୁଝିଲି । ଗୃହଅଡେ ତ ଏଥିପାଇଁ ଦୁର୍ଭିକ୍ଷ ପଡ଼ିଛି, ଠାକୁରଙ୍କ ଛଡ଼ା ଏ ବିପଦରୁ ତାରିବାକୁ ଆଉ କେହି ନାହିଁ । ଆମ ଗାଁର ଅବସ୍ଥା ବଡ଼ ଖରାପ । ସବାରି-ଗଉଡ଼ ମିଳୁ ନାହାନ୍ତି । ତମ ଗାଁରୁ ଧରାଧରି କରି ଗଉଡ଼ ସଞ୍ଜିଲ କରି ଯେମିତି ହେଲେ ଅସନ୍ତା ସଁବାର ଦିନ ବୋହୂଙ୍କୁ ଏଠାକୁ ପଠାଇଦେବ । ବେଣୁ ତା ବୋଉକୁ ଦେଖିବାକୁ ସବୁବେଳେ କାନ୍ଦୁଛି । ବୋହୂଙ୍କୁ ନିଶ୍ଚୟ ପଠାଇବାରେ ହେଳା କରିବ ନାହିଁ । ଏପରି ଅସମୟରେ ଦିନବାର ଧରି ବସିଲେ ଚଳିବ ନାହିଁ । ଏ ତ କିଛି ପ୍ରଥମ ଥର ପୁଆଣିଘର ନୁହେଁ ଯେ, ଘଡି ନକ୍ଷତ୍ର ଧରି କାମ ହେବ ।

ଜରୁରି କାମ ଥିବାରୁ କାଲି ଜଗୁ ତା ମାମୁଁଘରକୁ ଯାଉଛି । କେବେ ଫେରିବ କେଜାଣି, ସେ ବୋହୂଙ୍କୁ ଆଣିବାକୁ ଯାଇ ପାରିବ ନାହିଁ । ବେଣୁ ପିଲାଟା ତାର ଯିବା ନ ଯିବା ସମାନ । ତମେ ନିଜେ ଛାଡ଼ିବାକୁ ଆସିବ । ନାହିଁ ଯଦି ନ ଆସିପାରି,ଥିର ଥର ପରି ଗଉଡ଼ ଭଣ୍ଡାରିଙ୍କ ସଙ୍ଗେ ପଠାଇବ । ମୁଁ ଏଇଠି ବିଦାକି ଦେବି । ବାଟ ଗୃହ କୋଶ । ଘର ଭଣ୍ଡାରି ସଙ୍ଗରେ ଆସିଲେ କିଛି କ୍ଷତି ନାହିଁ । ଇତି ।

ତମର
ମଉସା"

ଚିଠି ଲେଖା ଶେଷ ହେଲାରୁ ବେଣୁ ଖୁସି ହୋଇ କହିଲା, "ବୋଉ ଆସିବାକୁ ଲେଖୁଛ ? କେବେ ଗାଳି ଦେବେ ନାହିଁ ?"

ଜଗୁ ବେଣୁ ହାତରୁ ଆଉ ଚିଠିଖଣ୍ଡି ନେଇ ଚିକି ଚିକି କରି ଚିରିଦେଲା । ବେଣୁକୁ ଆଖି ଦେଖାଇ କହିଲା, "ଚୁପ୍ ଚୁପ୍, କାହାକୁ କିଛି କହ ନା । ତୁ ଏଇ ଚିଠିଖଣ୍ଡ ଲଫାପାରେ ପୂରାଇ ବନ୍ଦ କରି ରଖିଥା, ସେ ଲୋକ ଆସିଲେ ଦେଇ ଦେବୁ । ବାପାଙ୍କୁ ଦେଖାଇବୁ ନାହିଁ । ସେ ଜାଣିବେ କିପରି ? ତୁ ଆଗ ଏ ଚିଠିଖଣ୍ଡ ତାଙ୍କ ବହିଆରେ ପୂରାଇ ବହିଅକୁ ଅଗପରି କାନ୍ଥରେ ଝୁଲାଇ ଦେଇ ଆ । ବାପା ଯେମିତି କିଛି ନ ଜାଣନ୍ତି, ବୁଝିଲୁ ?"

ବେଣୁ ପଚାରିଲା, "ତମେ କଣ ତମ ମାମୁଘରକୁ ଯାଉଛ, ଦାଦା ?"

ଜଗୁ କହିଲା, "ଆଜି ମଙ୍ଗଳବାର, ମୁଁ ଯିବି କାଲି ବୁଧବାର ସକାଳୁ। ବେଶି ଦିନ ରହିବି ନାହିଁ, ହୁଏ ତ ସୋମବାର, ନୋହିଲେ ମଙ୍ଗଳବାର ଦିନ ଫେରିବି। ତୋ ବୋଉ ଆସି ସାରିଥିବ। ଶୁଣୁଛି ପରା, ମୁଁ ଯାହା କହିଲି ଅଗ କରି ଯା।"

ବେଣୁ ସେଠାରୁ ଚାଲିଯିବା ପରେ ଜଗୁ ନେତ୍ରା ପାଖକୁ ଯାଇ କହିଲା—"ମୁଁ କାଲି ମାମୁଘରକୁ ଯାଉଛି, ନେତ୍ର। ମାମୁ ତାହାଙ୍କୁ ଖବର ପଠାଇଛନ୍ତି।" ଟିକିଏ ରହି ପୁଣି କହିଲା, "ଗରିବ ଜମାଟିକୁ ଭୁଲିଯିବୁ ନାହିଁ।"

ନେତ୍ରା ମୁରୁକି ହସି କହିଲା, "ସେ କଥା ଆଉ କହୁଛ କାହିଁକି ମୁଁ! ଜମା କଣ ଏକା ତୋର, ମୋର କିଛି ନୁହେଁ ? ତୁ ତାକୁ ଟିକେ କହି ଯାଉଥା......।"

## —ନଅ—

ଜମିଦାର ପଶୁପତି ବାବୁଙ୍କ କଚେରି ଘର।

ନରପୁର ପ୍ରଗଣାର ନଗରିହ ନଗରଗ୍ରସ୍ତ ପ୍ରଜାଗୁଡ଼ିକ ଭୋକିଲା ପେଟରେ କାଁଅ ସମ୍ଭୁଦ୍ର ପରି ଜ୍ୟେଷ୍ଠମାସର ଉଦୁଉଦିଆ ଦି ପହରର ଝାଳ ବୁହା ଝୋଲମରା ଖରାସମୁଦ୍ର ପାରି ହୋଇ କେତେ ଆଶା ଭରସା କରି ଅଧମଲା ପିଲାଛୁଆଙ୍କୁ ଆଶା ମୁଖରେ ବସାଇ ଦେଇ ସାତ କୋଶ ବାଟ ଧାଇଁ ଆସିଛନ୍ତି। ଖରା ତାଉ କମି ଆସିଲାଣି, ହେଲେ ତତଲା ଲୁହିର ଉତ୍କ୍ଷିପ୍ତ ଉତ୍ତାପରେ ଗୁଳୁଗୁଳରେ ଦେହ ଜଳିଯାଉଛି। ଆଗରେ ଜମିଦାରଙ୍କର ସାତଶେଣିଆ ଉଚ୍ଚ ମହଣଡ଼ମରା କଚେରୀ ଘର। ହତା ଭିତରେ ଅମ୍ବ ନଡ଼ିଆ ଜାମୁଗଛଗୁଡ଼ିକ ଘରକୁ ଘେରି ରହିଛନ୍ତି। ପୁଷ୍କରେ ଉଚ୍ଚ ପଥର ପାଚେରିର ଭିତର ପାଖରେ ଗଛ ଦେହରୁ ଖଣ୍ଡେ ଖଣ୍ଡେ ଡାଳ ପାଚେରୀ ଏ ପାଖକୁ ଝୁଙ୍କି ପଡ଼ିଛନ୍ତି। ପାଖରେ ଆଉ ଗଛ ବୃକ୍ଷ ନାହିଁ। ତାକେ ବାଟ ଛଡ଼ା ସ୍ୱାହାଙ୍କ ଗାଁର ବସ୍ତି। ଦଉଡ ଦଉଡ଼

ଆସି କ୍ଳାନ୍ତ ହୋଇ ପଡ଼ିଛନ୍ତି । କଚେରୀ ପାଖ ଛାଡ଼ି ଛଇ ଆସ୍ଥା ଲେଉଟି ଗାଁ ଭିତରକୁ ଯିବାକୁ ଆଉ ମନ ଡାକୁ ନାହିଁ; ଗୋଡ଼ ଚଳୁ ନାହିଁ ।

ମଧୁ ସ୍ୱାଇଁ ଦୀର୍ଘଶ୍ୱାସ ଛାଡ଼ି କହିଲା, "ଆସ, ଏହି ଗଛ ଛାଇରେ ବସି ଦମ୍ ନେବା ।" ଗୋପୀ ମହାରଣା କହିଲା, "ଶୋଷରେ ହଂସା ଉଡ଼ୁଛି। ପାଣି ମୁନ୍ଦାଏ ନ ପିଇଲେ ପ୍ରାଣ ରହିବ ନାହିଁ । ଚାଲ ସଦର ଦରଜାକୁ ଯାଇ ପାଣି ପିଇବାକୁ ମାଗିବା ।"

ଭଗୀ ଜେନା—"କାହାରି ତ ସ୍ୱର ଶବ୍ଦ ନାହିଁ ।"

ବୁରୁନ୍ଦ କେଉଟ କହିଲା—"ଅରେ ଖରା ବେଳ, କିଏ କେଉଁଠି ପଡ଼ି ଦମ୍ ନେଉଥିବେ । ଡାକିଲେ ବଳେ ଶୁଣିବେ ନାହିଁ ।"

ଶେଷକୁ ସମସ୍ତେ ଉଠି ପାଚେରୀ କଡ଼େ କଡ଼େ ସଦର ଦରଜା ଆଡ଼େ ଚାଲିଲେ । ହତାଟା ତ କମ୍ ନୁହେଁ ? ଏ ପାଖରୁ ଚାହିଁଲେ ଅର ପାଖରେ କେଉଁଠି ସରିଛି ଅଖି ପାଏ ନାହିଁ । ରଜାଘର; ଉଚ୍ଚ ଯେତେ ମୋଟା ସେତେ । କିଏ କଳନା କରିବ ?

ସଦର ଦରଜା ବନ୍ଦ; ଭିତରୁ ଖିଲ୍ ପଡ଼ିଛି । ପାଣି ମୁନ୍ଦାଏ ପାଇଁ ନରପୁରର ଗାଁ ଲୋକେ ଯେତେ ରଡ଼ିଲେ, କେହି ଜବାବ ଦେଲେ ନାହିଁ । ହତା ମଝିରେ ସଦମ୍ଭରେ ଠିଆ ହୋଇ ରହିଥିବା କଚେରୀ ଘରକୁ ଅଣା ମୁଖରେ ଚାହିଁବାକୁ ସାର ହେଲା । ଫାଟକ ପାଖରୁ ଛୋଟ ପକ୍କା ରାସ୍ତାଟି ସିଧା ହୋଇ କଚେରୀ ପିଣ୍ଡା ତଳକୁ ଲମ୍ବିଯାଇଛି । ଦୁଇ ପାଖରେ ଦୁଇ ଧାଡ଼ି ଛୋଟ ଛୋଟ ନଡ଼ିଆଗଛ ଝୋଲା ମାରିଲା ପରି ତାଳପତ୍ର ନୁଆଁଇ ରହିଛନ୍ତି । ଆଉ କାହାରି ଦେଖା ଦର୍ଶନ ନାହିଁ । ଜାଗାଟା ବଡ଼ ନିସ୍ତବ୍ଧିଆ ଲାଗୁଛି । ନରପୁରର ଗରିବ ପ୍ରଜାଏ ପାଣି ମୁନ୍ଦାଏ ନ ପାଇ ସେହି ଫାଟକ ପାଖରେ ଛାଇ ଜାଗା ଦେଖି ଗାମୁଛା ବିଛାଇ ପଡ଼ିଗଲେ ।

ଏ ଜାଗାଟା ଥିଲା କଣ, ଆଜି ହୋଇଛି କଣ ! ପଟ୍ଟନାୟକେ ଲୋକଙ୍କୁ ଅନାଥ କରି ମାନ ମହତ୍ତ୍ୱ ରଖିବାକୁ, ବଳରେ ଛଳରେ ଚଉଦ ପୁରୁଷର ଜନ୍ମମାଟି ଛାଡ଼ି ଲୋକଙ୍କୁ କନ୍ଦାଇ କନ୍ଦାଇ ଗଡ଼ଜାତରେ ପଶିଲେ । ତାଙ୍କ ସଙ୍ଗେ ସଙ୍ଗେ ଲକ୍ଷ୍ମୀ ଦେଶ ଛାଡ଼ିଗଲେ । ସ୍ୱର୍ଣ୍ଣମୟୀ ଦେଶର ମାଟି ଉପରେ ଲଜ୍ଜାତାପ୍ତ ପ୍ରତିବେଶୀ ଆସନ ମାଡ଼ି

ବସିଲା । ଲୋକଙ୍କର ସବୁ ଉପର ଅପଉ, ଅଳ ଅଳଅଳ ସରିଲା । ଲୋକଙ୍କର ସୁଖଦୁଃଖ ଆଉ କିଏ ବୁଝିବ ? ପଟ୍ଟନାୟକଙ୍କ ବିନା କିଏ ନିଜ ଆଖିରୁ ଲୁହ ଗଡ଼ାଇ ନିଜ ହାତରେ ପ୍ରଜାପୁଅର ଆଖିରୁ ଲୁହ ପୋଛିବ ରେ ? ପଟ୍ଟନାୟକେ ନା ପଶୁପତି ଘୋଷେ ? କିଏ ଖାଇଲା ଥାଳିର ଭାତ ଆଣି ଭୋକିଲା ପ୍ରଜାର ପତରରେ ଅଜାଡ଼ିବ ? ପଟ୍ଟନାୟକେ ନା ଘୋଷେ ? ଏବା ନାହିଁ ଦ ଖଣ୍ଡ କାହାର ? ଗରିବ ପ୍ରଜା ପାଇଁ କାହାର ମନ ଟାଣିବ, କାହାର ରକ୍ତ ଧାର୍ଣ୍ଣି ହେବ ? ପୁଅ ଯେ ପଟ୍ଟନାୟକେ । ମାଇବେ ସେହି, ତାରିବେ ସେହି; ଭଲକୁ ସେହି, ମନ୍ଦକୁ ସେହି । ଧଳା ଛଇ ତ ଦହର ଗୋଟାଏ ରୋଗ । କେହି ନ ଚାହିଁ, ସେ ଆପେ ଆପେ ଫୁଟି ବାହାରିବ । ଅବହେଳା କଲେ ଦେହଯାକ ମାଡ଼ିଯିବ ଯେ ।

ଏହି ସେ ପଟ୍ଟନାୟକ ବଂଶର ଉଆସ । ଓଡ଼ିଆ ପୁଅର ରକ୍ତ ଦେଇ ଗଢ଼ା !! ଖରିଦିନେ ଏଠି କଳଛନ୍ଦ ବସୁଥିଲା । ଭୋକା ଶୋଷୀର ପାଟିରେ ଅଧାର ଦେବାକୁ ଖଞ୍ଜା ଥିଲା । ନାଁ ଶୁଣି କେତେ ରାଜ୍ୟରୁ ଅତିଥି ଅଭ୍ୟାଗତ, ଜମାଇତ ଦଳ ଆସି ପହଞ୍ଚୁଥିଲେ । ଆଜି ସେ ସବୁ ଲୁଚିଛି, ପ୍ରଜାଏ ସୁଦ୍ଧା ବସିବାକୁ ଖଣ୍ଡେ ଆସନ ପାଉ ନାହାନ୍ତି । ହେଲା କଣ ? ସବୁ ତ ସେହିପରି ଅଛି । ତେବେ ଅଭାବ କେଉଁ କଥାର ? ସମସ୍ତେ ଜାଣନ୍ତି, ଅଭାବଟା କଣ; କିନ୍ତୁ ପୂରଣ କରିବାର ଶକ୍ତି କାହାର ନାହିଁ ।

୧୮୦୩ ସାଲ ଡିସେମ୍ବର ମାସ ୨୩ ତାରିଖରେ ମରହଟ୍ଟାମାନେ ତୃତୀୟ ମରହଟ୍ଟା ସମରରେ ଇଂରେଜଙ୍କଠାରୁ ପରାସ୍ତ ହେଲେ । ଗୋଟିଏ ନୂତନ ସରକାର ଓଡ଼ିଆର ରାଜଗାଦି ମାଡ଼ି ବସିଲା । ଶାସନର ପରିବର୍ତ୍ତନ, ଏତେବଡ଼ ଗୋଟାଏ ଦେଶରେ କେତେ ବିଶୃଙ୍ଖଳା ଘଟିବାର କଥା । ଏଣେ ଭିତରେ ଭିତରେ ବିଦ୍ରୋହର ସୂତ୍ରପାତ ହେଉଛି । ନୂଆ ସରକାର ଉପରେ ଲୋକଙ୍କର ଷୋଳପଣ ବିଶ୍ୱାସ ଆସି ନାହିଁ । ରାଜକରର କୌଣସି ଧରାବନ୍ଧା ନିୟମ ନାହିଁ । ଜମିବାଡ଼ିର ସ୍ୱତ୍ୱ, ଜମିଜମାର ତାଲିକା କଣ ଅଛି, କପରି ସୂତ୍ରରେ କର ଧାର୍ଯ୍ୟ ହେବ, ସେ ସମ୍ବନ୍ଧରେ ନୂତନ ସରକାରଙ୍କର କିଛି ଜ୍ଞାନ ନାହିଁ । ସବୁ ନୂଆ କରି କରିବାକୁ ହେବ; ଲୋକଙ୍କର ବିଶ୍ୱାସଭାଜନ ହେବାକୁ ପଡ଼ିବ ।

ରାଜତ୍ୱର ପ୍ରଥମ କେତେ ବର୍ଷ ସରକାରଙ୍କୁ ବଡ଼ ହଇରାଣ ହେବାକୁ ପଡ଼ିଲା । ବିଦ୍ରୋହ ଦମନ ସଙ୍ଗେ ସଙ୍ଗେ ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ କେତେ ଆଶାର ବାଣୀ ଶୁଣାଇବାକୁ ହେଲା । ଜମି ଜମିଦାରୀର କର ଧାର୍ଯ୍ୟ କରିବା ପାଇଁ ବର୍ଷକୁ ବର୍ଷ ବନ୍ଦୋବସ୍ତ ପରେ ବନ୍ଦୋବସ୍ତ କରାଗଲା । ଏଣେ କଚେରୀ ଅଦାଲତ ସ୍ଥାପନ । ଏତେ କାମ ଚଳାଇବାକୁ ଶିକ୍ଷିତ ଲୋକ ଦରକାର । ଏ ଦେଶରେ ତ ଇଂରେଜୀ ଜାଣିବା ଲୋକ କେହି ନାହାନ୍ତି । ବାଧ୍ୟ ହୋଇ ବଙ୍ଗଦେଶରୁ ଲୋକ ଆଣିବାକୁ ହେଲା । ବର୍ଷକୁ ବର୍ଷ ଜମିଦାରୀର କର ବଢ଼ିବାକୁ ଲାଗିଲା । ଲୋକଙ୍କର ଆପତ୍ତି ଶୁଣୁଛି କିଏ, ବୁଝୁଛି କିଏ ? ବୁଝାଇ କହିବାକୁ ଯେଉଁମାନେ ନିଯୁକ୍ତ ହୋଇଛନ୍ତି, ସେମାନେ ନିଜର ସ୍ୱାର୍ଥ ସାଧନ ପାଇଁ କଳାକୁ ଧଳା ବୁଝାଇଲେ, ଖଳକୁ ଭଲ କରି କହିଲେ । ମରହଟ୍ଟା ଅତ୍ୟାଚାରିତ ଓଡ଼ିଆ ଆଶା କରିଥିଲା ତାର ଦୁଃଖ ଯିବ ; କିନ୍ତୁ ଫଳ ହେଲା ଓଲଟା । ତା ମନର ବେଦନା, ପ୍ରାଣର ଭାଷା କେହି ବୁଝି ପାରିଲେ ନାହିଁ । ଦୁଃଖ ପରେ ଦୁଃଖ ମାଡ଼ିଆସିଲା । ଆଖିରୁ ଲୁହ ଝରନ୍ତା କଣ, ଲହୁ ଝରିଲା ।

୧୮୧୪—୧୮୧୫ର ଅନାବୃଷ୍ଟି । ଫଳରେ ଓଡ଼ିଆ ଜମିଦାରମାନେ ରାଜସ୍ୱ ଦେଇ ପାରିଲେ ନାହିଁ । ସମସ୍ତେ ମିଶି ସରକାରଙ୍କଠାରେ ଆବେଦନ କଲେ । ଅବେଦନପତ୍ର ଲିଖିତ ହେଲା । ଶହ ଶହ ଓଡ଼ିଆ ସ୍ୱତ୍ୱାଧିକାରୀ ତହିଁରେ ସ୍ୱାକ୍ଷର କରି ଲୋକଦ୍ୱାରା ପତ୍ର କଲିକତା ସରକାରଙ୍କ ନିକଟକୁ ପଠାଇଲେ । ଅବେଦନପତ୍ର ଦାଖଲ କରାଗଲା । ଲୋକେ ବଡ଼ ଆଶା କରି ଫଳାଫଳ ପାଇଁ ଦେଶରେ ଚାହିଁ ରହିଛନ୍ତି, ଇଂରେଜ ସରକାର ନିଶ୍ଚୟ ସୁବିଚାର କରିବେ ।

କିନ୍ତୁ ହେଲା କଣ ? ଠନ୍‌ବ ସାହେବଙ୍କୁ ପଚାରିଲେ ସେ କହି ପାରିବେ, ହେଲା କଣ । ଖଣ୍ଡିଏ ଅବେଦନପତ୍ର ! ଓଡ଼ିଆର ଜୀବନ-ମରଣ ସମସ୍ୟା ! ଗଲା କୁଆଡ଼େ ? ତାର ଖବର କେହି ଜାଣିଲେ ନାହିଁ । କି ରହସ୍ୟ ଅଛି ତହିଁରେ ? ମହାତ୍ମା ଠନ୍‌ବ ସେ ରହସ୍ୟ ଭେଦ କରି ଦୁଃଖରେ ଓଡ଼ିଆ ପାଇଁ ଦଓଟି ଦୀର୍ଘଶ୍ୱାସ ପକାଇଛନ୍ତି । ଟିକିଏ ଭୁଲ ପାଇଁ ଏ ଜାତି ଯେ ଚିରଦିନ କାନ୍ଦିବ, ସେ କଥା ସେ ସହଜ ଭାଷାରେ ସ୍ପଷ୍ଟଭାବରେ କହି—

ଯାଇଛନ୍ତି । ଅହା ! ଓଡ଼ିଆର ଜୀବନ, ସେହି ଆବେଦନପତ୍ର ଖଣ୍ଡି ଗୃପ। ପଡ଼ିଗଲା । କିଏ ଗୃପି ରଖିଲା ? ଜାହିଁ କି ? କିନ୍ତୁ ଯେଉଁମାନେ ତାକୁ ଗୃପି ରଖିଥିଲେ, ସେମାନେ ଜୟଯୁକ୍ତ ହେଲେ, ଉଦ୍ଦେଶ୍ୟ ସଫଳ ହେଲା !

ଓଡ଼ିଆ ଆକାଶକୁ ଗୃହିଁ ରହିଥିଲା ସତୃଷ୍ଣ ନୟନରେ । ଆଶା କରିଥିଲା, ତାର ଭାଗ୍ୟକୁ ଅମୃତ ବର୍ଷିବ; କିନ୍ତୁ ବର୍ଷିଲା ବଜ୍ର ! ସେ ଚମକି ଗୃହିଁଲା— ସବୁ ତାର ସରିଛି । ତାର ସ୍ୱାଉନ୍ତ୍ର ଅପହରଣ କରିଥିଲା, ବହୁ ଶତାବ୍ଦୀ ପୂର୍ବେ, ଜଣେ ପ୍ରଚ୍ଛଦବେଶୀ ସନ୍ନ୍ୟାସୀ ନିମାଇଁ—ଖଣ୍ଡାଧାରରେ ନୁହେଁ, ଖୋଳକରତାଳ କୃଷ୍ଣମନ୍ତ୍ରରେ । ସେ ତାହା ଜାଣି ଜାଣି ସହିଲା । ଫଳରେ ସେ ତାର ସ୍ୱାଧୀନତା ସମ୍ପଦ ହଜାଇ ମୁସଲମାନ-ମରହଟ୍ଟାଙ୍କର ଅତ୍ୟାଗ୍ରର ସହିଲା । ବନ୍ତ ଅନାଚ୍ଛାରେ;କିନ୍ତୁ ଭ୍ରାତ ଥାଇ ତାର କେହି ଛଡ଼ାଇ ନେଇ ନ ଥିଲେ । ମନେ କରିଥିଲା, ସୁଖରେ ରହିବ । ଅହା ! ବଡ଼ ଦୁର୍ଦ୍ଦଶା ! ଗ୍ଵଜତ୍ଵର କୋଡିଏଟା ବର୍ଷ ନ ଯାଉଣୁ ସେ ତାର ଖାଇବା ଗଣ୍ଡାକ ହଗ୍ଵଇବସିଲା ।

୧୮୧୭ ସାଲ । ଗ୍ଵଜସ୍ୱ ବାକିରେ ତାର ବଡ଼ ଛୋଟ ଅସଂଖ୍ୟ ଜମିଦାରୀ ମାହାଲ କଲିକତା ସହରରେ ନିଲାମ ହୋଇଗଲା । କେହି ଜାଣିଲେ ନାହିଁ, କେହି ଶୁଣିଲେ ନାହିଁ । ଏତେ ଶୀଘ୍ର ଯେ ଏ ଜାତିର ସର୍ବନାଶ ହେବାକୁ ଯାଉଛି, ସେ ଖବର କେହି ପାଇଲେ ନାହିଁ । ରେଳ ଗ୍ଵସ୍ତା, ପୋଷ୍ଟ ଟେଲିଗ୍ରାମର ଭଲ ବନ୍ଦୋବସ୍ତ ନ ଥିଲା । ଖବର ବା ଦିଅନ୍ତା କିଏ ? ଫଳରେ କଲିକତାର ଧନୀ ଜିର୍ଦ୍ଧନ ଯେ ପାରିଲା, ଶାଗ ମାଛ ଦରରେ ମହା ମହା ଜମିଦାରୀମାନ ନିଲାମ ଧରିଲେ । ଆହୁରି ଗୋଟିଏ କଥା । ନିଲାମ ଧରିଥିବା ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ଫୋର୍ଟ ଉଇଲିୟମରେ ନିଯୁକ୍ତ ଥିବା କମ୍ପାନୀଙ୍କର ବଙ୍ଗାଳି କର୍ମଗ୍ଵରୀ କିମ୍ବା ସେମାନଙ୍କର ଭାଇ ବିରାଦର ! ଅତଏବ ଜାହିଁକି ଯେ ଓଡ଼ିଆ ଜମିଦାରମାନଙ୍କର ଆବେଦନପତ୍ର ଚପି ରହିଲା, କିଏ ଗୃପି ରଖିଲା, ଏ କଥା ଯେ କେହି ସହଜରେ ଅନୁମାନ କରିପାରିବେ । କିଏ ସିନା ଖଣ୍ଡା ଦାଢ଼ରେ ଦେଶ ଜୟ କରି ପ୍ରଭୁ ହୁଏ, ବଳେତା ହୁଏ, ବଙ୍ଗାଳି କିରାଣୀ କଲମ ମୁନରେ ଓଡ଼ିଶା ଜୟ କଲା । ଓଡ଼ିଶାର ପ୍ରଭୁ, ଓଡ଼ିଶାର ଭାଗ୍ୟ-

ବିଧାତା ହୋଇ ବସିଲେ ବଙ୍ଗାଳି । ତିନିଶବର୍ଷ ପୂର୍ବେ ଚୈତନ୍ୟ ଯେଉଁ ମୁଲ୍ଲୁକୁ ଗଢ଼ିଯାଇଥିଲେ ବଙ୍ଗାଳି କିରାଣୀ ତାର ଉପରେ ଅଟ୍ଟାଳିକା ଗଢ଼ିଗଲେ—ଓଡ଼ିଆ ଗଡ଼ମଲେ ।

ସେତିକରେ ଓଡ଼ିଆର ଦୁର୍ଦ୍ଦଶା ଶେଷ ହେଲା ନାହିଁ । ଶହେ ପୁରୁଷର ସମ୍ପତ୍ତି ଛାଡ଼ି, ସହଜବିଶ୍ୱାସୀ, ସରଳପ୍ରାଣ, ନିରୀହ, ପ୍ରଭୁଭକ୍ତ ଓଡ଼ିଆ ପୁରୁଣା ସ୍ୱତ୍ୱାଧିକାରୀମାନେ ବିନା ଦୋଷ,ବିନା କାରଣରେ ବାଟର ଭିକାରୀ ହୋଇ, କାଙ୍ଗାଳ ହୋଇ ମନକୁ ମନ ପଚାରିବାକୁ ଲାଗିଲେ, "ରଜା କିଏ ଇଂରେଜ ନା ବଙ୍ଗାଳି ?"

କାହିଁକି ଏ ପ୍ରଶ୍ନ ?

ଭିତରେ ବାହାରେ ଯେଉଁଠି ଦେଖ, ସେଠି ବଙ୍ଗାଳି—ସରକାରଙ୍କର ଦକ୍ଷିଣ ହସ୍ତ । ଅଦାଲତ କଲେକ୍ଟରର କିରାଣୀଗିରିଠୁଁ ଆରମ୍ଭ କରି ବଡ଼ ବଡ଼ ହାକିମହୁକୁମାଙ୍କ ଯାଏ, ଯୁଆଡ଼େ ଗୃହଁ ଦେଖିବ ବଙ୍ଗାଳି । ବିଷକୁମ୍ଭମ୍ ପୟୋମୁଖମ୍ । ଉପାୟ କଣ ? ଜମିଦାରୀଗୁଡ଼ା ତ ଆଗରୁ ହାତକୁ ଆସିଥିଲା, ସରକାରୀ ଚାକିରିଗୁଡାକ ବି ତ ହାତକୁ ଆସିଲା; ଇଂରେଜୀ-ଶିକ୍ଷିତ ଓଡ଼ିଆଙ୍କର ଅଭାବରୁ ଆଇନ୍ ବ୍ୟବସାୟଟା ଏକଚାଟିଆ ହୋଇଗଲା ତାଙ୍କର ହାତରେ । ଆଉ ଭାବନା କଣ ? ଏଥର କୂଟନୀତି ପ୍ରୟୋଗ କରି ରାଜ୍ୟବିସ୍ତାରର ଚେଷ୍ଟା କରାଯାଉ । ଓଡ଼ିଆ ମେଣ୍ଢା, ଓଡ଼ିଆ ପଶୁ; ପାଞ୍ଚଣ ଉଠାଇଲେ ଲାଙ୍ଗୁଳ ଯାକିବେ । ଏଥର କଲମ-ବଲ୍ଲମ ପ୍ରୟୋଗ କଲେ ମୁସଲମାନବହୁଳ ମେଲେରିଆ-ପ୍ରପୀଡ଼ିତ ବଙ୍ଗଦେଶ ଛାଡ଼ି ମେଷ ପଲ ଭିତରେ ସହଜରେ ଉପନିବେଶ ସ୍ଥାପନ କରାଯାଇ ପାରିବ । ମେଦିନୀପୁର , ମାନଭୂମ, ବାଙ୍କୁଡ଼ା ତ ହସ୍ତଗତ ହେଲା, ଆଉ ବା କେଇଟା ? ଦେଖାଯାଉ ।

ମହାତ୍ମା ଟେନ୍‌ବ ! ତମର ଆତ୍ମାର ସଦ୍‌ଗତି ହେଉ । ଏ ନିର୍ଯ୍ୟାତିତ ଓଡ଼ିଆ ଜାତି ପାଇଁ ତମର ଛାତି କଟେଇ ହୋଇଥିଲା । ଲେଖି ଲେଖି ତମର କଲମ ଥରି ଉଠିଥିଲା । ନିଜେ କାନ୍ଦିଥିଲ । ଓଡ଼ିଆକୁ ଚିରଦିନ କନ୍ଦାଇବାକୁ ସତ୍ୟ ପ୍ରକାଶ କରିଗଲ । କିନ୍ତୁ ଅନ୍ଧ ଓଡ଼ିଆ, ସହଜପ୍ରାଣ, ସରଳବିଶ୍ୱାସୀ, ମୂର୍ଖ, ଚୈତନ୍ୟ-ଭକ୍ତ ଓଡ଼ିଆର ଆଖି ଫିଟିଲା ନାହିଁ । କେବେ ଫିଟିବ କେଜାଣି ?

ଓଡ଼ିଆର ପୁରୁଣା ସ୍ୱତ୍ୱାଧିକାରୀମାନେ ନିଃସ୍ୱ କାଙ୍ଗାଳ ହୋଇ ଗଡ଼ଜାତରେ ଆଶ୍ରା ନେଇଛନ୍ତି । ଯେଉଁମାନେ ରହିଲେ ସେମାନଙ୍କର ଅବସ୍ଥା କହିଲେ ନ ସରେ । ଗୃହଆଡେ଼ ବଙ୍ଗାଳି ଜମିଦାର ଘେରି ରହିଛନ୍ତି । ବିନା କାରଣରେ ଛୋଟ ଛୋଟ କଥା ନେଇ ଝଗଡ଼ା ଆରମ୍ଭ କରୁଛନ୍ତି । ଅଦାଲତର ସାହାଯ୍ୟ ନେଇଲେ ସଲାମି, ଲାଞ୍ଚ, ହାତଗୁଞ୍ଜା ଦେଇ ଖର୍ଚାନ୍ତ ହେବା ଛଡ଼ା ଫଳ କିଛି ହେଉ ନାହିଁ । ଗୃହଆଡ଼େ ଯେ 'ଦାଦା ମଶାୟ' ପୂରି ରହିଛନ୍ତି ! ପଦେ କଥା କହିବାକୁ ବସିଲେ ଫିସ୍ ନେଉଛି । ହା, ଭଗବାନ୍ ! ଏତେ ଦେଇ ଦେଇ ବି କିଛି ଉପକାର ହେଉନି ! ହାକିମମାନଙ୍କର ତ ସେତେବେଳେ ଏହି ଦାସ ଜାତି ଉପରେ ପ୍ରଗାଢ଼ ବିଶ୍ୱାସ ଥିଲା । ଏମାନେ ଯାହା ବୁଝାଉଥିଲେ, ସେମାନେ ଅତି ସହଜରେ ତାହା ବିଶ୍ୱାସ କରୁଥିଲେ । ଗରିବ ଓଡ଼ିଆର ପିଠିରେ ପଡ଼ିବାକୁ କେହି ନାହିଁ । ଏତେ କଳ-ଗୋଳ କରିବା ଅପେକ୍ଷା ନିଜର ମହତ ଜଗି ଜମିଦାରି ବିକି କରି ଅନ୍ୟତ୍ର ବସବାସ କଲେ ବରଂ ଭଲ । ଟନ୍‌ବୀ ସାହେବ କହିଛନ୍ତି, "ଏହିପରି ଭାବରେ ମଧ୍ୟ ତିନି ଚାରି ଅନେକ ଛୋଟ ଛୋଟ ଜମିଦାରୀ ଓଡ଼ିଆ ସ୍ୱତ୍ୱାଧିକାରୀମାନେ ହସ୍ତାନ୍ତରିତ କଲେ ବଙ୍ଗାଳି ଜମିଦାରଙ୍କ ହାତକୁ ।" ଏହିପରି ଅଳ୍ପରେ ପଡ଼ି ବହାଙ୍ଗ ମାହାଳର ବୃଦ୍ଧ ଜମିଦାର ଧର୍ମପ୍ରାଣ, ପଟ୍ଟନାୟକ ବାଧ୍ୟ ହୋଇ ଯଥାଲବ୍ଧ ଗତି ଅବଲମ୍ବନ କରି ତତ୍‌କାଳୀନ ଅଦାଲତର ଟ ୨୦୯ ବେତନର ଜଣେ ପେସକାର ଶ୍ରୀଯୁକ୍ତ ଉମାପତି ଘୋଷ ମହାଶୟଙ୍କୁ ହଜାରେ ଟଙ୍କାରେ ବିକ୍ରୟ କରି ଗଡ଼ଜାତରେ ପଶିଲେ । ଏହିପରି କେତେ ବହାଙ୍ଗ କେତେ ଘର, କେତେ ଘରଡ଼ିହ ଯେ ଘୋଷ, ବୋସ, ମୁଖର୍ଜୀଙ୍କ ହାତକୁ ଯାଇଛି, ଭଲ କରି ଗବେଷଣା କଲେ, ତଦନ୍ତ କଲେ ସବୁ ଜଣା ପଡ଼ିବ । ଟ୨୦୯ କିରାଣୀର ଦଶହଜାର ଟଙ୍କାର ଜମିଦାରି ! କାହୁଁ ଅଇଲା ରେ ? ଚୁପ୍ ଚୁପ୍ ! ସେ ପ୍ରଶ୍ନ ଉଠାଇବାରେ ଅଧିକାର ବିଶେଷତଃ ପେସକାରଙ୍କ ଉପରେ କାହାର ନାହିଁ ! ତାଙ୍କ ସ୍ତ୍ରୀଙ୍କର ଯୌତୁକ ଟଙ୍କା ଯେ ନୁହେଁ, ତା'ର କି ପ୍ରମାଣ ଅଛି ?

ଯାହାହେଉ, ବଙ୍ଗାଳି ତ ଓଡ଼ିଆର ଜମିଦାର ହେଲେ; କିନ୍ତୁ ପ୍ରଜାଏ ଯେ ଜମିଦାରମାନଙ୍କର ଦେଖା ଦର୍ଶନ ପାଇଲେ ନାହିଁ । ଜମିଦାରଙ୍କ ନା

ଶୁଣିବା ଛଡ଼ା ପ୍ରଜାଏ ତାଙ୍କ ବିଷୟରେ କିଛି ଜାଣନ୍ତି ନାହିଁ । ହାକିମ୍ବରେ ବାପ ବୋଲି ହାରଗୁହାରି କରିବେ କାହା ଆଗରେ ? ଦୁଃଖ ଜଣାଇବାକୁ ତ ଲୋକେ ଆଜି କଲିକତା ଧାଇଁଯାଇ ପାରିବେ ନାହିଁ ! ଗଲେ ବା ଚିହ୍ନୁଚି କିଏ ! ତା'ପରେ ଓଡ଼ିଆ ତ ପଶୁ । ପଶୁର ପୁଣି ଦୁଃଖ କଣ ?

ଏହାଙ୍କ ମାହାଲର ବିଗତ ଜମିଦାର ଶ୍ରୀଯୁକ୍ତ ଉମାପତି ଘୋଷଙ୍କର ମୃତ୍ୟୁ ପରେ ତାଙ୍କର ଏକମାତ୍ର ସୁଯୋଗ୍ୟ ପୁଅ ଶ୍ରୀଯୁକ୍ତ ପଶୁପତି ଘୋଷ ମହାଶୟ ଜମିଦାରିର ଅଧିକାରୀ ହେଲେ । ଏହି ସୁଦୀର୍ଘ ୩୦ ବର୍ଷ ଭିତରେ କଲିକତା ସହରସ୍ଥ ତ୍ରିତଳପ୍ରାସାଦ ଛାଡ଼ି ଥରେ ହେଲେ କେବେ ନିଜର ଜମିଦାରିକୁ ଆସି ପ୍ରଦର୍ଶନ କରିବାର ସୁଯୋଗ କି ଦୁର୍ଯୋଗ ତାଙ୍କ ଭାଗ୍ୟରେ ଘଟିଲା ନାହିଁ ! ରାସ୍ତା ଘାଟର ସୁବିଧା ନାହିଁ । ଶ୍ରୀଅଙ୍ଗକୁ କ୍ଳେଶ ଦେଇ ଲକ୍ଷ୍ମୀଙ୍କର ବରପୁତ୍ର ସେ, ଏତେ ଶ୍ରମସ୍ୱୀକାର କରନ୍ତେ କାହିଁକି ? ଟଙ୍କା ଦେଇ ଜମିଦାରି କଣା ହୋଇଛି, ଆଦେଶମତେ ନାଏବ ବାବୁ ଟଙ୍କା ଯୋଗାଇ ପାରିଲେ ହେଲା !

ନାଏବ ବାବୁ ବି, ତ ସ୍ୱଜାତୀୟ । ବଡ଼ ସୁଦକ୍ଷ ଲୋକ ! ଜମିଦାରଙ୍କର ଯେତେବେଳେ ଯାହା ଦରକାର, ମାରିପିଟି ପ୍ରଜାଙ୍କଠାରୁ ଆଦାୟ କରି ସେ ତାହା ଅକ୍ଳେଶରେ ଯୋଗାଇ ପାରନ୍ତି । ତେଣୁ ସେ ଜମିଦାରଙ୍କର ଗେହ୍ଲା ପୁଅ, ଉତ୍ତରୋତ୍ତର ଉନ୍ନତି ଛଡ଼ା ତାଙ୍କର ଅବନତି ହେବାର କଥା ନୁହେ । ଜମିଦାରଙ୍କୁ ପଗୁରେ କିଏ ? ନାଏବ ବାବୁଙ୍କ ନାମ ଶୁଣିଲେ ଗର୍ଭିଣୀ ଗାଈ ବାଛି ଛାଡ଼େ । ଆଜି କାହା କଥା ପଗୁରୁଛି କିଏ ? ପଚି କି ମିଛି କେଜାଣି, ଲୋକେ ସଭମାନଙ୍କରେ ପୋକ ପକାନ୍ତି । ଏତେ ବଡ଼ ପ୍ରତାପୀ ଲୋକ ନାମରେ କେତେ କୁତ୍ସା ରଟାନ୍ତି । ସେ କୁଆଡ଼େ ଗୃହିଗୃହି କରି କୁଳଙ୍କ ଆଡ଼େ ନିଜର କରି ଖଣ୍ଡିଏ ଦମିଦାରି କଣିଲେଣି ! ଭଲ କଥା ! ତା ତ ତାଙ୍କ ପାରିଲାପଣ ! ଜମିଦାରଙ୍କର ତ କିଛି କ୍ଷତି ହେଉ ନାହିଁ । ସେ ଯେତେବେଳେ ଯାହା ଖୋଜୁଛନ୍ତି ପାଉଛନ୍ତି ।

ସେଦିନ ଖବର ଆସିଲା, ଦେଶର ଶୋଚନୀୟ ଅବସ୍ଥା । ଢାକା, ଚବିଶ ପ୍ରଗଣା ଜିଲ୍ଲାମାନଙ୍କରେ ଭୀଷଣ ଦୁର୍ଭିକ୍ଷର ସମ୍ଭାବନା । ଦେଶର ଗଣ୍ୟମାନ୍ୟ ଲୋକଙ୍କ ଉପରେ ମହା ଦାୟିତ୍ୱର ବୋଝ ଲଦା ହୋଇଛି ।

ଠାଏ ଠାଏ ଅନ୍ନଛତ୍ର ଖୋଲି ଲୋକଙ୍କର ପ୍ରାଣରକ୍ଷା କରିବାକୁ ଦେଶ-ଲୋକେ ବଦ୍ଧପରିକର । ପ୍ରଚୁର ଧନର ପ୍ରୟୋଜନ । ଯେତେ ପାରୁଛ ଶୀଘ୍ର ପଠାଅ ।"

ଆଦେଶ ପାଇ ନାଏବ ମହାଶୟ ଧାନ ଗୃଡ଼ଲର ଅମାରମାନ ଖୋଲି ବିକି ଆରମ୍ଭ କରିଦେଲେ । ଦଶକୋଶରୁ ଲୋକ ଆସି ଟଙ୍କା ସୁନା ଦେଇ ଧାନ କିଣିନେଲେ । ଗୃହିଣୀ ଦିନରେ ସବୁ ସାଫ୍—କେବଳ ଗୃହର ଚାକରଙ୍କର ଖାଇ ପିଇ ଚଳିବାମାନଅ ଯାହା କିଛୁ ବାକୀ ଅଛି । ଟଙ୍କା ନେଇ ସଙ୍ଗରେ ଲୋକବାକ ଧରି ନାଏବ ବାବୁ ଗୃହଦିନ ହେବ କଲିକତା ଯାତ୍ରା କଲେଣି; ସେ ଖବର ତ ଆଜି ନରପୁରର ଲୋକେ ଜାଣନ୍ତି ନାହିଁ ! ଜାଣିଥିଲେ ଏ କରାଳ ଖରାରେ ପଥଶ୍ରମ କରି ଉପାସ ଭୋକରେ ଅଶାମୁଖରେ ଧାଇଁ ଆସିଥାନ୍ତେ କାହିଁକି ?

ଗରିବ ଓଡ଼ିଆ ପ୍ରଜାଙ୍କର ରକ୍ତ ନେଇ ତାଙ୍କ ଦେଶ ଲୋକଙ୍କୁ ପିଆଇ ଜମିଦାର୍‌ମାନେ ଦେଶପ୍ରୀତିର ପରିଚୟ ଦେଲେ । ପତ୍ରପତ୍ରିକାରେ ବଡ଼ ବଡ଼ ଅକ୍ଷରରେ ନାମ ଛପା ହୋଇ ମହାଦାନୀ, ମହା ଧାର୍ମିକ ବୋଲି, କେତେ ପ୍ରଶଂସା ଗାନ କରାଗଲା । ଇତିହାସ ଏହାର ମୂକ ସାକ୍ଷୀ । ମୂକ ଓଡ଼ିଆ, ନିର୍ଜୀବ ଓଡ଼ିଆର ପାଟି ଫିଟିଲା ନାହିଁ । ପାଟି ଫିଟାଇବାର ଅଧିକାର ତାର ଅଛିଲା କାହିଁ ?

ଛଇ ଲେଉଟ ବେଳ । ଜମିଦାରଙ୍କର କଚେରିର ସଦର ଫାଟକ ଫିଟିଲା । ନରପୁରର କାଙ୍ଗାଳ ପ୍ରଜାଗୁଡ଼କ ଉଠି ଠିଆହେଲେ । ଦେଖିଲେ, ଆଗରେ ଗ୍ରାମ ଗୁଡ଼ୁଛ ଗୁମାସ୍ତା ଠିଆ ହୋଇଛନ୍ତି । ସମସ୍ତେ ବେକରେ ଗାମୁଛା ପକାଇ ଲମ୍ବ ଲମ୍ବ ହୋଇ ତାଙ୍କର ଗୋଡ଼ତଳେ ପଡ଼ ଦୁଃଖ ବଖାଣିଲେ ।

ଗୁଡ଼ତେ ସବୁ ଶୁଣି ଶେଷକୁ ଗଳା ଖଙ୍କାରି କହିଲେ, "ତମେ ସବୁ କ'ଣ ଆଜଯାଏ ଶୋଇଥିଲ କି ରେ ! ଘରେ କିଆଁ ଲାଗି ଅଧେ ଜଳି, କିଆଁ ଦଳକା ଛାଣି ଉପରେ ପଡ଼ଲାରୁ କିଦ ଭାଙ୍ଗିଲା ! କି ହେ, ଧାନଗୃଡ଼ଲ କାହିଁ ?"

"ଆଜ୍ଞା ସାନ୍ତେ, ଏତେବେଳକୁ କିରାଶ କଲେ ଅମେ ଗରିବ ପ୍ରଜାଏ ଲୁସିଯିବୁ... ।"

"ଆରେ ତମେ ଭସି ଯାଅ କ ବୁଡ ଯ ଆ, ଅମାରରେ ମୋଟେ ଧାନ ନାହିଁ । ବଙ୍ଗଦେଶରେ ଦୁର୍ଭିକ୍ଷ ପଡ଼ିଛୁ ବୋଲି ଜମିଦାରେ ଚଠି ଦେଲେ--- ଲୋକଙ୍କୁ ସାହାଯ୍ୟ ଦେବାକୁ ଟଙ୍କା ଗୃଉଳ ଯାହା ପାଉଛ ଜଲଦ ନେଇ ଆସ । ନାଏବ ବାବୁ ଚଠି ପାଇ ଯାହା ଯେଉଁଠି ଧାନ ଥିଲା, ସବୁ ବକ୍ରିବାକି କରଦେଲେ । ଦଶଖଣ୍ଡ ବଳଦ ଗାଡ଼ ବୋଝେଇ କର ଗୃଉଳ ନେଇ, ପଇସା କଉଡ଼ ଯାହା ପାଇଲେ ସବୁ ସଙ୍ଗରେ ନେଇ ନାଏବ ବଙ୍ଗଦେଶ ବାହାରଗଲେଣି । ଧାନ ବକି ହେଲାବେଳେ ତମେ ଆସିଲ ନାହିଁ, ଅବକା ଆସିଲେ କ'ଣ ହେବ ?"

"ସାନ୍ତେ, ଆମେ ସେ ଖବର ପାଇନାହିଁ ।"

"ସେଟା ତ କଛୁ ଅମର ଦୋଷ ନୁହେଁ—।"

"ଯାହାହେଉ, ବର୍ତ୍ତିମାନ ନାସ୍ତି କଲେ ପ୍ରାଣ ରହବ ନାହିଁ··· ।"

"ସେଥିକ କଏ କ'ଣ କରବ ?"

"ଉପାୟ କଣ କରବା ?"

"ଅରେ ଆଛ ଲୋକ ତ ଏମାନେ ! କହୋ, ମୁଁ କଣ କହବ ? ନଜ କଥା ନଜେ ବୁଝ, ମତେ କାହିଁକ ବ୍ୟସ୍ତ କରୁଛ ? ଏତକ କହ ସାଉତେ କୋଠା ଧର ଆଗକୁ ଗୃଲଲେ । ଭୁଲରେ ହେଲେ ସେ ଥରେ ପଛକୁ ଫେର ଗୃହିଁଲେ ନାହିଁ ।

ଅହା ! ନରପୁରର ଗରବ ପ୍ରଜାଗୁଡକ—ସତେ କ ମୁଣ୍ଡରେ ତାଙ୍କର ବଜ୍ର ପଡ଼ଲା । କାହାର ପାଟିରେ ଭଷା ନାହିଁ । ହତାଶ ହୋଇ ପରସ୍ପରର ମୁହଁକୁ ଗୃହିଁବା ଛଡ଼ା ଅଉ ତାଙ୍କର ଉପାୟ କ'ଣ ଅଛ ?

## —ଦଶ—

ଜଗୁର ମାମୁଘରକୁ ଅସିବା ଆଜକ ହେଲା ଛଅ ଦନ । ସକାଳୁ ଉଠି ଘରକୁ ଫେରବ ବୋଲି ସଜ ହେଉଥିଲା । ମାମୁ ମନା କର ଗଲେ । ଆଜ ସିଁବାର; ଫେରବ ବୋଲି ବେଣୁ ଆଗରେ କହ ଅସିଥିଲା । ନ ଗଲେ ଚଳବ ନାହିଁ—ସେ ତେଣେ ଗୃହିଁ ବସିଥିବ । ଅସତ୍ୟ ହେବା କଥା ।

ମାମୁଙ୍କ ମନାକୁ ମାନୁଛୁ କଏ ? କିନ୍ତୁ ନିଜେ ମାଈଁ ଆସି ତାର ଓଠ ଧରି କହିଗଲେ କେତେ ଅଧୀର ହୋଇ, "ଛି ଧନଟା, ଅଛ ଘରକୁ ଫେରିବା ଯୋଗାଏ ନାହିଁ ବାପ ! ମନ ହନ୍ତସନ୍ତ ହେବ। ବାଟରେ ଗାଁ ଗାଁରେ ହଇଜା ପଶିଛି। ଛାଡିବାକୁ ତ ମନ ହେଉନି। ନିତାନ୍ତ ଯିବୁ ଯଦି କାଲି ସକାଳୁ ଯିବୁ... ।"

ମାଈଁଙ୍କର ଆଗ୍ରହ ଦେଖି ଅନୁରୋଧଟା ବାଧ୍ୟ ହୋଇ ରଖିବାକୁ ହେଲା। କଥା ଭାଙ୍ଗି ଦେଇ ସେ ଗୃହଯାତ୍ରା କମିତ ? ବିବେକର ଭରୁ-ଷରେ କୌଣସିମତେ ରହିଗଲା ସିନା, ମନ ଜମାରୁ ତାକୁ ନ ଥାଏ। ବେଳ ଯେପରି ପଡ଼ିଛି, ଦିନ ଗୋଟିଏ ଗଲେ ଯାହା, ଯୁଗଟିଏ କଟିଲେ ସେଇଆ।

ଜଗୁ ମନରେ ଜମା ସୁଖ ନାହିଁ। ସେ ସିନା ଏଣେ ମାମୁଘରେ ନିଶ୍ଚିନ୍ତ ହୋଇ ବସିଲା, ତେଣେ ଗାଁରେ ଯେ କଣ ହେଉଛି କେଜାଣି ? ଆଖି ଆଗରେ ଦେଖି ଯାଇଛି ଯାହା, ଭୁଲିବ କିପରି ? ଭିମାକୁ ଆସିଲା ବେଳେ ସେ ଦେଖା ଦେଇ ଆସି ନାହିଁ। ତା କଥା ମାନି ସେ ତାଙ୍କ ଘରକୁ ଯିବ କି ନାହିଁ କେଜାଣି ? ନେଟାକୁ ସେ କହି ଆସିଛି ଏତେ କରି— ତା ଅନୁରୋଧ ବୋଧହୁଏ ସେ ଭାଙ୍ଗିବ ନାହିଁ। ନୂଆବୋଉ ଆସି ପହ-ଞ୍ଚିଲେ ବାପା କଣ କରିବେ ? ହୁଏ ତ ତା ଉପରେ ରାଗିବେ। କେଣ୍ଟକୁ ଧମକ୍ ଚମକ୍ ଦେଲେ ସେ ଡରି ହରି ସବୁକଥା କହି ଦେବ। ବାପା ନିଶ୍ଚୟ ତା ଉପରେ ବଡ଼ ଖପା ହେବେ। ଆଉ, ଯାହା କହିବାର ସେ ପଛରେ କହୁଥାନ୍ତୁ। ଗଲେ ଦେଖାଯିବ—କିନ୍ତୁ ଯେତେ ଭାବିଲେ ଜଗୁର ମନ ସ୍ଥିର ହେଲା ନାହିଁ। ଉପରେ ଉପରେ ଉଡିବାକୁ ଲାଗିଲା। ମାମୁଘର ଅବସ୍ଥା ବି ସେତେ ଭଲ ନୁହେଁ। ମାଈଁଙ୍କର ଦୂରଦର୍ଶିତା ଓ ବ୍ୟୟସଙ୍କୋଚ କରିବାର ଦକ୍ଷତା ପାଇଁ ତାଙ୍କର ଛୋଟ କୁଟୁମ୍ବଟି କୌଣସିମତେ ସୁଖେ ଦୁଃଖେ ଆଜଯାଏ ଚଳି ଆସିଲେଣି। ଟାଣି ଓଟାରି ଆଉ ବା ମାସେ ଦି ମାସ ଚଳିଯିବ। ତେଣିକି କରିବେ କଣ ?

ମାଈଁ ଆସି ଜଗୁର ଓଠ ଧରି କହିଲେ, "ଦେଖିବାକୁ, ଶଙ୍ଖୋଳିବାକୁ ତ ମାମୁ ମାଈଁଙ୍କୁ ଆସିଥିଲୁ ବାପ ! ଅବସ୍ଥା ଭଲ କରି ଦେଖିଗଲୁ।

ଏ ବିପଦ ବେଳେ ଯଦି ସାହାଯ୍ୟ କର,ତେବେ ପିଲାଏ ବଞ୍ଚିବେ,ନୋହିଲେ ନାହିଁ ।"

ଜଗୁ ଅନ୍ୟମନସ୍କ ହୋଇ କହିଲା, "ମୁଁ ବାପାଙ୍କୁ ସବୁ କହିବି ।"

ମାଈଁ ମୁହଁ ଶୁଖାଇ କହିଲେ, "ବାପା ତ ତମର ଯେମିତି ମଣିଷ—ତୋ ବୋଉ ମଲା ଦିନୁ ଆମର ମଲା ହଜିଲା ଖୋଜନ୍ତି ନାହିଁ । ତାଙ୍କୁ କହିଲେ ସେ ପାହା ଶୁଣିବେଟି ! ବୋପା ତୋର ମହା ସୁଢ଼...ତୁ ଯଦି ମନ କରିବୁ ତେବେ ହେବ । ସ୍ନେହ ଥିଲାରୁ ମାମୁମାଈଁଙ୍କୁ ଦେଖିବାକୁ ସାତ କୋଶବାଟ ଧାଇଁ ଆଇଲୁ ତ... ।"

ଜଗୁ କହିଲା, "ଆଛା ହଉ... ।"

ମାଈଁ କହିବାକୁ ଲାଗିଲେ, "ଆମର ବେଶି କିଛି ଲୋଡ଼ା ନାହିଁରେ, ଅଣ୍ଟା କଅଣ୍ଟା ହେଲେ ମୋଟାସୋଟା କରି ଧାନ ତିନି ଗୃଉ ଭରଣ । ଏ ବର୍ଷର ଫସଲଟା ଉଠିଗଲେ, ଧାନ ମୁଁ ଭରଣା କରି ଦେବି ।"

ଜଗୁ କହିଲା, "ହଉ—"

ମାଈଁ ସନ୍ତୁଷ୍ଟ ହୋଇ ଚାଲିଗଲେ । ଜଗୁ ଭାବିବାକୁ ଲାଗିଲା—ଉପକାରୀ ମାମୁମାଈଁଙ୍କୁ ନିଶ୍ଚୟ ସେ ଧାନ ଦେବ । ବାପା ଯଦି ନାହିଁ କରନ୍ତି, ସେ ଚୋରି କରିବ ପଛେ ନିଶ୍ଚୟ ଧାନ ପଠାଇବ । ବାପା ତ ଗାଳି ଦେବେ ଜାଣିଲେ । ଦେଉନ୍ତୁ । ଗାଳି ଖାଇ ଜଣଙ୍କର ଉପକାର କରିବାଟା ଭଲ ।

ତାର ଆଉ ଗୋଟିଏ କଥା ମନେ ପଡ଼ିଗଲା—ତିନିଦିନ ତଳର କଥା, ତା ଆଖି ଆଗର କଥା । ଉଦୁଉଦିଆ ଦିପହରର ବେଳ । ଜଗୁ ତାର ମାମୁ ପାଖରେ ଦାଣ୍ଡ ପିଣ୍ଡାରେ ବସି ଦୁଃଖସୁଖ ହେଉଥିଲା । ଗାଁ ଭିତରୁ ହଇଜା-ପ୍ରପୀଡ଼ିତ ରୋଗୀର ଆର୍ତ୍ତିକ୍ରନ୍ଦନ, କେତେବେଳେ ବା ଶୋକସନ୍ତପ୍ତ କୌଣସି ପରିବାରର ଅଧୀର କରୁଣ ଚିତ୍କାର ଭାସି ଆସି ତାଙ୍କ କାନରେ ବାଜି ଦେହ ରୋମାଞ୍ଚିତ କରୁଥିଲା । ଏହିପରି ସମୟରେ ରୁକ୍ଷକେଶ, ମଳିନ-ବସ୍ତ୍ର-ପରିହିତ କଙ୍କାଳସାର ଗୋଟିଏ ଯୁବକ ଆସି ସେମାନଙ୍କ ଆଗରେ ଠିଆ ହେଲା । ତାକୁ ଦେଖି ଦେଖି ଜଗୁର ମାମୁ ଜନାର୍ଦ୍ଦନଙ୍କ ମୁହଁ ବିକୃତ ହୋଇଗଲା । ବିରକ୍ତିରେ ନାକ ଟେକି ସେ କହି ଉଠିଲେ, "ପୁଣି କୁଆଡ଼େ ଆସିଲୁ ଶନି ଭୂ?"

ଆଗନ୍ତୁକ ଗୋଟିଏ ପ୍ରଣାମ କରି ମୁନ୍ସିଙ୍କ ଆଗରେ ଠିଆ ହୋଇ ହାତ ମଳିବାକୁ ଲଗିଲା । ତାର ମଳିନ ଆଖିର କରୁଣ ଦୃଷ୍ଟି ଦେଖିଲେ ସାଧାରଣ ମଣିଷର ହୃଦୟ ତରଳିଯିବାର କଥା; କିନ୍ତୁ ନବଘନ ତହିଁରେ ତିଳେମାତ୍ର ବିଚଳିତ ହେଲେ ନାହିଁ । ତାକୁ ନୀରବ ଦେଖି ପୁଣି କହିଲେ, "ଲମ୍ବ ପଣତ ସବୁଠିକ ପାଏ ବାବୁ; କିନ୍ତୁ ମୋର ଗୃହଅନ୍ତୁ କିଅଣ । ନିଜ ରକ୍ଷଣ ଅସମ୍ଭବ । କିପରି ଏ ଘୋର ବିପଦରୁ ଉଦ୍ଧାରିବା ସେଥିକି ବାଟ ଦିଶୁ ନାହିଁ । ତମେ ଯଦି ବାରମ୍ବାର ଆସି ଏପରି ବିରକ୍ତ କର, ଆମେ ଆଉ ଚଳି ପାରିବୁ ନାହିଁ ।"

ଶତ୍ରୁଘ୍ନ କହିଲା, "ମୋର ଆଉ କିଏ ଅଛି ମଉସା, ତମେ ଯଦି ସହାୟ ନ ହୁଅ—।" ନବଘନ କହିଲେ, "ସାହାଯ୍ୟର ଗୋଟାଏ ସୀମା ଅଛି ତ ପୁଣି । ପେଟ ପୋଷିବାର ଉପାୟ ଯଦି ନିଜେ ନ କର, ଏପରି ଅସମୟରେ ଆଉ କିଏ ତମ ପାଇଁ କରିବ ? ଖୋର୍ଦ୍ଧା, ଭୁବନେଶ୍ୱରରେ ବଡ଼ ରାସ୍ତା ତିଆରି ହେଉଛି, କଟକରେ ନାଳ ଖୋଳା ହେଉଛି, ଶହ ଶହ ଲୋକ କାମ କରି ପେଟ ପୋଷୁଛନ୍ତି, ତମେ ବି ଯାଇ ସେମାନଙ୍କ ସଙ୍ଗେ କାମ କରିପାର ।"

ଶତ୍ରୁଘ୍ନ କହିଲା, "ଏତେ ବାଟ ଯିବାର ମୋର ଶକ୍ତି କାହିଁ ?"

ନବଘନ କହିଲେ, "ସେଥିକି ତ ମୁଁ ଦାୟୀ ନୁହେଁ ବାବୁ ! ଏହି କଥା ତ ମୁଁ ତମକୁ ପହିଲୁ କହି ଆସୁଛି । ବନ୍ଧୁ ବୋଲି ସିନା ବନ୍ଧୁ ଦଶପାଞ୍ଚ ଦିନ ପୋଷେ । ନିଜ ଉପରେ ଆସି ପଡ଼ିଲେ କେଉଁ ବନ୍ଧୁ କାହାର ପିଠିରେ ପଡ଼ି ସାହା ହେବ, କାହାର ମଲା ବେଳକୁ ଆସି କିଏ ପାଟିରେ ପାଣି ଦେବ ? ମୁଁ ତ ନାଗର; ଆ–ରେ ଜଗୁ…।"

ଏତିକି କହି ନବଘନ ଘରକୁ ଉଠିଗଲେ । ଜଗୁ ମଧ ତାଙ୍କ ପଛେ ପଛେ ଗଲା । ନବଘନ ନିଜ ହାତରେ ଦାଣ୍ଡ କବାଟ ବନ୍ଦ କରି କିଳିଣି କିଳିଲେ । ଜଗୁ ପଚାରିଲା, "ସେ କିଏ ମାମୁ ?" ଉତ୍ତର ପାଇଲା, "ମୋ ଶାଳୀର ପୁଅ । ଅଳସୁଆଙ୍କ ସରଦାର ।" ଜଗୁର ଆଉ କିଛି ପଚାରିବାକୁ ଇଚ୍ଛା ହେଲା ନାହିଁ । ସଞ୍ଜ ଆଗରୁ ଦାଣ୍ଡକବାଟ ଖୋଲି ଦେଖିଲା, ଶତ୍ରୁଘ୍ନ ଗୁଞ୍ଜିଗଲାଣି କେତେବେଳୁ ।

ଆଜି ସେହି ଅନାଥ ଶତ୍ରୁଘ୍ନର କଥା ମନେ ପଡ଼ିଲା । ମାମୁଙ୍କୁ କଣ ନିଷ୍ଠୁର କହିବାକୁ ହେବ ! ନବଘନଙ୍କର ଅବସ୍ଥାପନ୍ନ ଯେ କେହି କଣ ନିଜର ନିକଟ ଅସ୍ପୃଶ୍ୟକୁ ଏହିପରି କଠୋର ନାସ୍ତି ବାକ୍ୟ ଶୁଣାଇ ଦୁଆରୁ ଫେରାଇ ଦେଇଥାନ୍ତା ଉପାସରେ ! ତେବେ ଆଜି ବନ୍ଧୁସ୍ୱଜନ ଭିତରେ ମମତା ରହିଲା କେଉଁଠି ? ବନ୍ଧୁ ସ୍ୱଜନଙ୍କଠାରୁ ବିପଦବେଳେ କି ଉପକାର ଆଶା କରି ପାରେ ମଣିଷ ! ନବଘନଙ୍କର ଜଗୁ ପ୍ରତି ଏତେ ଅନୁରାଗ କାହିଁକି ? ଜଗୁ ଆଜି ଶତ୍ରୁଘ୍ନ ଭିତରେ ସମ୍ପର୍କର ପ୍ରଭେଦ କଣ ? ବୁଝିବାକୁ ଗଲେ ଦୁହେଁ ସମାନ । ତେବେ ?

ଜଗୁ ଭାବିବାକୁ ଲାଗିଲା—ତେବେ ପ୍ରତ୍ୟୁପକାରର ଆଶାଟା ଜଗୁଠାରେ ଯେତେ ପ୍ରବଳ ଶତ୍ରୁଘ୍ନଠାରେ ସେତିକିର ନିତାନ୍ତ ଅଭାବ । କାରଣ ସେ ଦରିଦ୍ର, ସେ ନିଃସ୍ୱ, ନିରନ୍ନ, ବାଟର ଭିକାରି କାଙ୍ଗାଳ । ଜଗୁ ଧନୀ ବାପର ପୁଅ । ପ୍ରତ୍ୟୁପକାରର ଆଶା, ସ୍ୱାର୍ଥବୁଦ୍ଧି, ସ୍ନେହର ପରିପୁଷ୍ଟକ । ଜଗୁ ଯଦି ଶତ୍ରୁଘ୍ନ ହୋଇଥାନ୍ତା, ତାର ଅବସ୍ଥା, ତାର ଆଦର ଅବିକଳ ଶତ୍ରୁଘ୍ନ ପରି ହୋଇଥାନ୍ତା ପରା ! ଆଜି ସେ ମଧ୍ୟ ସେହି ଶତ୍ରୁଘ୍ନ ପରି ନିର୍ମମ ବାଣୀ ଶୁଣି ଦାଣ୍ଡଦୁଆର ମୁହଁରୁ ହତାଶ ହୋଇ ଛିଡ଼ିଲା ପେଟରେ ଫେରିଥାନ୍ତା । ତେବେ ଆଉ ଡେରି କାହିଁକି ? ସେ କାହିଁକି କାହାର ନିରର୍ଥକ ସ୍ୱାର୍ଥଭରା ଅନୁରୋଧ ମାନି ଅଟକି ରହିବ ! ସେ ଯିବ, ଯଦି ପାରେ ମାମୁଙ୍କ ପାଇଁ ଧାନ ପଠାଇବ ପଛେ ।

ତାର ଚିନ୍ତାଧାରାରେ ବାଧା ଦେବାକୁ ନବଘନ ଆଗକୁ ଆସି କହିଲେ, "ଜଗେ, ତୁ ଏତେବେଳଯାଏ ଗାଧୋଇ ନାହୁଁ ? ଶୀଘ୍ର ଖିଆପିଆ ସାରି, ଗୋଟାଏ ଠାକୁ ଯିବା ପରା; ଖରା ମାଡ଼ି ଅସୁଛି ।"

ଜଗୁ କହିଲା—ମୋର ମନ ଲାଗୁ ନାହିଁ, ମୁଁ ଘରକୁ ଯିବି ।

ନବଘନ—"ପାଗଳ ଟୁଆ କରେ ! ଏ ନିଘଟ ଖରାରେ ଯିବୁ କୁଆଡ଼େ ? କାଲି ବଡ଼ଭୋରରୁ ଉଠି ଚାଲିଯିବୁ ଯେ ଖରା ତାତି ବାଧିବ ନାହିଁ । ଗାଧୁଆ ବେଳସରିକି ଘରେ ପହଞ୍ଚିଯିବୁ । ଆଜି ଚାଲ ଯିବା, ଛିଲା ସାହେବ ଗୁହାରି ଶୁଣିବାକୁ ଆସୁଛନ୍ତି, ତାଙ୍କୁ ଆମର ଦୁଃଖ କହି ଆସିବା ।"

ଇସୁ ଶେଷକୁ ମଙ୍ଗିଲା । ଧୂ–ପୁର ମାମୁଘରକୁ ବାଟ ଦୁଇ କୋଶ । ସୁବିଧା ମିଳଛ, ପାଞ୍ଚଲୋକ ଗୁହାରି କରିବାକୁ ଯାଉଛନ୍ତି, ସେ ବ ତାର ଦୁଃଖ ଜଣାଇବାକୁ ଯେଉଁଟିଏ ବୁଲି ଅସିଲେ ଷତି କଣ ? ମା ଠାକୁରାଣୀ ତାଙ୍କ କଣ୍ଠରେ ବସେ କଲେ ସେ ଅବଶ୍ୟ ହେଲେ ଗରିବ ପ୍ରଜାଙ୍କ ଗୁହାରି ଶୁଣି ଦୁଇ ଆଖିରେ ସେମାନଙ୍କର ଦୁଃଖ ଦେଖି, ଦୁଃଖା–ମଣା କରି ପ୍ରତିକାର କରିବାର କିଛି ଗୋଟାଏ ଉପାୟ ପାଇବେ । ତାଙ୍କ କଲମ ମୁନରେ ଗୋଟାଏ ଗାର ପଡିଲେ ଲୋକଙ୍କର ଦଶା ଫେରିବ । ଦୁର୍ଭିକ୍ଷ ମାଡ ଅସୁଛ ଶୁଣିଲେ ସରକାର ଧାନ ଚାଉଳ ଅଣିବାର ବ୍ୟବସ୍ଥା କରିବେ ।

ଧୂ...ପୁର ଗାଁର ବଡ଼ ଖୋଲା ମଇଦାନ ଉପରେ ତମ୍ବୁ ପଡ଼ିଛି । ତମ୍ବୁ ଆଗରେ ଦୁଇଟି ଅରାମ ଚଉକିରେ ବସିଛନ୍ତି—ଜିଲ୍ଲା ମାଜିଷ୍ଟ୍ରେଟ ମହା–ମାନ୍ୟ ଶ୍ରୀଯୁକ୍ତ ବାରଲୋ ସାହେବ ଓ ଖୋର୍ଦ୍ଧାର ସବ୍‌ଡ଼ିଭିଜନାଲ ଅଫିସର ଶ୍ରୀଯୁକ୍ତ ବାହୁନ ସାହେବ । ନିକଟରେ ଆଉ ମଧ୍ୟ ଅନେକ ଦେଶୀ ବିଦେଶୀ ହାକିମ ହୁକୁମା ଠିଆ ହୋଇଛନ୍ତି । କେତେ ଜଣ ପୋଲିସ କର୍ମଚାରୀ ଶାନ୍ତି–ରକ୍ଷା କରିବାକୁ ଆଗରେ ଟହଲ ମାରୁଛନ୍ତି । ସାହେବମାନଙ୍କର ବସିଥିବା ଜାଗାରୁ ପ୍ରାୟ ତିରିଶ ହାତ ଅନ୍ତରରେ ଅର୍ଦ୍ଧବୃତ୍ତାକାରପରିମିତ ଜାଗା ଛାଡ଼ି ମଇଦାନରେ ଲୋକ ଭିଡ଼ ଯେ କହିଲେ ନ ସରେ । ଲୋକଙ୍କର କୋଳାହଳରେ ସ୍ଥାନଟି ମୁଖରିତ ହେଉଛି । ସମସ୍ତେ କିଛି ନା କିଛି କହି–ବାକୁ ଚେଷ୍ଟା କରୁଛନ୍ତି; କିନ୍ତୁ ଏ ବିପୁଳ ଜନତା ଓ ମହାକୋଳାହଳ ଭିତରେ ସମସ୍ତଙ୍କର ଚୀତ୍କାର ବୁଡ଼ି ଯାଇଛି ।

ଜଗୁ ଓ ନବଘନ ଦୁହେଁ ଜନତା ଭେଦ କରି ଅତି କଷ୍ଟରେ ଅଗକୁ ଆସିଲେ—ଦୟାବନ୍ତ ରାଜପୁରୁଷମାନଙ୍କର ଦର୍ଶନ ଲାଳସାରେ । ଦେଶର ହର୍ତ୍ତାକର୍ତ୍ତା ବିଧାତା ସେମାନେ, ଯାହା କହିବେ ସେହିଅ ହେବ । ଲୋକଙ୍କର ଦୁଃଖ ଦେଖି ପ୍ରତିକାର କରିବାକୁ ଶ୍ରୀଅଙ୍ଗକୁ କଷ୍ଟ ଦେଇ ଧାଇଁ ଆସିଛନ୍ତି, ଆଜି କିଛି ହେଉ ନ ହେଉ ଦର୍ଶନଟା କରି ନ ଗଲେ ଅଶା କରି ଅସିବା ସାର୍ଥକ ହେବ ନାହିଁ ।

ସିପାହୀମାନଙ୍କର ହସ୍ତୋତ୍ତୋଳନ ଦେଖି ଲୋକେ କୋଳାହଳ ବନ୍ଦ କଲେ । ସାହେବଙ୍କ ଅଦେଶ ପାଇ ନିକଟସ୍ଥ ଜଣେକ କର୍ମଚାରୀ

ଉଚ୍ଚସ୍ୱରରେ ଅଧାଓଡ଼ିଆ ଅଧା ଅନ୍ୟ ଦେଶୀ ଭାଷାରେ କହିଲେ, "ସାହେବ ପଚାରୁଛନ୍ତି, ମୋଫସଲରେ କଣ ଧାନ ଚାଉଳ କିଣିବାକୁ ମିଳୁ ନାହିଁ ?"

ଲୋକେ ପାଟି କରି ଉଠିଲେ—"ଆଜ୍ଞା ଧର୍ମାବତାର ! ଆଜ୍ଞା ମାବାପ, ଧାନ ଚାଉଳ ଦେଖିବାକୁ ସାତ ସ୍ୱପ୍ନ । ଖାଇବା ବିନା ଲୋକେ ମଲେ । ରକ୍ଷା କରନ୍ତୁ...... ।"

ହାକିମ ମହାଶୟ ସାହେବଙ୍କ କାନ ପାଖରେ ଇଂରେଜୀରେ କଣ କହିଲେ । ସାହେବ କଣ ଉତ୍ତର ଦେଲେ କେଜାଣି, ସେ ପୁଣି ପୂର୍ବପରି ପଚାରିଲେ, "ସାହେବ କହୁଛନ୍ତି, ସେ ଜାଣନ୍ତି ଦେଶରେ ବର୍ତ୍ତମାନ ବହୁତ ଧାନ ଜମା ଅଛି । ମହାଜନ ଓ ଜମିଦାରମାନେ ବହୁତ ଧାନ ଜମା କରି ରଖିଛନ୍ତି ।"

ଲୋକେ ସମସ୍ୱରରେ କହିଲେ, "ସେ କଥା ଆମକୁ ଜଣା ନାହିଁ । ଟଙ୍କା ସୁନା ନେଇ ଦ୍ୱାର ଦ୍ୱାର ବୁଲିଲେ ବି କେହି ଧାନ ବିକିବାକୁ ମଙ୍ଗୁ ନାହାନ୍ତି । ଯେଉଁମାନଙ୍କ ପାଖରେ ଧାନ ଚାଉଳ ଥିବାର ଜଣା ଅଛି, ସେମାନେ ବି ମୁହଁକୁ ଚାହୁଁ ନାହାନ୍ତି । ଦୁର୍ଭିକ୍ଷ ପଡ଼ିବ—ଏହି ଭୟରେ ହାତରୁ ଧାନ ଛାଡ଼ିବାକୁ କୁନ୍ତ କୁନ୍ତ ହେଉଛନ୍ତି ।"

ମହାଶୟ କହିଲେ, "ବ୍ରିଟିଶ ରାଜ୍ୟରେ ଦୁର୍ଭିକ୍ଷ ପଡିବ ନାହିଁ—ଏକଥା ଜଣାଶୁଣା କଥା । ଲୋକେ ଦର ବଢ଼ାଇବାକୁ ହାତରେ ଧାନ ଚାଉଳ ଯାକି ରଖିଛନ୍ତି । ତିକିଏ ଦର ଚଢ଼ିଗଲେ ସେମାନେ ଆପେ ଆପେ ବିକିବଟା ଆରମ୍ଭ କରିବେ ।"

ଲୋକେ କହିଲେ, "ଦର କଣ ଆଜଯାଏ ଚଢ଼ି ନାହିଁ ସାନ୍ତେ ! ଟଙ୍କାରେ ଚାରି ସେର ଭାଉରେ ଖୋଜିଲେ ବି ଚାଉଳ ମିଳୁ ନାହିଁ ।"

ସେ କହିଲେ, "ଖବର ମିଳିଛି, ଦେଶରେ ବର୍ତ୍ତମାନ ଯେତେ ଧାନ ଅଛି, ଅକେଶରେ ଦେଶ ଲୋକଙ୍କର ବର୍ଷକର ଆହାର ଚଳିପାରେ । ତିକିଏ ଧୈର୍ଯ୍ୟ ଧରି ଅପେକ୍ଷା କଲେ ହେଲା । ସରକାର ବି ସଦାବର୍ତ୍ତି ଖୋଲିବାପାଇଁ ଚାଉଳ ମଗାଇବାକୁ ଚେଷ୍ଟା କରୁଛନ୍ତି ।" ଏତିକି କହି ସେ ମହାତ୍ମା ସାହେବ ଦୁଇ ଜଣଙ୍କୁ କଣ ବୁଝାଇବାକୁ ଲାଗିଲେ । ଲୋକେ ଏଣେ ଉଚ୍ଚସ୍ୱରରେ ସହସ୍ର କଣ୍ଠରେ ସେମାନଙ୍କର ଅସୀମ ଦୁଃଖ ଜଣାଉଥାନ୍ତି ।

ସେମାନଙ୍କ ପ୍ରାର୍ଥନା ହାକିମମାନଙ୍କ କାନରେ ବାଜୁଥାଏ ନିଶ୍ଚୟ; କିନ୍ତୁ ସେମାନେ କଣ ବୁଝୁଥାନ୍ତି କେବଳ ତାଙ୍କୁହିଁ ଜଣା ।

କିଛି ସମୟ ପରେ ସାହେବ ଦୁଇଜଣ ଓ ହାକିମମାନେ ନିଜ ନିଜର ପାଲ୍କି ଅନ୍ୱେଷଣ କରି ନରଯାନରେ ଯାତ୍ରା କଲେ ଗନ୍ତବ୍ୟ ପଥରେ । ଲୋକ ଭିଡ଼ ମଧ୍ୟ କମି ଆସିଥିଲା । ବେଳ ରତି ରତି ହେଲାଣି । ଅପେକ୍ଷା କରିବା ନିଷ୍ପ୍ରୟୋଜନ ମନେ କରି ଜଗୁ ଓ ନବଘନ ଅନ୍ୟାନ୍ୟ ଲୋକଙ୍କ ସଙ୍ଗେ ଘରକୁ ଫେରିବାକୁ ସାର ମନେ କଲେ ।

ବାଟରେ ଜଗୁ ପଚାରିଲା, "ଆଜ୍ଞା ମାମୁ, ଏମାନେ କଣ କେବଳ ଆମକୁ ଦେଖିବାକୁ ଆସିଥିଲେ ? ଆମର ଦୁଃଖକଷ୍ଟ ଦୂର କରିବାର କୌଣସି ଉପାୟ ତ କରିଗଲେ ନାହିଁ ?"

ନବଘନ ଦୀର୍ଘଶ୍ୱାସ ଛାଡ଼ି କହିଲେ, "ଉପାୟଟା ତ ଏଡ଼େ ସହଜ ନୁହେଁ । ଆସିଥିଲେ, ଲୋକଙ୍କର ଦୁଃଖଦଶା ବୁଝିଗଲେ, ନିଜ ଆଖିରେ ଦେଖିଗଲେ । ପ୍ରଜାଙ୍କର ପ୍ରାଣରକ୍ଷା କରିବାକୁ ସେମାନେ ନିଶ୍ଚୟ ପ୍ରାଣପଣେ ଚେଷ୍ଟା କରିବେ !"

ଜଗୁ ପଚାରିଲା, "ଏତେ ଲୋକ ତ ଏତେ ଦୁଃଖ କହିଲେ, ଆମେ ବି ସେମାନଙ୍କ ସଙ୍ଗେ ମିଶି ଦୁଃଖ ଜଣାଇଲୁ । ସାହେବ କଣ ଆମ କଥା ବୁଝି ପାରିଲେ ?"

ନବଘନ କହିଲେ, "ଆରେ ରଜାର ମନ୍ତ୍ରୀ ଥାଏ କାହିଁକି ? ରଜା ଯାହା ବୁଝିବାର ବୁଝନ୍ତି, ଯାହା ବୁଝି ନ ପାରନ୍ତି ମନ୍ତ୍ରୀମାନଙ୍କର ତାଙ୍କୁ ସେ ସବୁ ବୁଝାଇଦେବାର କଥା ।"

ଜଗୁ —"ମନ୍ତ୍ରୀ ଯଦି ନିଜେ ନ ବୁଝନ୍ତି କିମ୍ବା ଓଲଟା ବୁଝନ୍ତି କି, ଯାହା ବୁଝନ୍ତି, ତାହା ଓଲଟାଇ କହନ୍ତି, ତେବେ ତ ସର୍ବନାଶ । ସାରୁ ଖୋଳୁ ଖୋଳୁ ମହାଦେବମିଳିବ ଯେ !"

ନବଘନ—"ସେଥିକି ଏବେ କାହାର ଦୋଷ ? ମନ୍ତ୍ରୀ ତ କିଛି ସମୁଦ୍ର ସେପାରିର ଲୋକ ନୁହନ୍ତି । ତେଣିକି ଗରିବ ପ୍ରଜାର କପାଳ କଥା । ଯାହା କରିବେ ନୀଳାଚଳନାଥ !"

ଏତିକି ଶୁଣି ଜଗୁ ତୁନି ହେଲା । ଘର ବି ପାଖେଇ ଆସିଲାଣି

---

## —ଏଗାର—

ସେହି ରବିବାର ସକାଳ ଓଳି କଥା ।

ନରପୁର ଗାଁଟା ତ ଛନ୍‌ଛତର ହୋଇଗଲାଣି । କିଛି ନ ଥିଲା, ହଠାତ୍ କାହୁଁ ବାଡ଼ଠାକୁରାଣୀ ଚାରିଦିନ ତଳେ ରାତି ଅଧରେ ପାଣି ସାଙ୍ଗରେ ପଶିଲେ । ସେଇଠୁ ନରପୁର ଗାଁର ସବୁ ଘରେ ତାଙ୍କର ଅର୍ଣ୍ଣି ପଡ଼ିଲା । ଦେଖି ଦେଖୁ ଏ ଘରେ ଗୋଟାଏ, ସେ ଘରେ ଗୋଟାଏ, ଏହିପରି କେତେ ଘରେ ଠାକୁରାଣୀ ବିଜେ ହେଲେ । ଘରେ ଘରେ ଆତଙ୍କ ପଡ଼ିଗଲା । ସକାଳୁ ସଞ୍ଜଯାକେ କାହାର କାହାର ବା ଦାଣ୍ଡ ଦରଜା ଖୋଲା ଥାଏ । ସଞ୍ଜ ହେଲା ତ କବାଟ ତାଟି ବନ୍ଦ କରି ଲୋକେ ଘର ଭିତରେ ପଶିଲେ । ନିଜ ଦୁଃଖର କିନାରା କରିବାକୁ ବେଳ ନାହିଁ, ପରର ଦୁଃଖରେ ସହାନୁଭୂତି ଦେଖାଇ ପଦେ ଅହା କହିବାକୁ ଯାଉଛି କିଏ ? ଠାକୁରାଣୀଙ୍କ ଡରରେ ଘର ଛାଡ଼ି ପଦାକୁ ଗୋଡ଼ କାଢ଼ିବାକୁ ସାହସ ଅଛି କାହାର ?

ତଥାପି ଗାଁର ସାହସିଆ ଟୋକା କେତେ ଜଣ ଯଥାକର୍ତ୍ତବ୍ୟ ପ୍ରତିକାର କରିବାକୁ ଅଣ୍ଟା ଭିଡ଼ି ଠିଆହେଲେ । କାଳିସି ଲାଗିଲା—ଗଛରୁ ତୋଳାଅଣି କେତେ ନୂଆ କଥା କହିଲା । ଠାକୁରାଣୀ ମାର୍ଜନା ହେଲା—“ବାଡ଼ଦେଇ” କେତେ ଲୋକଙ୍କୁ ସପନେଇ କେତେ ଅଣାର କଥା ଶୁଣାଇଗଲେ । ନଗରକୀର୍ତ୍ତନ ହେଲା—‘ଭଜ ଶ୍ରୀକୃଷ୍ଣ ଚୈତନ୍ୟ ପ୍ରଭୁ ନିତ୍ୟାନନ୍ଦ’ ବାଣୀରେ ଗାଁର ଖାଲଢିପ ସବୁ ପୂର୍ଣ୍ଣ ହେଲା । ଟୋକାଏ ବୁଢ଼ାଏ ଖୋଳ କରତାଳ ଧରି ତନ୍ମୟ ହୋଇ ତାଳ ଢ଼ାଳ ନାଚ ଗୋଡ଼ ଦରଜ କଲେ । ରାତିରେ ଭେକାଳୀ ପେଟରେ ସାଙ୍ଗ ସାଙ୍ଗ ବୁଲି ଭାଗବତ ପଢ଼ାଗଲା । କୌଣସି ଠାକୁର କି ଠାକୁରାଣୀ ଆସି ହତଭାଗ୍ୟ ମଣିଷର ପିଠିରେ ପଡ଼ିଲେ ନାହିଁ କି ହଇଜା ବନ୍ଦ ହେଲା ନାହିଁ; ବରଂ ବଢ଼ିପାଣି ପରି ବେଳୁବେଳ ମାଡ଼ି ଆସିଲା । ଦିନ ଛଅଟାରେ ଗାଁରୁ ଦଶ ବାର ଜଣ ଖସିଗଲେ ।

ସେଇଠୁ ଲୋକଙ୍କ ମନରେ ପଶିଲା—ଠାକୁରଗୁଡ଼ା ଠକ, ଲାଞ୍ଚୁଆ । ମଣିଷର ଭାଗ୍ୟବିଧାତା ମଣିଷ, ଠାକୁର ନୁହେ । ଏହି ମଣିଷ ଯାହା କରିବ, ତାହାହିଁ ହେବ । କିନ୍ତୁ ଦାନା ଅଭାବରେ ନରପୁରର ଗରିବ-

ଚଳିବେ କରନ୍ତେ କ’ଣ ? ଏଣେ ଘରେ ଖାଇବାକୁ ନାହିଁ, ଖାଦ୍ୟ ଯେ କାହିଁ ସ୍ୱର୍ଗରୁ ଗଳିବ ସେପରି ନୁହେଁ । ବନ୍ଧାଛନ୍ଦା ପକାଇ କୌଣସିଠୁ ହେଲେ କେମିତି ଯୋଗାଡ଼ ଯନ୍ତ୍ର କରି ଆଣନ୍ତେ, ସେ ଆଶା ବି ନାହିଁ । ଘରେ କିଛି ସମ୍ବଳ ନାହିଁ—ମେଲି ଗଲା ଛଡ଼ା । ଗାଁରେ ହଇଜା । ଉପାୟ କଣ ? ଗରିବଗୁରୁବା ହୋଇ ଭୋଗେ ଲୋକ ଗାଁ ଛାଡ଼ି ଭିକ ମାଗି ପେଟ ପୋଷିବାକୁ ଆଖପାଖ ଗାଁସବୁକୁ ବାହାରିଗଲେ । ଯେଉଁମାନେ ରହିଲେ ସେମାନେ ଖାଲି ଅନିଶ୍ଚିତ ଆଶାରେ ପଡ଼ି ରହିଲେ ।

ଗୋବିନ୍ଦ ସାହୁଙ୍କ ଘର କଥା । ଜମିଦାର କଚେରିରୁ ଫେରି ସେ ସବୁ କଥା ତାଙ୍କ ସ୍ତ୍ରୀଙ୍କ ଆଗରେ କହିଲେ । ରେଣୁ ବୋଉ ସବୁ ଶୁଣି ଶୁଣି ଖାଲି ଥରେ ସଙ୍ଗା ଉପରେ ଥିବା ଧାନ ଓଳିଆକୁ ଚାହିଁ ନିଶ୍ୱାସ ଛାଡ଼ି ସେଠାରୁ ଉଠିଗଲେ । ଫେରି ଆସି ଦୁଃଖରେ ମୁହଁ ଗମ୍ଭୀର କରି କହିଲେ, “ଥରେ ପଧାନ ଘରକୁ ଯାଅ !”

“ସେ ତ ମୁହଁକୁ ଚାହିଁବା ଲୋକ ନୁହନ୍ତି ।”

“କ’ଣ କହୁଛନ୍ତି ଶୁଣ । ତେଣିକି ଯାହା ଭାଗ୍ୟରେ ଥିବ ।”

ଗୋବିନ୍ଦ ସାହୁ ମନେ ମନେ କଣ ଚିନ୍ତା କରିବାକୁ ଲାଗିଲେ ।

× × × ×

ତହିଁ ଆରଦିନ ସଞ୍ଜ ବେଳେ—ଉମା ଦି ମାଠିଆ ପାଣି ଧରି ଗୋଟିଏ ହାତରେ ତା’ର ଅଣ୍ଟୁଣୀ ମାରି ହାତ ଧରି ବାଟ କଢ଼ାଇ ଯେତେବେଳେ ଆସି ଦାଣ୍ଡରେ ଠିଆ ହେଲା, ଦେଖିଲା ଖୁଡ଼ୀ ତାର ବାଡ଼ପଟ କାନ୍ଥକୁ ଆଉଜି ହାତରେ ମୁଠାଏ ଛଅଣି ଧରି ଗମ୍ଭୀର ଭାବରେ ଠିଆ ହୋଇଛନ୍ତି ।

ଉମା ଅତି ଦୁଃଖରେ ତାର ଖୁଡ଼ୀକୁ ଅନୁରୋଧ କଲା, “କାଖର ମାଠିଆଟା ଟିକେ ଧରିଲ ଖୁଡ଼ୀ ।” ଖୁଡ଼ୀଙ୍କ ମୁହଁରୁ ଉତ୍ତର ଆସିଲା,“ହଇଲେ ଛତରଖାଇ, ତୋର ଏତେ ଗୁଣ ଲୋ...!”

ଉମା ତାଟଙ୍କା ହୋଇ ଶୁଣିଲା । କି ପାପ କରିଛି ସେ ଯେ ସବୁ-ବେଳେ ଖୁଡ଼ୀ ମୁହଁରୁ କଟୁ କଥା ଶୁଣୁଥିବ । ଯେତେ କଲେଠେଇଁ ବି ସବୁଦିନେ ସବୁବେଳେ ସେହି ଏକା କଥା । ଏଡ଼େ ପୋଡ଼ାକପାଳୀ ସେ, ପେଟକୁ ଖାଇବାକୁ ମୁଠିଏ ଶାନ୍ତିରେ ବିନା ଛନ୍‌ଛକପଟରେ ଦେବା ତ

ତେଣିକି ଥାଉ ଭଲରେ ପଦେ ମିଠାକଥା ବି ସେ କେବେ ଶୁଣିଲା ନାହିଁ ! ଜୀବନଟା କଣ ତାର ଏହିପରି ଦୀନମାନରେ କଟିବ ।

ମନଦୁଃଖରେ ମୁହଁ ଶୁଖାଇ ସେ ପଚାରିଲା, "କଣ କଲି ଖୁଡ଼ୀ !"

ମୁହଁ ମୋଡ଼ି ଅଖି ଠେକି ରେଣୁ ବୋଉ କହିଲେ, "କିଛି ନାହିଁ । ଆହା ! କେଡେ ନିସ୍ୱାହ ନିର୍ଦ୍ଦୋଷ ପିଲାଟା ! ମନକୁ ପଚାରୁନୁ କଣ କରୁଛୁ !"

ଜମା ପୂର୍ବପରି କହିଲା, "ମୁଁ କିଛି ଦୋଷ କରୁଛି ବୋଲି ତ ମୋର ମନେ ହେଉ ନାହିଁ ଖୁଡ଼ୀ !"

ରେଣୁ ବୋଉ କହିଲେ, "କିଛି କରୁନୁ ତ, ଖାଲି ବାରଦ୍ୱାର ବୁଲି ଛତରରେ ପଶି ଭିକ ମାଗି ଯା ତା ଘରେ ଖାଇଲୁ । ଛତରଖାଇ, ମାଗି-ଖାଇକୁ ଘରେ ପୂରାଇ ଦେବି ନାହିଁ, ଛଅ ଣି ମାଡ଼ରେ ତୋର ମୁହଁ ଫାଟିଉଛି ରହି । ହଇଲେ, ଏତେ ଲୋକ ଗାଁ ଛାଡ଼ିଲେ ମାଗିଖାଇ ପେଟ ପୋଷିବାକୁ ତୁ ତାଙ୍କ ସଙ୍ଗରେ ଗଲୁ ନାହିଁ । ତତେ ଆଉ କୋଉଠି ମିଳିଲା ନାହିଁ ଯେ, ଶେଷକୁ ଯାଇ ପଧାନ ଘରେ ଅଇଁଠା ଗୁଡି ଦେଇ ଅସିଲୁ ? ଆମର ଉପର ମୁହଁ ତଳକୁ କଲୁ, ମାନ ମହତ୍ତ୍ୱ ଧକଡା କରି ପଦାରେ ଥୋଇଲୁ ? ଦେଖ ତ—ନେଟା ଧାଇଁ ଅସି ଦପଦ୍ରେ ମତେ ଡାଅରି ଯାଉଛି—ଜମାଟାକୁ ଖାଇବାକୁ ଦେଉ ନାହୁଁ କାହିଁକି ? ମଲାଟରେ, ଦିନେ ଗଣ୍ଡାଏ ଅଇଁଠା, ବାସୀ ପଖାଳ ଦେଇ ତ ଏତେ ତେଜ, ମୋ ପରି ଯଦି ଜମାକୁ ଏତେଟିରୁ ଏତେ କରିଥାନ୍ତା ଆଉ କେତେ ନ କହନ୍ତା !"

ଏତିକି କହି ରେଣୁ ବୋଉ ତମ୍ ତମ୍ ହୋଇ ଘର ଭିତରକୁ ପଶିଗଲେ ।

ଜମାର ଦି ଅଖିରୁ ଲୁହ ଜଳୁଳି ପଡ଼ିଲା । ସେ ଧୀରେ ଧୀରେ ମାଠିଆ ଦୁଇଟି ତଳେ ଥୋଇ ଖଣ୍ଡକୁ ଅଉଜି ଠିଆ ହେଲା । ସଂସାର ଉପରୁ ତାର ବିଶ୍ୱାସ ତୁଟିଗଲା । ସେ ତ ଜମାରୁ ମଙ୍ଗ ନ ଥିଲା, ମାଲେ ସୁନାଲେ କହି ନେଟା ତାକୁ କେତେ ଅଦର କରି ପାଖରେ ବସାଇ, କୋଳକୁ ଅଉଜାଇ ନିଜ ହାତରେ ଖୁଆଇଦେଲା । ବେଳେବେଳେ ସେ ସ୍ନେହରେ ତାର ପିଠି ଅଉଁସୁଥାଏ । କେତେବେଳେ ବା ତାର ମୁଣ୍ଡକୁ ଛାତି ଉପରକୁ

ଆଉଜାଇ ନେଇ ସ୍ନେହରେ ତାର ମୁହଁରେ ଚୋକ ଦେଉଥାଏ । ଆଉ ଗୁଣ୍ଡାଏ ଖା, ଆଉ ଗୁଣ୍ଡାଏ ଖା କହି ବଳେଇ ବଳେଇ ତାକୁ ନେଟା କେତେ ଖୁଆଇଲା । ପରିହାସ କରି କହିଲା, "ଖାଲି ଜଗୁ ଯଦି ମଙ୍ଗନ୍ତା, ଏ ସୁନାର କଣ୍ଢେଇକୁ କୋଳରୁ କାଡି ଡଲେ ଥୁଅନ୍ତି ନାହିଁ ପରା !" ନେଟା ମନର ସରାଗ ଦେଖି ଉମା ମନରେ କେତେ ସୁଖର ରଙ୍ଗୀନ ଶନ୍ଦ ନାଚ ଉଠୁଥିଲା । ତାର ବିବେକର ରକ୍ତଚକ୍ଷୁକୁ ନ ମାନି ଯୌବନର ଉଦ୍ଦାମ ପ୍ରବୃତ୍ତି ଆଶାର ପକ୍ଷ ଅବଲମ୍ବନ କରି କେତେ ଉପରକୁ ଉଡ଼ି ଉଡ଼ି ଯାଉଥିଲା ।

କିନ୍ତୁ ଶେଷକୁ ସେହି ନେଟା ତାକୁ ଆଣି ବିପଦ ଅପମାନର ମଝିରେ ଛାଡ଼ି ଦେଇ ଚାଲିଗଲା । ସବୁ କଥା ଗୁପ୍ତ ରଖିବ କହି ଶେଷକୁ ସେ ନିଜେ ଆସି ସବୁକଥା ଖୁଡ଼ୀ ଆଗରେ କହିଗଲା, ତାକୁ ନିରାଶ୍ରୟ ନିରାଶ୍ରୟ ଦେଖି ବାଘ ମୁହଁକୁ ଠେଲିଦେଲା । ଯଦି ତାର ଏପରି ଅପଦସ୍ଥ କରିବା ଇଚ୍ଛା ଥିଲା ତ ସେ ତାକୁ ଖାଇବାକୁ ଡାକିଲା କାହିଁକି ? ଜଗୁ ଭାଇର ବାଘରେ ପଡ଼ି ଯଦି ସେ ଇଚ୍ଛା ବିରୁଦ୍ଧରେ ଏପରି ତାକୁ ଖାଇବାକୁ ଡ଼କଥାଏ ! ଛି, ଧୀରେ ଧୀରେ ଏ କଥା ଗାଁଲୋକଙ୍କ କାନରେ ବାଜିବ, ପଧାନେ ଶୁଣିବେ, ତାକୁ କଣ କହିବେ ? ସେ ମୁଣ୍ଡ ଠେକି ନଶିପୁର ଦାଣ୍ଡରେ ଚାଲିବ କିପରି ?

ନା, ତାକୁ ବିପଦରେ ପକାଇବା ନେଟାର ଉଦ୍ଦେଶ୍ୟ ନୁହେଁ ପରା ! ବରଂ ତାର ଦୁଃଖରେ ସେ କାତର ହୋଇ ଖୁଡ଼ୀକୁ ତଥିର କହିବାକୁ ଆସିଥିଲା । ଉମାର ପୋଡ଼ା କପାଳକୁ ସେ ଯାହା ଭଲ କରିବାକୁ ଆସିଥିଲା, ଫଳ ତାର ଓଲଟା ହେଲା । ସେଥିକି ସେ କଣ କରିବ, ତାର କି ଦୋଷ ?

ଉମା ବୋଉ କହିଲେ, "ଆଲୋ ଉମି, ଓଦା ଲୁଗା ପିନ୍ଧି ଦାଣ୍ଡ-ଠାରେ ଠିଆ ହେଲୁ ଯେ.........।"

ଉମା କହିଲା,"ଘର ଭିତରକୁ ଯିବାକୁ ଖୁଡ଼ୀ ପରା ମନା କରିଗଲା ?"

"କାହିଁକି ବା, ଘର କଣ ଏକା ଖୁଡ଼ୀର କି ? ଖାଇବାକୁ ମୁଠାଏ ଦବ ନାହିଁ ବୋଲି କଣ ଘରେ ଠାବ ଦେବାକୁ ମନା କରିବ ? ଅ—ଲୋ···।"

ଏତିକି କହି ଉମା ବୋଉ ଘର ଭିତରକୁ ପଶିଲେ । ଉମା ଦୁଇ ହାତରେ ଦୁଇଟି ମାଠିଆ ଧରି ତାଙ୍କର ଅନୁଗମନ କଲା ।

ଉପର ଓଳି ଗୋବନ୍ଦ ସାହୁ ଘରକୁ ଫେରି ରେଣୁ ବୋଉକୁ କହିଲେ, "ଆମେ ସବୁ ଗାଁଲୋକେ ଦୁଃଖ କହିବାକୁ ପଧାନଙ୍କ ଘରକୁ ଯାଇଥିଲୁ । ଯେତେ ନେହୁରି ହୋଇ କହିଲୁ, ସେ ଜମା ଶୁଣିଲେ ନାହିଁ । କିଏ ତାଙ୍କୁ ବୁଝାଇ ଦେଇଛି, ଛନବର୍ଷ ଯାଏ ଦୁର୍ଭିକ୍ଷ ପଡ଼ିବ । ସେ ତ ସେହିଆ ବୁଝିଛନ୍ତି । ହାତରୁ ଧାନ ଛାଡ଼ିବାକୁ ସେ ଏକାବେଳକେ ଅମଙ୍ଗ ! ଆଉ ଉପାୟ ନାହିଁ । ଚଳିବା କେମିତି ?"

ରେଣୁ ବୋଉ—"ଗାଁ ଲୋକେ କଣ କରିବାକୁ ବସିଚନ୍ତି ?"

ଗୋବନ୍ଦ—"ଯାହା ଭାବିଛନ୍ତି, ସବୁ ବାଲିଆ ବଗିର । କହୁଛନ୍ତି, ପଧାନଙ୍କ ଘରେ ଧାନ ଥାଉଁ ଥାଉଁ ଗାଁଲୋକେ ଉପାସରେ ମରିବେ କି ? ଧାନ ଭଲରେ ଦେବାକୁ ନାହିଁ କଲେ । ତାଙ୍କ 'ନାହିଁ'ରେ କଣ ନାହିଁ । ଦବା ମରିବାକୁ କିଏ ଭଲ ପାଏ ଯେ ସେ ନାହିଁ କଲେ ବୋଲି ଦୋଷ ! କେତେ ଦିନ ଚଳୁଛି ଚଳୁ, ଅଚଳ ହେଲେ ତେଣିକି ଦେଖାଯିବ । ପଧାନେ କୋଉଠି ଧାନ ଛପେଇବେ ଦେଖିବା ।"

ରେଣୁ ବୋଉ—"ଗାଁ ଲୋକେ ତାଙ୍କର କଣ କରି ପାରିବେ ?"

ଗୋବନ୍ଦ—"ସେ କଥା ସେ ଜାଣନ୍ତି ଆମର ଚଳିବାର ଉପାୟ ଆଗ ଖୋଜ ।"

ରେଣୁ ବୋଉ—"ଏ ଛଅରଖାଇ ଦଣ୍ଡା ଯଦି କୁଆଡ଼େ ଯାନ୍ତେ—"

ଗୋବନ୍ଦ—"ଆହା, ସେମାନେ ଯିବେ କୁଆଡ଼େ ?"

ରେଣୁ ବୋଉ—"ସବୁ କଥାକୁ ତ ଆହା, ଏତେ ପ୍ରାଣୀଙ୍କୁ ପୋଷିବାର ସମ୍ବଳ ଥିଲେ ତ ହୁଏ ।"

ଗୋବନ୍ଦ ତୁନି ହେଲାରୁ ରେଣୁ ବୋଉ କହିଲେ, "ଠୋକାଠାର କଣ ଖାଇବାର ଅଭାବ ଅଛି କି ? ଶୁଣିଲଣି ତାର ଗୁଣ, ତାର ଯେଉଁ ରୂପ, ସେଇଆକୁ ଦେଖି ତ ନ ଦେଲା ଲୋକେ ତାକୁ ଖାଇବାକୁ ଦେଉଛନ୍ତି । ପଧାନ ପୁଅ ଜଗୁ ତ ତା ପାଇଁ ପାଗଳ... ।"

ଗୋବନ୍ଦ ଅଗରେ ନେତା କହିଥିବା ସବୁକଥା ସେ କହିଲେ । ନହିଁରେ ବରଂ ଯଥାସମ୍ଭବ ମିଛ ଯୋଡ଼ି କଥାକୁ ପାଲସ୍ କରିବାକୁ ଛାଡ଼ିଲେ ନାହିଁ । ଶେଷକୁ କହିଲେ, "ଅଜି ଛକିଶୁଣିମାଡ଼ରେ ତାର ମୁହଁ ଭାଙ୍ଗିଥାନ୍ତି ।

ପୁଣି ଭୁବନ ମାଛ ମାରିଲେ ହାତ ଗନ୍ଧାଏ । କଣ ମିଳିବ ଆମକୁ ? ଜଗୁଆ ତ ତାକୁ ବାଇ କଲାଣି ।”

ଗୋବିନ୍ଦ ଭାବି ଭାବି କହିଲେ, “ଭଲ କଥା । ତମେ ତହିଁରେ ବାଧା ଦେଉଛ କାହିଁକି ? ଜୀବନ ଆଗ ରହୁ, ତା ପରେ ଯାହା; ବରଂ ଉମା କହିଲେ ଜଗୁ ଯେ କୌଣସିମତେ ତାଙ୍କ ଅମାରରୁ ଧାନ ଆଣି ଦେବ । ଗାଁ ଲୋକେ ଯାହା କରି ନ ପାରିବେ ଆମେ ନୁସିଆରରେ ଥିଲେ ଉମା-ଦ୍ୱାରା ତାହା କରିପାରିବା । ତାକୁ ଗାଳି ମନ୍ଦ ନ ଦେଇ ବରଂ ଆଶ୍ୱାସନା କର । ଜଗୁ ସଙ୍ଗରେ ତାକୁ ଭଲ ଭାବରେ ମିଶିବାକୁ ଛାଡ଼ିଦିଅ । କେଉଁ ପାଣି କେଉଁ ସୁଅରେ ଯାଉଛି ଦୂରରେ ଥାଇ କାଧା ଦେଖିଥା ଖାଲି ।”

ରେଣୁ ବୋଉଙ୍କ ମନକୁ କଥାଟା ଦେଖାଇଲା । ଠିକ୍ ଉପାୟ ତ । ଉମାକୁ ଛତରକୁ ଛାଡ଼ି ନ ଦେଇ ବରଂ ନରକ ଭିତରକୁ ଠେଲିଦେଲେ ଏପରି ଦୁର୍ଦ୍ଦିନରେ ତାଙ୍କର ମଙ୍ଗଳ । ଯୌବନର ଆକର୍ଷଣକୁ ପ୍ରଶ୍ରୟ ଦେଇ, ପ୍ରଣ-ୟର ମୋହକୁ ପରସ୍ପରଠାରେ ବଢ଼ାଇ ପାରିଲେ ସେମାନଙ୍କର ଅନଭିଜ୍ଞ-ତାର କୁଫଳ ପାଇଁ ଦାୟୀ ସିନା ସେମାନେ ହେବେ, ପ୍ରଶ୍ରୟ ଦେବାର ମୂଲ୍ୟରେ ଏମାନଙ୍କର ଦୁର୍ଦ୍ଦିନଗୁଡ଼ାକ ସୁଦିନରେ ପରିଣତ ହେବ । ଏତେ ସହଜ ସତ୍ୟ କଥାଗୁଡ଼ା ଆଗରୁ ସେ ଯଦି ଜାଣି ପାରିଥାନ୍ତେ ତେବେ ଉମା ପ୍ରତି ସେ ଏତେ କଠୋର ହୋଇ ଥାନ୍ତେ କାହିଁକି ? ଜଗୁକୁ ସେଦିନ ଏପରି ଉତ୍ୟକ୍ତ ବା କରିଥାନ୍ତେ କାହିଁକି ? ଉମାର ରୂପର ମୂଲ୍ୟରେ ସେ ତ କେତେ ସହଜରେ ଦୁର୍ଭିକ୍ଷକୁ ଉପେକ୍ଷା କରି ପାରିଥାନ୍ତେ । କିନ୍ତୁ ଜାଣି ଜାଣି ସେ ସୁଯୋଗ ସେ ହରାଇଛନ୍ତି । ତଥାପି ଦେଖାଯାଉ, କଥାଟାକୁ ସୁଧାରି ନେବାକୁ କେତେବେଳ ?

ଉମା ଆସି ଧୀରେ ଧୀରେ ପାଖରେ ଠିଆହେଲା । ବାପାଙ୍କୁ ଦେଖି ମୁଣ୍ଡର ଓଢ଼ଣା ଟାଣି ଧୀରେ ଧୀରେ ପଚାରିଲା, “ଚୁଲିରେ କୁହୁଳା ପକାଇବି ଖୁଡ଼ୀ; ବେଳ ଉଠ ଉଠ ହେଲାଣି ।”

ରେଣୁ ବୋଉ କହିଲେ, “ଘରେ କଣ ରାନ୍ଧିବାକୁ ଅଛି କି ? ଆଜି ରାତିଟା ସେମିତି ଶୋଇପଡ଼ିବା । ରେଣୁକୁ ଭୁଜା ଗଣ୍ଡାଏ ଖୋଇ ଦେଲେ ହେଲା ।”

ଉମା କିଛି ନ କହି ଫେରି ଯାଉଥିଲା । ଖୁଡ଼ୀ ପଛରୁ ଡ଼ାକି ପଚାରିଲେ, "ଆଲୋ ଉମା, ଜଗୁ ଘରେ ନାହିଁ କି ?"

ଉମା ଥଙ୍ଗେଇ ଥଙ୍ଗେଇ ହୋଇ କହିଲା, "ନା ! ଜଗୁ ଭାଇ ତା ମାମୁଁଘରକୁ ଯାଇଛି ।"

"କେବେ ଫେରିବ, ତୁ କିଛି ଜାଣୁ ?"

"ନା" କହି ଉମା ଚାଲିଗଲା ।

ରେଣୁ ବୋଉ ବ୍ୟସ୍ତ ହୋଇ ତାଙ୍କ ସ୍ୱାମୀଙ୍କୁ ଚାହିଁ କହିଲେ, "ମୁଁ ତ ଆଗରୁ ସବୁ କଗାଡ଼ଛି । ଏହିକ୍ଷଣି ଉପାୟ କଲେ କିଛି ହେବ ନାହିଁ । କାହାର ମୋ ଉପରେ ପଡ଼ିଆସି ରହିବ ନାହିଁ । ବରଂ ଏ ବଳାଙ୍କୁ ଘରୁ ତଡ଼ିଲେ ରକ୍ଷା ।"

ରାତି ଦିପହର ହେବ । ଗାଁଟା ଚାରିଆଡ଼େ ଶୂନ୍‌ଶାନ । ସାହିଘର ସମସ୍ତେ ନିଘୋଡ଼ ନିଦରେ ଶୋଇଛନ୍ତି । ଉମା ଆସି ତାର ଖୁଡ଼ୀ ଶୋଇଥିବା ଘର କବାଟରେ ହାତ ମାରିଲା । ଚାରିଆଡ଼ ଅନ୍ଧାର । ସୁଆଡ଼େ ଚାହିଁଲେ ସତେ କି ଅନ୍ଧାର ଭିତରୁ ଭୟଙ୍କର ବିକଟ ମୂର୍ତ୍ତି ଧରି ଗୋଡ଼ାଇ ଆସୁଛି । ଦିନସାରା ସେ କିଛି ଖାଇ ନ ଥିଲା । ଉପାସ ରହିବା ତାର ଦେହସହା ହୋଇଯାଇଛି । ସେଥିକି ତାର ଚିନ୍ତା ନାହିଁ । ତଥାପି ସେ ରାତି ଅଧରେ ତାର ଖୁଡ଼ୀ ଶୋଇଥିବା ଘରର କବାଟ ଶିକୁଳି ଧୀରେ ଧୀରେ ହଲାଇ ଭୟମିଶା କରୁଣ ସ୍ୱରରେ କେତେ ଥର ଡାକିଲା, ଖୁଡ଼ୀ ନା ଧଡ଼ ।

ଶେଷକୁ ରେଣୁ ବୋଉଙ୍କର ନିଦ ଭାଙ୍ଗିଲା । ସେ ଟିକିଏ କାନପାରି ପରିଉପରୁ ଜବାବ୍ ଦେଲେ ରୁକ୍ଷସ୍ୱରରେ, "କିଏ ବା ! ମଣିଷକୁ ରାତିରେ ଟିକେ ଶୁଆଇ ଦେବେ ନାହିଁ ଲୋ ମା !"

ଉମା କହିଲା, "ଟିକିଏ କବାଟ ଖୋଲିଲ ।"

"ଆଲୋ କାହିଁକି ?"

"ଖୋଲ—— ।"

ତାର କଣ୍ଠସ୍ୱର ଏପରି କରୁଣ ହେଲା ଯେ ଇଚ୍ଛା ବିରୁଦ୍ଧରେ ରେଣୁ ବୋଉ କବାଟ ଖୋଲି ଦ୍ୱାର ମୁହଁରେ ଠିଆ ହୋଇ ପଚାରିଲେ, "ଆଲୋ କଣ ?"

ଊମା କାନ୍ଦଣା ସ୍ୱରରେ କହିଲା,"ବୋଉ ବାଡଆଡ଼ ସଜନାଗଛ ମୂଳରେ ବେହୋସ ହୋଇ ପଡ଼ିଛି । ମୋ ପାଖରେ ଶୋଇଥିଲା । କେତେବେଳେ ଉଠିଯାଇଛି , ମୁଁ ଜାଣେ ନାହିଁ । ଉଠି ଦେଖିଲାବେଳକୁ ଏ ଦଶା । ଉଠେଇଲେ ଉଠୁ ନାହିଁ ଖାଲି ଗିଁ ଗିଁ ହେଉଛି ।"

ବିସ୍ମିତ ହୋଇ ରେଣୁ ବୋଉ ପଚାରିଲେ,"କଲେଟା କଣ ହୋଇଛି ?"

ଡ଼ରି ଡ଼ରି ଊମା କହିଲା, "ହଇଜା କି କଣ ! ତମେ ଟିକେ ଆସ..."

"ମୁଁ ତେଇଁକି କଣ କରିବି—" କହି ରେଣୁ ବୋଉ ଧଡ଼ କରି କବାଟ ବନ୍ଦ କଲେ । ଊମା ଯଦି କବାଟଫାଙ୍କରୁ ତା'ର ଆଙ୍ଗୁଠି ଟାଣିଆଣି ନ ଥାନ୍ତା ବୋଧହୁଏ ଦୁଃଖ ଶୁଣିବାର ମୂଲ ସ୍ୱରୂପ ସେ ତାର ଶୁଡ଼ୀକୁ ଆଙ୍ଗୁଠି ଦୁଇଟି ଦାନ କରିଥାନ୍ତା ।

—ବାର—

ମଙ୍ଗଳବାର ଦିନ ସକାଳୁ ଉଠି ପଧାନେ ଗମ୍ଭାର ଆଡ଼େ ବୁଲି ଯାଇଥିଲେ । ଗୋଟାଏ ବର୍ଷ ଖିନା ଫସଲ ଲୋକସାନ ହୋଇଗଲା, ଏ ବର୍ଷ କି କଣ ଠାକୁରେ ଏପରି ନିର୍ଦ୍ଦୟ ହେବେ ? ଭୀଷଣ ଦୁର୍ଭିକ୍ଷ ଗୃହଆଡ଼େ ଘୋଟିଗଲାଣି । ଗାଈଗୋରୁ ତ ମରି ପଦା ହେଲେଣି; ଯେପରି ଜଣାଯାଉଛି ଆଉ ମାସ ଗୋଟାଏ ଦିନରେ ମଣିଷଗୁଡ଼ା ବି ମଶା ମାଛିପରି ମରିଯିବେ । ଜ୍ୟେଷ୍ଠ ମାସ ପାଖେଇ ଆସିଲା, ବର୍ଷାର ଚିହ୍ନବର୍ଣ୍ଣ ନାହିଁ । ଯଦି ଏ ବର୍ଷ କି ଆଉ ବର୍ଷପରି ଅକାଳ ପଡ଼େ ଦେଶଟା ଛାରଖାର ହୋଇଯିବ । ଗୋଟାଏ ହୋଇ ଆଉ କେହି ବଞ୍ଚିପାରିବେ ନାହିଁ ।

ଗାଁ ଲୋକଙ୍କୁ ସେ ଯେପରି ଭାବରେ ନିସ୍ୱଣ କରି ବିଦାୟ କରିଛନ୍ତି, ଲୋକଙ୍କର ତାଙ୍କ ଉପରେ ଅବଜ୍ଞା ହେବାର କଥା । ସେମାନେ ନିଶ୍ଚୟ ଦାଉ ସାଧିବାର ବାଟ ଖୋଜିବେ । ଏପରି ଅସମୟ ବିପଦ ବେଳରେ ଜଗୁଟା ଯାଇ ମାମୁଘରେ ବସିଲା । ଲୋକଙ୍କର ଢଙ୍ଗ ଯେପରି ଦେଖାଯାଉଛି ଆପଦ ବିପଦକୁ କେହି ପିଠିରେ ପଡ଼ିବେ ନାହିଁ । ଏତେ ବଡ଼ ଭେଣ୍ଡା ଟୋକାଟା । ଘରର ହାନିଲାଭ ବୁଝିବ ନାହିଁ । ସେ ଏକୁଟିଆ

ଲୋକ କରି ପାରିବେ କ’ଣ ? ବଳ ବ’ସ କିଛି ନାହିଁ ଯେ, ଅପଦ ବେଳକୁ ଠେଙ୍ଗା ବାଡ଼ି ଧରି ବାହାରିବେ । ଯେତେ ଆପଣାର ହେଲେ ବି ନେଗାଠା ତ ପର । ମାଇପି ଲୋକ । ବଡ଼ ହେମତ୍‌ରେ ଘର ଚଳାଇ ଅସୁଛି । କେତେବେଳେ କେଉଁ କଥା କିଏ କହିବ ?

ଗୃହଅଳ୍ପ ଚୋରି ଡକାୟିତିର ଖବର ଅସି କାନରେ ପଡ଼ୁଛି । କେଉଁ ଗାଁରେ କିଏ କାହା ଘରେ ପଶି ଧନ ଦ’ପହରରେ ତଣ୍ଟି କାଟି ଧନଦରବ ଲୁଟିକରି ନେଉଛି । କେଉଁଠିବା ଘଡି ଅଧରେ ଘରେ ନିଆଁ ଲଗେଇ ଧାନ ଗୃଳ ବୋହିନେଉଛନ୍ତି । ତେବେ ସବୁ ତ ଶୁଣିବା କଥା କେହି ଆଖିରେ ଦେଖି ନାହାନ୍ତି । କେତେ ସତ କେତେ ମିଛ କିଏ କହିବ ? ସତ ହେଉ କି ମିଛ ହେଉ ଆଗରୁ ସାବଧାନ ରହିବା ଭଲ । ଲୋକଙ୍କ ଉପରେ ଯେଉଁ ବିପତ୍ତି ପଡ଼ୁଛି ଚୋରି ଡକାଏତି ନ ହେବ ବା କାହିଁକି ? ଖାଇବାକୁ ନ ପାଇଲେ ପେଟବିକଳରେ ମଣିଷ କଣ ନ କରେ କଣ ? ଜୀବନ ଉପରେ ପଡିଲେ ଧର୍ମ ଅଧର୍ମର ପଛକଥା ଥିଆଦା ପୋଲିସ ମାନୁଛି କିଏ ? ଦେଶଯାକ ଯଦି ଚୋରି କରନ୍ତି, ପୋଲିସ ବିଗୁଶ କରେ କଣ ? କାହାକୁ ଧରିବ, କାହାକୁ ଦଣ୍ଡିବ, କାହାକୁ ତଣ୍ଡିବ ?

ଗାଁ ଲୋକେ ନିପକ୍ଷ । କଗୁଠା ମୂର୍ଖ ମାନୁଘରେ ରହିଲେ । ହଳିଆ ବଇଆ, ବାଉରି ପିଲା । ଗାଁ ଲୋକଙ୍କ କୁଣିଷାରେ ପଡ଼ିବାକୁ କେତେବେଳ ? ଯଦି ଲୋକବଳ ଥାଆନ୍ତା, ସେ ହୁଏ ତ ଧାନଗଦା ଭାଙ୍ଗି ଖଣି କରି ଧାନ ପୋତିପକାନ୍ତେ । ସେ କଥା ଆରମ୍ଭ କଲେ, ‘ଧାନ, ଧାନ’ ହୋଇ ଗାଁ ଲୋକେ ଆଉ ତାଙ୍କୁ ଉଠେଇ ବସେଇ ଦେବେ ନାହିଁ । ଦେଡି ନ ଦେବା ଯାଏ ବାର ସହିବ ନାହିଁ । ଜ୍ୟୋତିଷୀ ଯାହା କହୁଛନ୍ତି—ଛଅବର୍ଷ ଯାଏ ଅପାଳକ ପଡ଼ିବ । ଯଦି ତାଙ୍କ ଭବିଷ୍ୟତ୍ ବାଣୀ ସତ ହୁଏ, ତେବେ “ନିଜ ରକ୍ଷଣ ଅସମ୍ଭବ, ସେ କାହୁଁ ପରକୁ ରଖିବ ?” ବିଷମ ବିପଦ ରକ୍ଷା ମିଳୁଛି କିପରି ?

ଏହିପରି କେତେ କଣ ଚିନ୍ତା କରୁ କରୁ ବୁଢ଼ା ପଧାନେ ଅସି ଗଛର ମଝି ଗୋଟିକିଆ ଆମ୍ବଗଛ ମୂଳରେ ପହଞ୍ଚିଲେ ସେ ନିଜ ଚିନ୍ତାରେ ଯେତେ ଭାବିବାକୁ ବସିଲେ ସେତିକି ତାଙ୍କୁ ଗୃହଅଳ୍ପ ଅନ୍ଧାର ଦେଖାଗଲା । କୌଣସି

ଉପାୟ ଖୋଜି ପାଇଲେ ନାହିଁ । ଗାଁ ମେଳକୁ ସିପାହି ଫଉଜ ପାରନ୍ତି ନାହିଁ, ସେ ତ ସାମାନ୍ୟ ଲୋକ !

ଶେଷକୁ ଠାକୁରଙ୍କ ଉପରେ ନିର୍ଭର କରି ନିଶ୍ଚିନ୍ତ ରହିବା ଛଡ଼ା ପ୍ରଧାନେ ଅନ୍ୟ ବାଟ ପାଇଲେ ନାହିଁ । ଯାହା କରିବେ ଠାକୁରେ । ତାଙ୍କ ଇଚ୍ଛା ! ପଧାନେ କାହାରି ଲାଭ କ୍ଷତିରେ ନ ଥାନ୍ତି । ନିଜର ହକ୍ ପାଉଣା ଗଣ୍ଡାକ ଛଡ଼ା ସେ କାହାରଠୁଁ କେବେ ଠକ ପାହୁଲାଟିଏ ନେଇ ନାହାନ୍ତି କି ନିଜର ପାଉଣାରୁ କାହାରିକୁ ଜାଣି ଜାଣି କଡ଼ାକାନ୍ତି କେବେ ଛାଡ଼ି ନାହାନ୍ତି । 'ହାଟେ କଦଳୀ ନୈବେଦ୍ୟ ବ୍ରାହ୍ମଣ' ନୀତି ଅବଲମ୍ବନ କରି ପଧାନେ ତାଙ୍କର ଧନ ଦଉଲତ, ଧାନ ଚାଉଳ ସବୁ ପରମପିତା ପରମେଶ୍ୱରଙ୍କ ପଦମୂଳରେ ମନେ ମନେ ସମର୍ପଣ କରିଦେଲେ । ଠାକୁରଙ୍କ ନାଁ । ଧନ ଦୋକାନୀ ଗାଁ ଲୋକଙ୍କୁ ସେ ନାସ୍ତି ବଚନ ଶୁଣାଇ ଘରୁ ଘଉଡ଼ି ଦେଇଛନ୍ତି । ଠାକୁରେ ରଖିଲେ ରଖିବେ ଉଜାଡ଼ିଲେ ଉଜାଡ଼ିବେ ।

ପଧାନେ ଏହାପରେ କେତେ କଣ ଭାବି ବସିଲେ । ସେ ବେଳକୁ ବେଳ ଯେତିକି ଭାବିଲେ ତାଙ୍କର ଜଗୁ ଉପରେ ରାଗ ସେତିକି ବଢ଼ିଲା । କାହା ପାଇଁ ସେ ଏପରି ହାଇଁପାଇଁ ହେଉଛନ୍ତି ? କାହାପାଇଁ ସେ ବନ୍ଧୁ ବାନ୍ଧବ ଗାଁ ଲୋକଙ୍କର ବକ୍ରଦୃଷ୍ଟିରେ ପଡ଼ିଛନ୍ତି । ତାଙ୍କର ଚତୁର୍ଥାବସ୍ଥା । ପାକଲା ଆମ୍ବ, ଗୋଟାଏ ଝୁଲୁଝୁଲିଆ ବାଆରେ ଝଡ଼ି ପଡ଼ିଲେ ଲୋଟିବା କଥା । ପୁଅ ଯଦି ଯୋଗ୍ୟ ହେଲା ସମ୍ପତ୍ତି ହେବ କଣ ? ପୁଅ ଯଦି ଅଯୋଗ୍ୟ ହେଲା, ଧନ ସମ୍ପତ୍ତି ବା ହେବ କଣ ? ରଖିବ କିଏ ? ଜଗୁ ଭେଣ୍ଡା ହେଲା, ବୁଦ୍ଧି ଫେରିଲା ନାହିଁ । ତଥାପି ସେ ଯଦି ଆଖି ବୁଜି ନିଶ୍ଚିନ୍ତ ହୁଅନ୍ତି ପିଲାଏ ଛତରରେ ମରିବେ । ବାପଛେଉଣ୍ଡ ବୋଣୁଟି ଅନାଥ ହେବ । ପିଲାଙ୍କୁ ଆସନ୍ନ ବିପଦରୁ ରକ୍ଷା କରିବାକୁ ସେ ସିନା ସମସ୍ତଙ୍କର ଅପ୍ରିୟପାତ୍ର ହୋଇଛନ୍ତି, ନୋହିଲେ ତାଙ୍କର ଆଉ କେତେ ଦିନ ଯେ. ସେ ସଂସାରର ଜଞ୍ଜାଳରେ ପଡ଼ି ଘାଣ୍ଟି ହୁଅନ୍ତେ ।

କେହି ତାଙ୍କର କେହି ନୁହେଁ । ଦାଣ୍ଡରୁ ଗୋଟାଇ ଅଣି ସେ ତାଙ୍କୁ ଲୋକଙ୍କର ସମାଲୋଚନା ବିରୁଦ୍ଧରେ ଘରେ ଆଶ୍ରୟ ଦେଇଛନ୍ତି । ଜଗୁ ଯଦି ମଣିଷ ହୋଇଥାନ୍ତା ସେ ଗୋଟାଏ ପର ମଣିଷ ହାତରେ ଧନ ସମ୍ପତ୍ତି ସମର୍ପି

ଦେଇ ସବୁବେଳେ ଦକ ଦକ ହୋଇ ବେଳ କାଟନ୍ତେ ? ବଳେଇ ହାତରେ ଶୁଖିଆ ପୋଡ଼ା ରଖିବା ପରି ଇଗୁଲୁ ଧନ ସମ୍ପତ୍ତିର ଭାର ଦେଲେ ସେ ଦୁଇ ଦିନରେ ସବୁ ଶେଷ କରିଦେବ । କାହାକୁ ଦେବ କଣ କରିବ ତାର ହିସାବ ରଖିବାର ଶକ୍ତି ତାର ନାହିଁ । ଜୀବନଟାଯାକ ଅକ୍ଳାନ୍ତ ପରିଶ୍ରମ କରି ସେ ଯାହା ସଞ୍ଚୟ କରି ରଖିଛନ୍ତି, ବଞ୍ଚି ଥାଉଁ ଥାଉଁ ସେତିକ ସେ ଅକ୍ଳେଶରେ ଅସ୍ୱାର୍ଥରେ ବ୍ୟୟ ହେବାର ଦେଖି ରହି ପାରିବେ ନାହିଁ । ତେଣୁ ଯଦି ମଣିଷ ହୁଏ ସେହି ଏକା ତାଙ୍କର ଦୁଃଖ ହରଣ କରିପାରେ; କିନ୍ତୁ ସେ ତ ଅତି ଦୂରର କଥା । ନେଟାକୁ ବଣରୁ ଧରି ଅଣିଛନ୍ତି । ଘରକୁ ଆପଣାର କରିବାକୁ ହେଲେ ବିନା ଆପତ୍ତିରେ ତାକୁ ସର୍ବସ୍ୱ ସମର୍ପି ଦେଲେ ସିନା ପୋଷା ମାନିବ !

ବୋହୂଙ୍କ କଥା ଛାଡ଼ । ସେ ଘାସକୁ ଛୋଟ ପାଲକୁ ଲମ୍ବ । ଯେ କେତେଟା ଦିନ ସେ ଆସି ରହନ୍ତି ସମୟ ଅଶାନ୍ତିରେ କଟେ । ଛୋଟ ଛୋଟ କଥାରୁ ସେ ମହାଭାରତ ଯୁଦ୍ଧ ସର୍ଜନା କରନ୍ତି । ଟିକିଏ ସୁବିଧା ପାଇଲେ ଯାହା ହାତରେ ପଡ଼େ, ସବୁ ଲୁଚାଇ ବାପଘରେ ପୂରାନ୍ତି । ନେଟା ଅନେକ ଥର ଏହାର ପ୍ରମାଣ ପାଇ ତାଙ୍କୁ କହୁଛି । ସେ କଣ ଘର କରିବେ ? ଶଙ୍କାରେ ଥୋଇବାକୁ ଦେଲେ ପାଟିରେ ଥୋଇବାର ପ୍ରକୃତି ଯାହାର ତାକୁ କେଉଁ ବିଶ୍ୱାସ ? ଦିନ କେଉଁଠାରେ ଗୋପପୁର ସମ୍ପତ୍ତି ଜୁରି କରିଯାଆନ୍ତି ।

ପଣ୍ଡିତେ ବୋହୂଙ୍କର ଜାତକ ଦେଖି ଭଲକରି ପରୀକ୍ଷା କରି କହିଥିଲେ—ରାକ୍ଷସ ବର୍ଗ, ଅଲକ୍ଷଣୀ, ଯହିଁରେ ହାତ ଦେବେ ଦେଖୁ ଦେଖୁ ସବୁ ଲୁଅଡ଼େ ଉଭେଇଯିବ । ଯାହାକୁ ଆଶ୍ରା କରି ରହିବେ ତାର ସର୍ବନାଶ ହେବ । ନୋହିଲେ କି ଅସ୍ତ ଅସ୍ତ ତାଙ୍କର ଗେହ୍ଲାପୁଅ ଯୋଗ୍ୟ ପୁଅକୁ ଖାଇ ଦେଇ ବସନ୍ତେ ! ଅବଶ୍ୟ ପଣ୍ଡିତେ ଏକଥା ତାଙ୍କୁ ଗୋପନରେ କହିଥିଲେ ପୁଅ ମରିବାର ଅନେକ ଦିନ ପରେ । ଯଦି ଏ ସବୁ କଥା ସେ ଆଗରୁ ଜାଣିଥାନ୍ତେ ଏପରି ଅଲକ୍ଷଣୀ ବୋହୂ ସେ ବାଛି ବାଛି କରିଥାନ୍ତେ କାହିଁକି ? ଏଡ଼େ ସୁନ୍ଦର ହେଣ୍ଡା ପୁଅକୁ ହରାଇ ବସିଥାନ୍ତେ ବା କାହିଁକି ? ଯାହା ହେବାର ତ ହୋଇ ସାରିଛି । ସେ ଯେତେ ଦୂରରେ ରହନ୍ତି, ସେତିକି ମଙ୍ଗଳ । ସେଇଥିପାଇଁ ସିନା ସେ ବେଣୁକୁ ତାଙ୍କ ପାଖକୁ ଛାଡ଼ନ୍ତି ନାହିଁ ।

ଅମ୍ବଗଛ ମୂଳରେ ବସି ପଧାନ ବୁଢ଼ା ଖୁବୁ ଖୁବୁ ବେଳ ଯେ ଅସ୍ତି ନ ଗଡ଼ ହେଲଣି, ସେ କଥା ଭୁଲି ଯାଇଥିଲେ । ଝଙ୍କା ଅମ୍ବଗଛର ଫାଙ୍କ ବାଟେ ଯେତେବେଳେ କଅଁଳ ସୂର୍ଯ୍ୟର ତେରଛ ଖରା ଆସି ତାଙ୍କ ମୁହଁରେ ପଡ଼ିଲା ସେ ବସ୍ତ ହୋଇ ଉଠି ଠିଆହେଲେ । ଆସୁ ଆସୁ ସକାଳଟାରୁ ଅନେକଗୁଡ଼ାଏ ବାଟ ଚାଲି ଆସିଛନ୍ତି । ଏଥର ଫେରିବାର କଥା । ବୁଢ଼ା ଲୋକ । ଶରୀର ବଳର ଠେକାଭୁଷା ଡେଇଁ ନାକସଳଖା ଘରମୁହାଁ ଚାଲିଲେ ଅବଶ୍ୟ ବାଟ ଅଳପ ପଡ଼ବ; କିନ୍ତୁ କିଏ ଏତେ କଷ୍ଟ କରିବାକୁ ଯାଏ । ଖରା ହେଲଣି, କେଉଁଠି ଯଦି ହୁଡ଼ ପଶ୍ଚି ଝୁଣ୍ଟି ପଡ଼ନ୍ତି ଏ ବୟସରେ ପ୍ରାଣ ଛଡ଼ଯିବ । ଟିକିଏ ବୁଲଣି ପଡ଼ୁ ପଛେ ସଗଡ଼ ଗୁଲାରେ ଗୋହିରୀ ବାଟେ ଗଲେ ସୁବିଧା । ଛନ ଗୁରଟା କିଆରି ଡେଇଁ ଗଲେ କେତ କିଆବଣ ଅରପାଖେ ଗୋହିରୀ ।

ପଧାନେ ଗୋହିରୀ ମୁହାଁ ହୋଇ ଚାଲିଲେ । କିଅବୁଦା ଅତିକ୍ରମ କରି ଗାମୁଛା ଖଣ୍ଡି ମୁଣ୍ଡରେ ପକାଇ ଆଗକୁ ଚାଲିଛନ୍ତି କିଏ ଜଣେ ପଛରୁ ଡାକ ଛାଡ଼ିଲା । ସେ ବୁଲିପଡ଼ ଠିଆ ହେଲେ ।

ଡାକିଥିବା ଲୋକଟି ପାଖକୁ ଆସିଲା । ବୟସ ଚାଳିଶର ପାଖାପାଖି ହେବ; କିନ୍ତୁ ଦେହରେ ଶକ୍ତ ଖୁବ ହୋଇଛି । ଚେହେରାକୁ ଦେଖିଲେ ସେ ଯେ ମୁସଲମାନ ଏକଥା ବେଶ୍ ଅନୁମାନ କରି ହେଉଛି । ଲମ୍ବ ଲମ୍ବ ନାଲି ଦାଢ଼ି । ମୁଣ୍ଡରେ ପଠାଣୀ ଟୋପି ହାତରେ ଗୋଟାଏ ଚୌହାଣ ମୋଟ ବାଉଁଶ ଠେଙ୍ଗା ଗୋଡ଼ରେ ଯୋତା । ଅଜ୍ଞ ସନ୍ଦେହ କରିବାର କାରଣ କଣ ଅଛି ! ପଧାନେ ସତେ କି ପ୍ରମାଦ ଗଣିଲେ । ଛାତିରେ ପୁଣି ସେ ଯେଉଁକ ଢିପ୍ ଢିପ୍ ଯାଉଛନ୍ତି ଲୋକଟା ସେଇକ ପାଖକୁ ପାଖକୁ ଲାଗି ଆସୁଛି । ଭୟ ତ ହେବାର କଥା, ଯେପରି ସମୟ ! ଲୋକଟି ପଠାଣିଆ କଣ୍ଠରେ ପଚାରିଲା, "ଏହି ଗାଁଓ କ୍ୟା ନରପୁର ?"

ପଧାନେ କହିଲେ, "ହଁ... ।"

ସେ ପୁଣି ପଚାରିଲା, "ଇହାଁ ଦନୁ ପଧାନକା ଘର କାହାଁ ?"

ପଧାନେ ଚମକି ପଡ଼ିଲେ । କାହିଁକି ରେ ବାପା ? ସାନବନ୍ଧୁ ପଧାନ ଓରଫ୍ ଦନୁ ପଧାନ୍ ତାଙ୍କ ନାମ ବୁଢ଼ା ପଧାନେ ତାଙ୍କଠାରେ ଏ ପଠାଣ

ପିଆଦା ଠାରେ କି କାମ ! ଉଦ୍ଦେଶ୍ୟ ନ ବୁଝି ଠିକଣା କହିବା ଠିକ ନୁହେଁ । ପଧାନେ ଚନ୍ଦା ମୁଣ୍ଡରେ ହାତ ବୁଲାଇ ପଚାରିଲେ, "ପଧାନଙ୍କ ଠାରେ ତମର କି କାମ ?"

ସେ କହିଲା, "ବଡ଼ ଜରୁର କାମ ଅଛି ।"

ପଧାନେ ପଚାରିଲେ, "କେଉଁଠୁ ଆସିଲ ? ତମେ କଣ କର ?"

ଲୋକଟି ବଡ଼ ଭଦ୍ରଲୋକ । କହିଲା, "ମୁଁ ଆସିଲି ବନ୍ଦମପୁରରୁ । ବନ୍ଦମପୁର ମିଆଁ ସାହେବଙ୍କର ପିଆଦା ମୁଁ । ଗୋଟାଏ ଜରୁରି ଖବର ନେଇ ଆସିଛି ।"

ବନ୍ଦମପୁରର ମିଆଁ—ଭାରି ବଡ଼ ଜମିଦାର । ଆଖପାଖ ଦଶଖଣ୍ଡି ମଉଜାରେ ତାଙ୍କ ନାଁର ଡାକ । ଯେପରି ସୁପୁରୁଷ ସେହିପରି ଦୟାଳୁ ପରଦୁଃଖକାତର । ତାଙ୍କ ନାଁ ପଡ଼ିଲେ ଲୋକେ ଆଗ୍ରହରେ କାନ ଡେରି ଶୁଣନ୍ତି । ତାଙ୍କର ଆଦେଶ ଟଳେ ଏଡ଼ାଇବାକୁ ଲୋକେ ସାହସ କରନ୍ତି ନାହିଁ । ଦେବତାର ଆଦେଶ ପଛ; କିନ୍ତୁ ଦେବପ୍ରାଣ ମିଆଁଙ୍କର ଆଜ୍ଞା ଆଗ । ଅଚଳାଚଳ ସମ୍ପତ୍ତି ଅଛି ଗାଁ କେଇଖଣ୍ଡିରେ ତାଙ୍କ ରହିଛି କାହିଁକି ? ଲୋକଙ୍କର ମତ ଧର୍ମ ଅଡ଼ିକୁ ଟାଣି ଆଣିବାକୁ ଠାଏ ଠାଏ ସେ ଦେବମନ୍ଦିର ତୋଳାଇ ଦେଇଛନ୍ତି । କୂଅ ପୋଖରୀ ଯେ କେତେ ଖୋଳାଇଛନ୍ତି, ତାର ତାଲିକା ନାହିଁ । ସେ ଜାଣନ୍ତି, ପରକୁ ଧର୍ମପ୍ରାଣ କରିବାଦ୍ୱାରା ନିଜ ଧର୍ମର କ୍ଷତି ହୁଏ ନାହିଁ ବରଂ ସମ୍ମାନ ବଢ଼େ ।

ବନ୍ଦମପୁର ମିଆଁଙ୍କର ନାମ ଶୁଣି ବୁଢ଼ା ତାଙ୍କ ମନର ସନ୍ଦେହ ତୁଟିଲା ନାହିଁ । ବିଶେଷ ଉତ୍ସୁକ ହେବା କାରଣ ନାହିଁ ବୁଝିପାରି ସେ ଯେପରି ବାଧ୍ୟ ହୋଇ କହିଲେ, "ନରସିଂହପୁରର ଧାନବନ୍ଧୁ ପଧାନେ ମୁଁ ନିଜେ । କଣ ଜରୁରି ଖବର ଅଛି କହ ।"

ଲୋକଟି ଟିକିଏ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁଲା । କଣ ମନେ କରି ତାଙ୍କୁ ସଲାମ କରି କହିଲା, "ମୁକୁନ୍ଦପୁର ପଧାନଙ୍କ ଝିଅ କଣ ଆପଣଙ୍କ ବଡ଼ବୋହୂ ?"

ପଧାନେ କହିଲେ, "ହଁ, କାହିଁକି ?"

“କାଲି ରାତିରେ ଗୋଟାଏ ଭୀଷଣ କାଣ୍ଡ ଘଟିଛି । ଆପଣ ସ୍ଥିର ହୋଇ ଶୁଣନ୍ତୁ ।” ତାପରେ ସେ ତାର ଶୁଣିବା କଥା, ଆଖିରେ ଦେଖିଥିବା କଥା କହିବାକୁ ଆରମ୍ଭ କଲା—ପଧାନେ ସ୍ଥିର ହୋଇ ସବୁ ଘଟଣା ଶୁଣିବାକୁ ଲାଗିଲେ ।

କପର ପଧାନଙ୍କ ଚିଠି ପାଇ ବେଣୁ ବୋଉ ବଡ଼ ଅସ୍ଥିର ହୋଇପଡ଼ିଲେ । ଶଶୁରରେ ଯିବାକୁ ଲେଖିଛନ୍ତି, ବାପଘରର ଅବସ୍ଥା ବି ସେପରି ଭଲ ନୁହେଁ । ସମୟ ଖରାପ । ପିଲାଟି ତାଙ୍କର ଦୂରରେ ରହିଲା । ସବୁଦିନେ ତା ନାମରେ ସେ ଅସାର ସ୍ୱପ୍ନ ଦେଖୁଛନ୍ତି । ପୁଅକୁ ଦେଖିବାକୁ ବେଳୁ ବେଳ ତାଙ୍କର ମନ ବ୍ୟାକୁଳ ହୋଇଉଠୁଛି । ଯେତେ ବୁଝାଇଲେ ତାଙ୍କର ମା-ମନ ମୋଟେ ବୁଝୁ ନାହିଁ । ଏପରି ସ୍ଥଳେ ଯେତେ ଶୀଘ୍ର ସମ୍ଭବ ଘରକୁ ଫେରିବା ହିଁ ଭଲ ।

ସବାରି ଗଉଡ଼ ମିଳି ନାହାନ୍ତି ବୋଲି ଭାଇ ଯେତେ ବାଧା ଦେଲେ, କଅଁଳେଇ ସଅଁଳେଇ ଆଉ କିଛିଦିନ ଡେରି କରିବାକୁ ସାନ ଭଉଣୀକୁ ଯେତେ ବୁଝାଇ କହିଲେ, ବେଣୁ ବୋଉଙ୍କର ମନ ବୋଧ ହେଲା ନାହିଁ । ଅବଶ୍ୟ ଭାଇଙ୍କ ମୁହଁରେ କିଛି ବାଧା ଦେଇ କହି ପାରିଲେ ନାହିଁ ; କିନ୍ତୁ ମନଦୁଃଖରେ କାନ୍ଦି କାନ୍ଦି ବେଳ କାଟିଲେ । ଶେଷରେ ସେ ଭଉଣୀର ମନକଥା ବୁଝିପାରି ସବାରି ଗଉଡ଼ ସଞ୍ଜିଲ୍ କରିବାରେ ମନ ଦେଲେ ।

ସେଁବାର ଦିନ ବଦାବଦି । ବୈଷ୍ଣବ ପଧାନେ ସକାଳ ପହରୁ ବୁଲି ବୁଲି ସବାରି ଗଉଡ଼ ସଞ୍ଜିଲ କରିବାରେ ବ୍ୟସ୍ତ ରହିଲେ । କେତେ ଲୋକଙ୍କୁ ଖୋସାମୋଦ କଲେ, କେତେ ଲୋକଙ୍କର ହାତ ଗୋଡ଼ ଧରି ପ୍ରଲୋଭନ ଦେଖାଇ ଦିନ ବାରଟା ସରିକି ଛ ଜଣ ଗଉଡ଼, ଜଣେ ଭଣ୍ଡାରି ଠିକ୍ କରି ବାହନା ଦେଇ ଆସିଲେ । ଖାଇବା ଅଭାବରେ ଲୋକଗୁଡ଼ିକ ଟଳୁଛନ୍ତି । ଆଉ କିଛି ଓଜର ବଦାଣି ମିଳୁ ନ ମିଳୁ ଦି ବଖତ ମୁଠାଏ ମୁଠାଏ ଭୋଜନ ମିଳିବ ତ । ତା ପରେ ଆଉ ଆଉ କଥା, ଓଜର ଆପତ୍ତି ରହୁଛି । ଗଉଡ଼ ଭଣ୍ଡାରି ନ ମଙ୍ଗନ୍ତେ କାହିଁକି ?

ଯାହା ହେଉ ଯଥାବିଧି କନ୍ଦାକଟା ବାହୁନା ବାହୁଣି ଶେଷ କରି ବେଣୁ ବୋଉ ଡୋଲିରେ ବସିଲା ବେଳକୁ ସମୟ ପ୍ରାୟ ଦୁଇଟା । ବୈଷ୍ଣବ ପଧାନେ ଗାଁ ମୁଣ୍ଡଯାଏ ତାଙ୍କୁ ବଳେଇବାକୁ ଆସି ବିଦାୟ

ନେଲେ । କିନ୍ତୁ ହେବ କଣ, ଗହୀର ବିଲଟରେ ବାଟ । ଗୋଡ଼ ଠିକଣା ଜାଗାରେ ପଡ଼ୁ ନାହିଁ । ଧଡ଼ିଆ ମଡ଼ିଆ ଗଉଡ଼ ଯାକ ଧସେଇ ଗୁଳିପାରୁ ନାହାନ୍ତି । ନିରୁପାୟ । ଏଣେ କାନ୍ଧରେ ପକାଇବାକୁ କାହାରି ପାଖରେ ଖଣ୍ଡେ ଗାମୁଛା ବି ନାହିଁ । ବାଧ ହୋଇ ବାଟରେ ଠାଏ ଠାଏ ତାଙ୍କୁ ସବାର ଭଡ଼ ଟିକାଏ ଟିକାଏ ଅଟକିଯିବାକୁ ପଡୁଛି । ଭଣ୍ଡାରି ବାପୁଡ଼ା ଯେତେ କହିଲେ ବି ଗଉଡ଼େ ଟଙ୍କୁ ନାହାନ୍ତି । ପାଟି ହେଲେଇବା ତ ସହଜ, କାମଟି ଅସଲ ।

ସଞ୍ଜ ସରିକି ସେମାନେ ଆସି ବ୍ରହ୍ମପୁର 'ଅଖପାଖ' ହୋଇଗଲେ । ଭୁଷ ଥକି ଗଲେଣି । ସବାର ଭଡ଼ ଅଧଘଣ୍ଟାଏ ଦମ୍ ନ ନେଲେ ,ଗୋଡ଼ ଅଉ ନ ଚଳେ । ଯିବାର କଥା, ଧୀରେ ଧୀରେ ଯାଇ ସ୍ୱଚ୍ଛନ୍ଦ ଘଡ଼ିରେ ନରପୁରରେ ପହଞ୍ଚିଲେ କ୍ଷତି କଣ ? କଣ କାମ ଏମିତି ବଳେଇଛି ? ବ୍ରହ୍ମପୁର ପାଖ ବୁଦବୁଦିକିଆ ଛୋଟ ଜଙ୍ଗଲ କଡ଼ରେ ସବାର ଭଡ଼ା ହେଲା । ଭଣ୍ଡାରି ତାର ମସାଲ ଲଗାଇବାକୁ ;ଗାଁ ଭିତରକୁ ଗଲା । ଗଉଡ଼ମାନେ ଆନନ୍ଦରେ ଉଖୁଡ଼ା ହାଣ୍ଡି ଖୋଲି ଜଳଖିଆ ଆରମ୍ଭ କରିଦେଲେ । ବେଣୁ ବୋଉ ସବୁ ଦେଖୁଥାନ୍ତି, କିଛି କହୁ ନ ଥାନ୍ତି । କିପରି ଠିକଣା ମୁଣ୍ଡରେ ପହଞ୍ଚି ବେଣୁକୁ ଦେଖିବେ, ସେଇ ତାଙ୍କର ଏକମାତ୍ର ଭାବନା ।

ସଞ୍ଜ ବୁଡ଼ିଗଲାଣି, ଭଣ୍ଡାରିଟାର ଏତେବେଳଯାଏ ଦେଖା ନାହିଁ । ଗଉଡ଼ମାନଙ୍କର ଉଖୁଡ଼ା ଖିଆ ସରି ନାହିଁ । କାହୁଁ ପଲେ କାଙ୍ଗାଳ ଆସି ସେଠାରେ ଉପସ୍ଥିତ ହେଲେ । ଏତେଗୁଡ଼ାଏ ଛତରଖିଆଙ୍କୁ ଦେଖି ଗଉଡ଼ମାନେ ସାବଧାନ ହୋଇରହିଲେ; କିନ୍ତୁ କଣ ହେବ, ଯାହାର ପେଟ ପୋଡେ ସେ କି କେବେ ଚନ୍ଦ୍ରସୂର୍ଯ୍ୟ ମାନେ, ଭଲମନ୍ଦ ଭାବେ ? ସେମାନଙ୍କ ଭିତରୁ କେତେ ଜଣ ଏମାନଙ୍କ ଉପର ହାଣ୍ଡିକୁ ଘେରି ବସିଲେ । ମନା ମାନିଲେ ନାହିଁ । ପ୍ରଥମେ ପାଟି, ତା ପରେ ଟିଙ୍କା ଓଟରା, ଶେଷକୁ ମରାମରି, ପିଟାପିଟି ଗୁଳିଲା । ଭୟରେ ବେଣୁ ବୋଉ ସବାର କବାଟ ବନ୍ଦକରି ଦୁଇ ହାତରେ ଦୁଇ ପାଖ କବାଟକୁ ଟାଣି ଧରିଲେ ।

ଏତେ ଲୋକ, ତାଙ୍କ ବନ୍ଧୁକରେ ଛ ଜଣ ଧଡଥା ଗଉଡ଼ କରନ୍ତେ କଣ ? କେତେ ଲୋକଙ୍କୁ ଖଣ୍ଡିଆ କଲେ, କେତେ ଲୋକଙ୍କୁ ଜଖମ୍ କଲେ; କିନ୍ତୁ ଶେଷକୁ ନିଜେ ପରାସ୍ତ ହୋଇ ରକ୍ତରୁହା ହୋଇ ଜୀବନ ବିକଳରେ ସବାର ଛାଡ଼ ବିକ୍ରମପୁର ପଳାଇଲେ ଗାଁ ଲୋକଙ୍କର ସହାୟତା କାମନା କରି । ଏଣେ ଏ ଡକାୟତଙ୍କୁ ସୁବିଧା ମିଳିଗଲା ।

ଯେତେବେଳେ ଗଉଡ଼େ, ଭଣ୍ଡାରିକୁ ସଙ୍ଗରେ ଘେନି ଓ ନିଜେ ମିଆଁ ସାହେବ ଏବଂ ଅନ୍ୟାନ୍ୟ କେତେ ଜଣ ଗ୍ରାମବାସୀଙ୍କୁ ସାଥୀ କରି ଜଙ୍ଗଲ ପାଖରେ ପହଞ୍ଚିଲେ, ସେମାନେ ଦେଖିଲେ ଯେ ଲୋକଗୁଡ଼ା କୁଆଡ଼େ ଛିନ୍‌ଛତର ହୋଇ ପଳାଇଛନ୍ତି । ସବାରିଟା ଭାଙ୍ଗି ଓଲଟି ପଡ଼ିଛି । ପାଖରେ ବେଣୁ ବୋଉ ହତଜ୍ଞାନ ହୋଇପଡ଼ିଛନ୍ତି । ମୁଣ୍ଡ ଫାଟି ଧାର ଧାର ହୋଇ ରକ୍ତ ବୋହିଯାଉଛି । ସଙ୍ଗରେ ଗହଣାଗାଣ୍ଠି ଜିନିଷପତ୍ର ଯାହା ଥିଲା ସବୁ କୁଆଡ଼େ ବୋହି ନେଇଯାଇଛନ୍ତି ।

ସମସ୍ତେ ବଡ଼ ବ୍ୟସ୍ତ ହେଲେ । ମିଆଁ ସାହେବଙ୍କ ହୁକୁମ୍ ପାଇ ବେଣୁ ବୋଉଙ୍କୁ ସେହି ସବାରରେ ପକାଇ କୌଣସିମତେ ଗାଁକୁ ଅଣା ହେଲା । ତା ପରେ ମିଆଁ ନିଜେ ଭଣ୍ଡାରି ଗଉଡ଼ଙ୍କୁ ସବାର ଛାଡ଼ ପଳାଇ ଆସିଲେ ବୋଲି ଖୁବ୍ ଧମକ୍ ଦେଲେ । ରାଗରେ ଗୋଟାଏ ଗଉଡ଼କୁ ପ୍ରହାର କଲେ । ଫଳରେ ସବୁରୁ ଉଠି କାହାକୁ କିଛି ନ କହି ବୋହୂଙ୍କୁ ଛାଡ଼ ଗଉଡ଼ମାନେ କୁଆଡ଼େ ପଳାଇଛନ୍ତି ।

ଏତିକ କହି ଆଗନ୍ତୁକ କ୍ଷଣକାଳ ନୀରବ ରହି ପୁଣି ଆରମ୍ଭ କଲା, "ଆପଣଙ୍କ ବୋହୂଙ୍କ ତବିୟତ୍ ଭଲ ଅଛି । ମିଆଁ ସାହେବ, ତାକୁ ନେଇ ଆସିବାକୁ ମୋ ହାତରେ ଖବର ପଠାଇଛନ୍ତି । ସବାର ଗଉଡ଼ ସଜିଲ୍ ଅଛି ।"

ପଧାନେ ମୁହଁ ବିକୃତ କରି କହିଲେ, "ମୁଁ ଜାତି ଭାଇଙ୍କର ପରାମର୍ଶ ବିନା ତାଙ୍କୁ ଆଣି ଘରେ ବଡ଼ବଡ଼ୁଆଙ୍କ ପାଖରେ ଛାଡ଼ିବି କେମିତି ?"

"ସେ ତ କିଛି ଆମ ଘରେ ଖାଇ ନାହାନ୍ତି ।"

"ପାଣି ପିଇଥିବେ ତ ।"

"ପାଣି ବି ପିଇ ନାହାନ୍ତି ।"

ସାମାନ୍ୟ ହସି ପଧାନେ କହିଲେ, "ମୁଁ ଗିଲ୍ ନୁହେଁ ଯେ ମୋତେ ଠକ ଦେବ । କିଛି ନ କରନ୍ତୁ, ସ୍ୱାଭରେ ପଠାଣ ଘରେ ରହିଛନ୍ତି ତ ! ଜଣେ ଲୋକ ପାଇଁ ଆମେ ଆଉ ପଠାଣ ହୋଇଯିବୁ ନାହିଁ, ପଠାଣ ଘରେ ପଶିବୁ ନାହିଁ । ଯେ ଗଲା ସେ ଗଲା... ।"

"ତେବେ ହେବ କଣ ? ଅସମୟରେ ତକ୍‌ଲିଫ୍‌ରେ ପଡ଼ିଲେ ଲୋକ କରେ କଣ ?"

ପଧାନେ କହିଲେ, "ମୁଁ କାପରି କହିବି କଣ କରେ ? ମିଆଁ ସାହେବ ତାଙ୍କୁ ତାଙ୍କ ବାପଘରକୁ ପଠାଇଦିଅନ୍ତୁ । ଯଦି ଭାଇମାନେ ଅନୁମତି ଦିଅନ୍ତି ମୁଁ ତାଙ୍କୁ ଠିକ୍ ବେଳରେ ତାଙ୍କ ବାପଘରୁ ନେଇ ଆସିବି ।"

"ଆରେ ଅଛି ଲୋକ ତ ତୁମେ । ବିପଦ ଆପଦ ବେଳେ ଜାତି ଚାଲିଯାଏ ନାହିଁ ।"

ପଧାନେ କହିଲେ, "ମିଆଁ ସାହେବଙ୍କୁ ତମେ ସେହି କଥା କହିଦେବ । ଜାତି ଉପରେ, ଧର୍ମ ଉପରେ ପଡ଼ିଲେ ମଣିଷ ଆତ୍ମୀୟସ୍ୱଜନଙ୍କୁ ସହଜରେ ଛାଡ଼ିପାରେ । ଗୋଟାଏ ବିଧବା ବୋହୂ ପାଇଁ ସପ୍ତପୁରୁଷ ନରକରେ ଘାଣ୍ଟି ହେବେ କାହିଁକି ?" ଏତିକି କହି ପଧାନେ ଆଗକୁ ଚାଲିଲେ ।

ଲୋକଟି ଦୁଃଖରେ ସେହିଠାରେ ଠିଆହୋଇ ଭାବିଲା—"ହେ ଖୋଦା ! ଜାତି ପାଇଁ ଲୋକେ ମନୁଷ୍ୟତାକୁ ଏହିପରି ଛାଡ଼ନ୍ତି ! ଏହି ଜାତି ପାଇଁ ମୋର ଲେଲେବାପାଣ୍ଡ ତ...... ।" ଲୋକଟିର ଆଖିରେ ଲୁହ ଭରିଗଲା ।

## —ତେର—

ଦୁଃଖ ପରେ ଦୁଃଖ ମାଡ଼ି ଆସୁଛି, ସତେ କି ତାର ବିରାମ ନାହିଁ । ମଣିଷର ବା ଧୈର୍ଯ୍ୟ କେତେ । ସଂସାରରେ ଆସ୍ଥା କରିବାକୁ କେହି ନ ଥିଲେ ଜୀବନଟା ଏକାଥରକେ ଅସହନୀୟ ହୋଇଯାଏ । ଅଗଣିତ ଦୁଃଖର ମଝିରେ ଯଦି ମଣିଷ ପଦେ ସହାନୁଭୂତିସୂଚକ ମିଠା କଥା ବି ଶୁଣିବାକୁ ନ

ପାଏ ଜୀବନଟା ତାକୁ ତିକ୍ତ ଲାଗେ, ଜୀବନଟା ତାକୁ ନୀରସ ଶୁଷ୍କ ବୋଧ-ହୁଏ । ଯୌବନର ଉଦ୍ଦୀପନା ଭୁଲି ପ୍ରାଣର ମମତା ଛାଡ଼ି ସେ ଖୋଜିବୁଲେ ମୁକ୍ତି-ନିଷ୍କୃତି !

ଉମାର ସେ ମୁକ୍ତି-ନିଷ୍କୃତି କାହିଁ ? ତାର ପ୍ରତ୍ୟେକ ଶିରାର ଅନ୍ତ-ରାଳରେ ରହି ଭାଗ୍ୟ ଯେପରି ତାକୁ ଉପହାସ କରୁଛି । ଶାନ୍ତି ଏ ଜୀବନରେ ତାର ନାହିଁ । ଆଖି ଆଗରେ ସହସ୍ର ମହାମାନବ ଯେଉଁ ନିୟତିର ପଥ ଅନୁସରଣ କରି ଯନ୍ତ୍ରଚାଳିତ ପରି ଆଗକୁ ଚାଲିଛନ୍ତି, ତାକୁ ମଧ୍ୟ ସେହି ନରସ୍ରୋତରେ ମିଶି ଦୁର୍ଭିକ୍ଷ-ରାକ୍ଷସର ଆଗ-ମନୀ ବାର୍ତ୍ତା ପ୍ରଚାର କରି ବୁଲିବାକୁ ହେବ ଦେଶ ସାରା, ଦ୍ୱାରେ ଦ୍ୱାରେ । ଏଥିକୁ ଲଜ୍ଜା ଭୟ ଅପମାନ ତା ପକ୍ଷରେ ନାହିଁ । ଲଜ୍ଜା ଭୟ ଯେଉଁ-ମାନଙ୍କୁ କରନ୍ତା, ସେମାନେ ତ ସମଦଶାପନ୍ନ । ସେମାନେ ତ ଅଛ ବାଠର ଭିକାରି, ପଥର କାଙ୍ଗାଳ ! କିନ୍ତୁ କିଏ ଆଶ୍ରୟ ହୋଇ କେତେ ଦିନ ସେ ପରଦ୍ୱାରରେ ଗୋଡ଼ ଭାଙ୍ଗି ଠିଆହେବ ? ଦ୍ୱାର ଦ୍ୱାର ବୁଲି ହାତ ପତାଇ ମୁଠିଏ ଖାଇବାକୁ ମାଗିବ ? ଭବିଷ୍ୟତରେ ସେ କରିବ କଣ ? ଯେଉଁ ଜୀବନଟା ରଖିବାକୁ ସେ ଏତେ କଷ୍ଟ ସହିବ, ତାର ସେ ଜୀବନଟା ତ ସୁଖରେ ନିଶ୍ଚିନ୍ତରେ କଟିବ ନାହିଁ । ଆଜୀବନ ତାକୁ ଦୁଃଖଯନ୍ତ୍ରଣା ନିର୍ଯାତନାର ଭିତର ଦେଇ ମୁଣ୍ଡ ନୁଆଁଇ ଚାଲିବାକୁ ହେବ । ଏପରି ହୀନମାନିଆ ପଶୁ ଜୀବନ ଧରି ବଞ୍ଚି ରହିବା କି ପ୍ରୟୋଜନ ? ଜୀବନଟା ଯେ ରହିବ ତାର ବା ସ୍ଥିରତା କାହିଁ ? ତାର ପରି କେତେ ଲୋକ ତ କିଛି ଖାଇବା ବିନା ବାଟ ଘାଟରେ ପଡ଼ି ମରି ସଡ଼ୁଛନ୍ତି । ପଦାକୁ ଗୋଡ଼ କାଢି ଅନିଶ୍ଚିତର ଆଶ୍ରୟ ନେଲେ ଦିନେ ତାର ଯେ ସେ ଦଶା ନ ହେବ ଏକଥା କିଏ କହିବ ?

ମା ତାର ଅଣହେଳାରେ ପଡ଼ି ମରିଛି , ଦିହଗଞ୍ଜ ଜଞ୍ଜାଳରୁ ମୁକ୍ତ ପାଇଛି । ତା ପାଇଁ ଆଖି ଓଦା କରିବାକୁ ଆଉ କେହି ନାହାନ୍ତି । ଦାଦି ଖୁଡ଼ୀଙ୍କର ଅତ୍ୟାଚାର ବେଳୁ ବେଳ ବଢ଼ିବାକୁ ଲାଗିଛି । ଉମା ଆଉ ସହି ପାରୁ ନାହିଁ । ସେ ବୁଝି ପାରିଛି, ଦାଦି ଖୁଡ଼ୀଙ୍କର ଉଦ୍ଦେଶ୍ୟ—ସେ କିପରି ଘର ଛାଡ଼ି ଚାଲିଯାଉ—ନୋହିଲେ ମରିଯାଉ । ତେବେ ଯାଇ ସେମାନେ ଉମାର ଦାୟିତ୍ୱରୁ ରକ୍ଷା ପାଇବେ, ନିଜର ଛୋଟ ସଂସାରଟିକୁ କୌଣସିମତେ ଚଳାଇବାକୁ ଚେଷ୍ଟା କରିବେ ।

ମା ମରୁଛି, ଦୁଃଖରେ ତାକୁ ମନଇଚ୍ଛା କାନ୍ଦିବାକୁ ବେଳ ନାହିଁ । ଶବ ନେଇ ଲୋକେ ଶ୍ମଶାନରେ ପକାଇବାକୁ ଗୁଲିଗଲେ । ଉମା ବାଡ଼ିଅଡ଼ ସଜନାଗଛ ମୂଳରେ ବସି ମା କଥା ମନେ କରି କାନ୍ଦିବାକୁ ଲାଗିଲା ।

ବେଳ ଦୁ ପହର ହେବ । ରେଣୁ ବୋଉ ବାଡ଼ ଆଡକୁ ଆସି ନାକରେ ଲୁଗା ଦେଇ କହିଲେ, "କଲୋ ! ମା' ଅଭାଗୀ ତ ମଲା, ତୋର କଣ ତା ସଙ୍ଗେ ଗୋଡ଼ା ଇଯିବାକୁ ମନ ହେଉଛି କି ?"

ଉମା ଆଉ କଣ କହନ୍ତା ? ତାର ଆଖିର ଲୁହ ଆଖିରେ ଶୁଖିଛି, ମନର ଦୁଃଖ ମନରେ ମରୁଛି , ପେଟର ଭୋକ ପେଟ ଭିତରେ ଲୁଚିଛି । ସେ ତାର ଖୁଡ଼ୀ ପାଖକୁ ଲାଗି ଆସି ତଳକୁ ମୁହଁ ପୋତି ଠିଆ ହେଲା ।

ରେଣୁ ବୋଉ ଦୁଃଖ ଠିଆହୋଇ ପୁଣି କହିଲେ "ଆଲୋ, ଯିଏ ମଲା ତ ମଲା । କେଳ ଯେମିତ ପଡଛି କିଏ ଯେ ବଞ୍ଚି ରହିବ ନିଷ୍ଟା କରି କେହି କହି ପାରିବେ ନାହିଁ । ଆଜି ଯିଏ ଅଛି କାଲି ତାକୁ ଦେଖିବାକୁ ସପନ । ଦୁଃଖ ତ ହେବ । ଦୁଃଖକୁ ଧରି ବସିଲେ କିଛି ଲାଭ ନାହିଁ । ଅଣ୍ଟା ଭିଡ଼ ବିପଦକୁ ପଛରେ ପକାଇ ଠିଆ ହେଲେ ସିନା ଭଲ । ଯିଏ ଯାଉଛି ତାକୁ ତ ଆଉ ଫେରିପାଇବା ନାହିଁ ।" ରେଣୁ ବୋଉ ନାକର ଲୁଗା ନେଇ ଆଖିରେ ମାରିଲେ ।

ଉମା କାନ୍ଦିବାକୁ ଲାଗିଲା ।

ରେଣୁ ବୋଉ କହିଲେ, "ଦେଖ୍ ତ, ଘରଦ୍ୱାର କିପରି ମଇଳା ହୋଇ ପଡ଼ିଛି, ମାଛିଗୁଡ଼ା ପଲ ପଲ ହୋଇ ବେଢ଼ୁଛନ୍ତି ! ଗନ୍ଧରେ ନାକ ଫାଟି ପଡ଼ୁଛି । ଘରଦ୍ୱାର ସଫାସୁତରା ନ ରଖିଲେ ବେଳକାଳ ଯେଉଁଠି ସମସ୍ତେ ତ କାରବାର ହେଉଥାନ୍ତି, କେତେବେଳେ କେଉଁ କଥା ! ଠାକୁରାଣୀ ବିଗିଡ଼ିଲେ ଆଉ ପାଇବାର ଉପାୟ ଆଉ ରହିବ ନାହିଁ ।" ଟିକିଏ ଥମିଯାଇ ସେ ପୁଣି କହିଲେ, "ମତେ କିଛି ତଳେଇ ପଡ଼ନ୍ତା ନାହିଁ, ତତେ କହନ୍ତି କାହିଁକି ? ତୁ ସେଥିରେ ଧାଣ୍ଡି ହୋଇଛୁ ବୋଲି କହୁଛି । ରେଣୁ ବ ପୋ ପାଖ ଛଡ଼ା ନାହିଁମାନେ କାହିଁ ଅଯୁ ଧରି ରହୁ ନାହିଁ ।"

ଉମା ମୁଣ୍ଡ ଟେକି ଜଳଜଳ ନୟନରେ ତାର ଖୁଡ଼ୀ ମୁହଁକୁ ଚାହିଁଲା...।

ସେ କହିଲେ, "ଅଜ ଡେରି କରୁଛୁ କାହିଁକି ମା ? ଖରାତାତି ମାଡ଼ ଆସୁଛି । ଅମକୁ ତ ଆଖରେଇ କରିବାକୁ ହେବ । ଯା, ଜାଗାଟାକୁ ଓଳାଓଳି

ଙ୍କର ପବନ ପାଣି ଜୋର ଛୁଇଁବନା ମାତ୍ର ଅଣ । ପାଣି ପାଇଁ ପରଘରକୁ ଖୋସାମତ କରିବାକୁ ଯିବୁ କାହିଁକି ? କିଏ ଘରେ ପୂରିଉଥିବ କି ନାହିଁ ! କିଏ କାଳେ ନାକ ଟେକି କହିବ ? ଠାକୁରେ ଗୋଡ଼ ହାତ ଦେଇଛନ୍ତି । ନଈ ଏବେ କେତେ ଦୂର କି ? ମୁଁ ସିନା ପର ଝିଅ । ଘରେ ପିଲାଏ ହୋଇପଡ଼ିଲି । ତୋର ମାଠା ମରିଛି । ଅସମ୍ଭବ ବୋଲି ଆଜି ସିନା କିଛି ଚଗୁରିବୁ ନାହିଁ, ମୁଣ୍ଡ ଧୋଇ ଗାଧୋଇବୁ ତ ।”

ରେଣୁ ବୋଉଙ୍କର ଆଦର ଉଦ୍ଦେଶ୍ୟ ଓ ମିଠା କଥାର ମର୍ମ ସେ ବୁଝିପାରିଲା । ପ୍ରତିବାଦ କି ଆପତ୍ତି କରିବାର ବେଳ ନୁହେଁ । କଲେ ବି ଲାଭ ନାହିଁ । ଭଲରେ କହୁଛନ୍ତି, ନ କଲେ ପୁଣି ବାଧ୍ୟ ହୋଇ ତ କରି-ବାକୁ ପଡ଼ିବ ତାକୁ । ସେ ଦ୍ୱିରୁକ୍ତି ନ କରି ବିରସ ମନରେ ବଢ଼ିଣୀ ଧରି କାମରେ ଲାଗିଲା । ଖୁଡ଼ୀ ଘର ଭିତରକୁ ଗଲେ ।

ବେଳ ଦିପହର ଗଡ଼ିଗଲାଣି । ଉମା ନଈକୂଳର ଗୋଟିଏ ଟୋକା ଆମ୍ବଗଛ ଛାଇରେ ବସି ଭାବୁଛି; ପାଖରେ ମାଟିଆ ଦଉଡ଼ି ଉଲ୍ଗ୍ନା ହୋଇଛି । ଆଗରେ ନଈ; ପାଏ ବାଟ ତତଲା ବାଲି ପାରି ହେଲେ ଟୋକା ପାଣିଧାର । ଖରା ତାତରେ ବାଲି ତ ନିଆଁ ଗୁଣ୍ଡା ପରି ତାତିଥିବ—ହୁଳା ବାହାରୁଛି । ପାଣିର ଅବସ୍ଥା ତହୁଁ ବଳିଥିବ । କିଏ ଯେପରି ଫୁଟିଲା ପାଣି ଚୁଲିରୁ କାଢି ଅଜାଡ଼ ରଖିଛି । କିନ୍ତୁ ବସିଥିଲେ ହେବ ନାହିଁ । ପ୍ରାଣ ରହୁ କି ଯାଉ ତାକୁ ଏଇ ନିଆଁ ବାଲି ପାରି ହୋଇ ଫୁଟିଲା ପାଣିରେ ଗାଧୋଇବାକୁ ପଡ଼ିବ । ଅଲୋଡ଼ା ଅବେଇଜ ପ୍ରାଣ । ବଳେଇ କୁକୁର ଛୁଆଙ୍କର ଜୀବନର ମୂଲ୍ୟ ଅଛି, ମନର ସ୍ୱାଧୀନତା ଅଛି, ଆଶାର ଆକର୍ଷଣ ଅଛି, ତାର ସେ ସବୁ ନାହିଁ । ସେ ମଣିଷ ପିଲା; କିନ୍ତୁ ଅବହେଳିତ ବାଟର ଧୂଳିକଣା । ନିଜର ନିଜତ୍ୱ ନାହିଁ । ସମୟର ଫୁତ୍କାରରେ ତାକୁ ଉଡ଼ିବାକୁ ହେବ । ଅବସ୍ଥାର ପଦକ୍ଷେପ ମୁଣ୍ଡ ଉପରେ ସହିବାକୁ ପଡ଼ିବ ।

କିନ୍ତୁ ସେ ଯିବ କିପରି ? ଓଃ, କି ଭୀଷଣ ଦୃଶ୍ୟ । ଦିନ ଦିପହରେ ସୂଚା ଜନମାନବର ଦେଖା ନାହିଁ । ଡାହାଣହାତ—ନଈକୂଳ ବାଲି ପଡ଼ିଆ ଉପରେ ହାଡ଼ କୁଡ଼ ଗଦାହୋଇଛି । ନରପୁରର ଯେତେ ଗାଈ ଗୋରୁ ଖାଇବାକୁ ନ ପାଇ ବସନ୍ତରେ ଫାଟୁଆରେ ମଲେ ସେମାନଙ୍କର

ଅନ୍ତିମ ମିଳନସ୍ଥଳ ଶ୍ମଶାନ । ବର୍ତ୍ତମାନ ମଧ୍ୟ ଗୋଟାଏ ଅକ୍ଷତ ମଡ଼ା ହାତଗୋଡ଼ ନାଚି, ତଡ଼ଳ ବାଲି ଉପରେ ପଡ଼ିଛି । ପାଖ ଓସ୍ତଗଛ ଉପରେ ଦୁଇ ଗୃଟା ସାଗୁଣା ପକ୍ଷ ମେଲାଇ ବସି ଏକଧ୍ୟାନରେ ଶବଟିକୁ ଗୃହିଁ ରହିଛନ୍ତି । ପଲେ କାଉ ନଈକୂଳରେ ବସି ଶବ ଅଡ଼କୁ ଗୃହିଁ—କା, କା ହେଉଛନ୍ତି । ବେଳେବେଳେ କେହି କେହି ଉଡ଼ିଯାଇ ଶବଟିର ଆଖି କାନ ଖୁମ୍ପିବାକୁ ଚେଷ୍ଟା କରୁଛନ୍ତି; କିନ୍ତୁ ରକ୍ତମୁଖା କୁକୁରଗୁଡ଼ାଙ୍କର ଗୋଡ଼ାଗୋଡ଼ି ଦେଖି, ଭୁଉଁ ଭୁଉଁ ଶବ୍ଦ ଶୁଣି, ଭୟରେ ପୁଣି ସ୍ୱସ୍ଥାନକୁ ଫେରିଆସୁଛନ୍ତି । ଦୂରରେ ପଡ଼ିଥିବା ଅନ୍ୟ ଗୋଟିଏ ଛିଣ୍ଡାକଙ୍କାଳ ଦେହରୁ ଖୁମ୍ପି ଖାଇବାକୁ ଉଡ଼ିଯାଉଛନ୍ତି । ପଗୃ ଗନ୍ଧରେ ନାକ ଫାଟିପଡୁଛି ।

ଆହା ! ଉମାର ଅକ୍ଷଣୀ ବୋଉଟି ! ତାର ମଧ୍ୟ ଆଜି ଏହି ଅବସ୍ଥା ହୋଇଥିବ । ସେ ବି ଆଜି କାଉ କୁକୁର ବିଲୁଆ ସାଗୁଣାଙ୍କର ଆନନ୍ଦବର୍ଦ୍ଧକ ଖାଦ୍ୟସାମଗ୍ରୀ ହୋଇ ଶ୍ମଶାନ ଭୂଇଁରେ ପଡ଼ିରହିଥିବ ! ଉମା ଯାହାର ବକ୍ଷରେ, ଯାହାର କୋଳରେ ବଢ଼ିଆସିଛି ତାର ଆଜି ଏହି ଅବସ୍ଥା ! ଏହି ନଶ୍ୱର ଦେହ । କେତେ ଯତ୍ନ ଏହାର ପାଇଁ । ଏହାର ଶ୍ରୀବୃଦ୍ଧି ପାଇଁ ଏହାର ଆନନ୍ଦ ଏହାର ଉତ୍ତେଜନା କ୍ଷଣିକ ସୁଖ ସମ୍ଭୋଗ ପାଇଁ ଦୁନିଆ ପାଗଳ ହୁଏ କାହିଁକି ? ଯୌବନର ତୃଷ୍ଣା, ସୌନ୍ଦର୍ଯ୍ୟର ସୃଷ୍ଟି ତେବେ କଣ ଶ୍ମଶାନ ଭୂଇଁ ପାଇଁ ?

ବାଳିକା ଉମାର ମନ ବଦଳିଲା । ସେ ଦୀର୍ଘଶ୍ୱାସ ଛାଡ଼ି ଆଖି ଫେରାଇଲା ନିଜର ଦେହକୁ । ଯୁବତୀ ସେ । ଦୈନ୍ୟର ତାଡ଼ନା ସହି ମଧ୍ୟ ଯୌବନର ମୋହନୀୟ କମନୀୟତା ତାର ଦେହରେ ଫୁଟିଉଠିଛି । ତାର ସେ ଶୋଭା ଘୋଡ଼ାଇ ରଖିବାକୁ ସମ୍ବଳ ନାହିଁ । ବନ୍ଧୁ ଜନର ଛିଣ୍ଡା ଲୁଗାଟା ପିନ୍ଧି ଲଜ୍ଜରେ ପଦାକୁ ବାହାରିବାକୁ ସେ ସଙ୍କୁଚିତ ହୁଏ । ଆଉ ଲଜ୍ଜ କଣ ! ଶ୍ମଶାନ ଭୂଇଁରେ ଯୁବତୀର ନଗ୍ନଯୌବନ, ଭଗ୍ନସୌନ୍ଦର୍ଯ୍ୟ ଘୋଡ଼ାଇବାକୁ କେହି ଆସେ ନାହିଁ । ଲୁଗା ଖଣ୍ଡେ ନାହିଁ ବୋଲି ସେ କାହିଁକି ଲଜ୍ଜରେ ସଙ୍କୁଚିତ ହୋଇ ଅଡ଼ହୋଇ ରହିବ ? ତାର ସେହି ଯୁବତୀ ଦେହଟା ଦିନେ ତ ଏହି ଶ୍ମଶାନ ଧୂଳିରେ ମିଶିଯିବ ।

Digitized by PPRACHIN, SOA

ଦି ପହରର ଗରମ ପବନଟା ଶିର ଶିର ହୋଇ ନଈ ଉପରୁ ବୋହି ଆସିଲା । ଉମାର ମୁକୁଳା ଅସଜ୍ଜିତ କେଶଦାମ ଉଡ଼ାଇ ତାକୁ ଅର୍ଦ୍ଧ-ଉଲଗ୍ନ କରିଦେଲା । ଉମା କେଶ ସଜାଡ଼ିଲା ନାହିଁ, ତାର ଛିଣ୍ଡା ଲୁଗାଟିକୁ ଟାଣି ଅଣି ମୁକୁଳା ଦେହ ଘୋଡ଼ାଇବାକୁ ଚେଷ୍ଟା କଲା ନାହିଁ । କି ପ୍ରୟୋଜନ ? ଦି ଦିନିଆ ଦେହ, କ୍ଷଣକର ସୌନ୍ଦର୍ଯ୍ୟ ପାଇଁ ଏତେ ଯତ୍ନ କରିବା ଦରକାର ନାହିଁ । ଏତେ ସତର୍କ ହେବା ଲୋଡ଼ା କଣ ? ସେ ପୂର୍ବପରି ବସିରହି ପୁଣି ନିଜ ଚିନ୍ତାରେ ମନ ବୁଡ଼ାଇଲା । ଆଖି ଆଗରେ ଜ୍ୱଳନ୍ତ ବାଲୁକାରାଶି ଉପରେ ମରୀଚିକାର ମାୟା-ତରଙ୍ଗ ନାଚି ନାଚି ପ୍ରବାହିତ ହେଲା— ସତେ କି ତାର ମନ ଭୁଲାଇବାକୁ ।

ଘୂର୍ଣ୍ଣିବାୟୁ—ଖଣ୍ଡିଆଭୂତ, ନଈ ମଝିରୁ ଧୂଳିକଣା ଉଡ଼ାଇ କୂଳକୁ ମାଡ଼ି ମାଡ଼ି ଆସିଲା । ଉମା ଉଠି ଠିଆହେଲା । ପିଲାଦିନେ ଖଣ୍ଡିଆଭୂତ ପଛରେ ପିଲା ସାଥୀରେ ଗୋଡ଼ାଇ କାଠି କୁଟା ଧରେ ବୋଲି, ବାପା ତାକୁ କୁଆଡ଼କୁ ଛାଡ଼ନ୍ତି ନାହିଁ । ବେଳେ ବେଳେ ସେ ଲୁଚି ପଳାଏ । ହାବୁଡ଼େ ପଡ଼ିଲେ ବାପା ;ତାକୁ ଡରାଇ କହନ୍ତି—ଭୂତ ଉଡ଼ାଇନେବଟି ! ଉମାର ମନ ଭିତରେ ସେ ସବୁ ଦୃଶ୍ୟ ଝାପ୍ସା ହୋଇ ରହିଛି । ତାର ଆଉ ସେ ଚପଳମତି ପିଲା ମନ ଖେଳୁଆଳି ବୁଦ୍ଧି ନାହିଁ । ବାପାଙ୍କର ସ୍ନେହ ସୋହାଗ, ମିଠା କଅଁଳ କଥା, ଏହି ଅବାଧ ପବନ ଭିତରେ କେଉଁଠି ହଜିଯାଇଛି । ମା'ଟି ଥିଲା, ସେ ବି ଆଜି ନାହିଁ । ଯନ୍ତ୍ରଣା-ସଙ୍କୁଳା ଦେହଟି ଧରି ଏକା ରହିଛି ସେ ।

ଉମାର ଆଖି ସଜଳ ହେଲା । ସେ ବାଁ ଅଡ଼କୁ ମୁହଁ ଫେରାଇଲା । ଟିକିଏ ଦୂରରେ ନଈକୂଳକୁ ଅଳ୍ପବାଟ ଛାଡ଼ି ସେ ଯେଉଁ ଝଙ୍କା ବରଗଛଟି, ତାରି ତଳେ ତାର ସ୍ନେହମୟୀ ମାର ପିଣ୍ଡ ଲମ୍ବାଇ ଦେଇ ଆସିଥିବେ । ତାର ଅମୂଲ୍ୟ ଦେହଟିକୁ ବୋଧହୁଏ ବର୍ତ୍ତମାନ ଶିଲୁଆ କୁକୁର ଟାଣି ଖାଉଥିବେ । ଉମାର ଦେହ ଶୀତେଇ ଉଠିଲା । ସେ ଆକାଶକୁ ଚାହିଁଲା । କେତୋଟି ଫୁଲସାଗୁଣା ମଶାଣି ଉପରେ ଉଡ଼ି ଚକ୍କର ଦେଉଛନ୍ତି । ଦୂର କିଆବାଡ଼ ତଳୁ ବାହାରି ଗୋଟାଏ ଶିଲୁଆ ମନଖୁସିରେ ଲାଙ୍ଗୁଳ ଫୁଲାଇ ଏଣିକି ତେଣିକି ତରଙ୍ଗ ତରଙ୍ଗ ହୋଇ ଚାହିଁ ମଶାଣି ଆଡ଼କୁ ଦଉଡ଼ୁଛି । ଭୁଲ୍ଲା

ହେଲା, ଥରେ ତା ମା'କୁ ମଶାଣି ଭୂଇଁରେ ଶେଷ ଥର ପାଇଁ ଦେଖି ଆସିବ । ବଞ୍ଚିଥିବା ଯାଏ ଆଉ ତ ତାକୁ ଦେଖି ପାରିବ ନାହିଁ । ଓଃ ! କି ଅସୁନ୍ଦର, କେଡ଼େ ବିକୃତ, ଭୟଙ୍କର ଦେଖାଯାଉଥିଲା ସେ ମୁହଁଟା ସକାଳେ ! ତା ମା'ର ମୁହଁ ତ କେଡ଼େ ସୁନ୍ଦର ! ଦେଖିବାକୁ ଯିବ କାହାକୁ, କଣ ଦେଖିବ ! ମାଟିର ଘରଟା ଭିତରେ ତାର 'ମା' ବୋଲି ଯେତିକି ଥିଲା ସେତିକି ଆଜି ମାୟାପୁରରେ, ଅଜଣା ସ୍ୱର୍ଗରେ ।

ପଛ ଖଡ଼ ଖଡ଼ ଶୁଣି ପଛକୁ ଫେରି ଚାହିଁଲା । ବେତ ବୁଦା, କଅଁ ବାଡ଼ ଭିତରୁ ବାହାରି ଜଗୁ ଭାଇ ତାର ଆଡ଼କୁ ମୋହିଁଛି । ସେ ପ୍ରଥମେ ବିସ୍ମିତ ହେଲା, ପରେ ସଙ୍କୁଚିତ ହୋଇ ଲୁଗାପଟା ସଜାଡ଼ି ମୁହଁ ତଳକୁ ପୋତିଲା । ଜଗୁ ଭାଇ—ପର ପୁଅ । ତା ସଙ୍ଗେ ତାର ବା କି ସମ୍ପର୍କ ? ମଣିଷର ଦୁଃଖ ଦେଖିଲେ, ବିପଦ କଥା ଶୁଣିଲେ ସାଧାରଣତଃ ମଣିଷ ସହାନୁଭୂତି ଦେଖାଇବାକୁ 'ଆହା' କରିଥାଏ । ଜଗୁ ଭାଇ ତାହା କଲା ତା ପାଇଁ ତ ଆଉ ଅଧିକ କିଛି କରି ପାରି ନାହିଁ, କରି ପାରିବ ନାହିଁ ମଧ । ଖାଇବାକୁ ନ ପାଇ ପେଟର ଜ୍ୱାଳା ସହି ନ ପାରି ଯେତେବେଳେ ସେ ଛତରରେ ପଶିବ, ଜଗୁ ଭାଇ ତାକୁ ଅଟକାଇ ରଖି ପାରିବ ନାହିଁ, ପଛରେ ଗୋଡ଼ାଇଯିବ ନାହିଁ । ଗାଁର ଆଉ ପାଞ୍ଚଟାଙ୍କ ପରି ସେ ବି ଜଳ ଜଳ କରି ତାର ଯିବା ବାଟକୁ ଚାହିଁ ରହିଥିବ ।

ଉମାର ପେଟ ଭିତରୁ ଗୋଟାଏ କପଟ ଅଜଣା କୋହ ଉଠିଲା ! ରୁଦ୍ଧ ଆବେଗ, ରୁଦ୍ଧ ଅଭିମାନ ସତେ ଯେପରି ଲୋତକ ଛଳରେ ତାର ଦୁଇ ଆଖିରୁ ଝରିପଡ଼ିଲା । ସେ ଆଖି କୋଣରେ ତାର ଜଗୁ ଭାଇକୁ ଚାହିଁଲା—କେଡ଼େ ମଳିନ ବେଶ ! ଧୂଳିରେ ଦେହଟା ଧୂସର ହୋଇଛି ! ମୁଣ୍ଡର ବାବୁରି ବାଳ ଖରାରେ ଶୁଖି ପବନରେ ଅଲରା ହୋଇଛି । ମୁହଁ କଳା କାଠ ପଡ଼ିଛି । ରକ୍ତଚନ୍ଦନଟା ନାଲି ଆଖି ଦିଟା ଭ୍ରୂଲତା ତଳକୁ ଦି ଅଙ୍ଗୁଳି ପଶିଯାଇଛି । ଗାମୁଛା ଖଣ୍ଡି କାନ୍ଧରେ । ହାତରେ ଗୋଟାଏ ଠେଙ୍ଗା ।

ଜଗୁ ପାଖକୁ ଆସି ଉମାକୁ ଚାହିଁଲା—ଏ କି ବେଶ ! ଦାଣ୍ଡର ଭିକାରୁଣୀ ପରି ମଳିନବେଶ । ପିନ୍ଧିଲା ଲୁଗାଟିର ଅବସ୍ଥା ନାହିଁ—ସାତ ଗଣ୍ଠି ! ତଥାପି ଦୁର୍ବଳ ଦେହ ଲଜ୍ଜାଟି ଭଲ କରି ଆବୃତ କରିବାର ଉପାୟ ନାହିଁ ।

ଦରଫାଟା ଖଦ୍ଦ ମଇଳା ମଞ୍ଚା ଫାଳଟି ପରି ମୁହଁଟି ଝାଉଁଳି ପଡ଼ିଛି । ଦିନ କେଇଟାରେ ଏ କି ପରିବର୍ତ୍ତନ ! ଉମା—ତାର ଧର୍ମର ଟିକି ଉଉଣୀ ଉମାକୁ ଏପରି ଅବସ୍ଥାରେ ଦେଖିବ ବୋଲି ସେ ଆଶା କରି ନ ଥିଲା ।

ଉମାହିଁ ପ୍ରଥମେ ମୁହଁ ଖୋଲି ପଚାରିଲା, "ତମେ ଏ ଖଦ୍ଦରେ କେଉଁଠୁ ଆସିଲ... ?"

ଜଗୁ ବ୍ୟଥିତ ହେଲା ପରି ଦୁଃଖଭରା ଆଖିରେ ତାକୁ ଅନାଇ ରହି କହିଲା, "ସକାଳୁ ମାମୁଘରୁ ବାହାରି ତ ଆସୁଛି । ଦେଶର ଅବସ୍ଥା କହିଲେ ନ ସରେ । ଖାଇବାକୁ ନ ପାଇ ନାନାପ୍ରକାର ରୋଗ ବୈରାଗରେ ଲୋକେ ମରି ମଶାଣିରେ ସଢୁଛନ୍ତି । ଯେଉଁ ଗାଁରେ ପଶିଲି, ଖାଲି କାନ୍ଦ ବୋବାଳି ପଡ଼ିଛି ଶୁଣିଲି । ଖାଇବା ବିନା ଲୋକେ ବାଟଘାଟରେ ଖପରା ଧରି ପଡ଼ିଛନ୍ତି । ଦିହରେ ହାଡ଼ ଦିଖଣ୍ଡ ଛଡ଼ା ରକ୍ତମାଂସର ଦେଖା ନାହିଁ । ଏସବୁ ଦେଖି ମୋର ମନ ବଡ଼ ଉଛନ୍ନ ହେଲା । ଗାଁର ହାଲଚାଲ କଣ ଜାଣି-ବାକୁ ବ୍ୟଗ୍ର ହୋଇ ଧାଇଁଛି । ଆଉ ଉମି, ଅମର ଏ ଗାଁ ମଶାଣିରେ ଗୋଟାଏ ଶବ ଦେଖି ଆସିଲି—କୁକୁର ଶଗୁଣ ଓଟରା ଓଟାରି କରି ଖାଉ-ଛନ୍ତି । ଦେଖିବାକୁ ପାଖକୁ ଯାଉଥିଲି, ଗୋଟାଏ ପାଗଳା କୁକୁର ଭୁଉଁ ଭୁଉଁ ହୋଇ ଧାଇଁଆସିଲା । ମୁଁ ତାକୁ ଠେଙ୍ଗା ଦେଖାଇ କୌଣସିମତେ ଉଦ୍ଧାର ପାଇ ପଳାଇଆସିଲି । ମୁଁ ମାମୁଘରକୁ ଯିବାବେଳେ ଆମ ଗାଁରେ ତ କେହି ସେପରି ବାଧକା ପଡ଼ି ନ ଥିଲା । ହଠାତ୍ ଏପରି କଣ ହୋଇ କିଏ ମରିଗଲା ଲେ ?"

ଉମା ଆଉ କି ଉତ୍ତର ଦିଅନ୍ତା ? ସେ ଯାହା ଅନୁମାନ କରୁଥିଲା ତାହାହିଁ ଘଟିଛି । ତାର ନିଷ୍ପ୍ରଭ ଆଖି ଦିଓଟି ପୁଣି ଲୁହରେ ପୂରିଉଠିଲା । ଅଧ ମଇଳା ମନ୍ଦାର ପାଖୁଡ଼ା ଓଠ ଦିଓଟି ଥରିଉଠିଲା । ସେ ଆମ୍ଭଗଛ ଦେହକୁ ଆଉଜି ପଡ଼ି ଦୁଇ ହାତ ପାପୁଲିରେ ମୁହଁ ଘୋଡ଼ାଇ ଭୁଣ ଭୁଣ କାନ୍ଦିବାକୁ ଲାଗିଲା ।

ଜଗୁର ଆଖି ବିସ୍ମୟରେ ବିସ୍ଫାରିତ ହୋଇଗଲା । କାହାକୁ ଖୋଜିଲା ପରି ଚାରି ପାଖକୁ ଚାହିଁ, କଣ ମନରେ ପାଞ୍ଚି ବଡ଼ ବ୍ୟସ୍ତ ହୋଇ ଉମା ପାଖକୁ ଘୁଞ୍ଚିଗଲା । ତା ପିଠିରେ ହାତ ରଖି ଉଦ୍‌ବିଗ୍ନ ହୋଇ ପଚାରିଲା, "ଉମୀ, ଉମୀ, ବୋଉ କାହିଁ ଲୋ··· ?"

ଉମାର ରୁଦ୍ଧ ବେଦନା ଆଶ୍ରା ପାଇ ଉଚ୍ଛୁଳି ପଡ଼ିଲା । ସେ କିଛି ଉତ୍ତର ନ ଦେଇ କହିଁ କହିଁ ହୋଇ କାନ୍ଦିବାକୁ ଲଗିଲା ।

ଜଗୁ ଅଉ ସମ୍ଭାଳି ପାରିଲା ନାହିଁ । ଘଟଣା ଜାଣିବା ଆଗରୁ ତାର ପେଟ ଭିତରଟା ଯେପରି କାନ୍ଦିଉଠିଲା । ଆଖିରେ ଲୁହ ଢଳ ଢଳ ହେଲା । ସେ ଉମାର ମୁହଁକୁ ଟେକି ଧରି ବାକଲ, କରୁଣ ସ୍ୱରରେ ପଚାରିଲା, "କହ ଉମୀ...... ।"

କିନ୍ତୁ ଉମୀର ଉତ୍ତରକୁ ଆଉ ସେ ଅପେକ୍ଷା କରିପାରିଲା ନାହିଁ । ଉମାର ଲୁହଧୁଆ ମୁହଁ, ତା ସଜଳ ଆଖିପତା, ଶୁଖିଲା ଓଠରୁ ସେ ତାର ପ୍ରଶ୍ନର ଉତ୍ତର ପାଇଲା । ତେବେ ସେ ମାଶାଣି ଭୂଇଁରେ ଯାହାର ଶବ ଦେଖି ଆସିଲା ସେହି ତାର ବୋଉ । ଏତେ ଶୀଘ୍ର ଏମିତି ଭାବରେ ଉମୀକୁ ନିଆଶ୍ରା କରି, ବାଘପଲ ଭିତରେ ଅସହାୟରେ ଏକୁଟିଆ ଛାଡ଼ି, ଜା ଦିଅରଙ୍କର ଅତ୍ୟାଚାରରୁ ଉଦ୍ଧାର ପାଇ ଖସି ଚାଲିଗଲା । ଉମା ଆଜି ନିରାଶ୍ରୟ ! ଚାରିଆଡ଼ ତାକୁ ଶୂନ୍ୟ ।

ଜଗୁର କଣ୍ଠ ରୁଦ୍ଧ ହୋଇ ଆସିଲା । ସେ ଉମାର ହାତ ଦିଓଟି ଧରି ତଳକୁ ଚାହିଁଲା । ମାଠିଆ ଦିଟା ପାଖରେ ଉପୁଡ଼ା ହୋଇଛି । ଦୁଃଖ ସଙ୍ଗେ ସଙ୍ଗେ ରାଗରେ ତାର ଦେହ ସାରା ଥରିଉଠିଲା । ଓହୋ ! ଲୋକଙ୍କର ଦୟା ମାୟା ଟିକିଏ ନାହିଁ । ଦୁଃଖରେ 'ଆହା' ପଦେ କହିବା ତେଣିକି ଥାଉ, ଏ ନିପଟ ଖରା, ନିଛାଟିଆ ଜଙ୍ଗଲ ଦିପହର-ଟାରେ ଏକୁଟିଆ ମଶାଣି ଘାଟକୁ ପାଣି ପାଇଁ ତାକୁ ପଠାଇଛନ୍ତି ! ନିଆଁ ଗୁଣ୍ଡା ପରି ତତଲା ବାଲିରେ ଗୋଡ଼ ଦେଲେ ଫୋଟକା ହେଉଛି ! କି ନୃଶଂସ ! ଏତେ ବଡ ବିପଦ ଉପରେ ବି ଗରିବ ଉମାର ପରିତ୍ରାଣ ନାହିଁ !

ଜଗୁର ଛାତି ଭିତର କାନ୍ଦିଉଠିଲା । ସେ ଉତ୍ତେଜିତ ହୋଇ ଉମାର ସଜଳ ମୁଖକୁ ଛାତି ଉପରକୁ ଟାଣି ଆଣି ଭଙ୍ଗା ସ୍ୱରରେ କହିଲା, "ତୁନି ହ, ତୁନି ହ ଉମୀ ! ତୋର ବୋଉ ସିନା ମରିଛି, ତୋର ଜଗୁ ଭାଇ ତ ବଞ୍ଚିଛି !"

ଉମା ଧୀରେ ଧୀରେ ଇଶ୍ୱର ଛବି ଉପରୁ ମୁହଁ ଟେକି ଦେଖାଣି ବାହିଁକି ତାର ଅଶ୍ରୁପୂର୍ଣ୍ଣ ଆଖି ଦଇଟିକୁ ଗୃହିଁ ରହିଲା ।

—ଚଉଦ—

ଉମା ତାହାର ଅନ୍ତର ଖୋଲି ଅସୀମ ଦୁଃଖର କାହାଣୀ ଇଶ୍ୱ ପାଖରେ କହିଗଲା । ବାବ ଖୁଡ଼ୀଙ୍କର ଦୁର୍ବ୍ୟବହାର, ନେଶାର ବିଶ୍ୱାସ-ଘାତକତା, ତା ବୋଉର ଅଣହେଲାରେ ପଡି ମରଣ, ଇତ୍ୟାଦି । ଗାଁର ଅଧେ ଲୋକ ଘର ଛାଡ଼ି, ପିଲା କୁଟୁମ୍ବ ଛାଡ଼ି ପେଟଜ୍ୱାଳାରେ ଗାଁ ଛାଡି ଛାଡର ଅନାଶାରେ ବାହାରିଗଲେ । ସେ ଖାଲି ଅଶାରେ ଆଶାରେ ପଡିରହିଛୁ ! କିନ୍ତୁ ତାର ନିରର୍ଥକ ମନବୋଧିଆ ଅଶାଟାର କୁଳ କିନାର କିଛି ନାହିଁ । ବୋଉ ଖାଇବାକୁ ନ ପାଇ ହଇଜା ରୋଗରେ ମରିଛି । ଥଳ କୂଳହୀନ ନିରାଶା ସମୁଦ୍ର ଭିତରେ ତାର ସବୁ ନର୍ଜୀବ ଆଶାଗୁଡ଼ା ସମାଧି ନେଲେଣି । ଜୀବନ ଧରି ରହିବାର ଗୋଟିଏ ବାଟ ଅଛି—ଘରୁ ଗୋଡ଼ କାଢ଼ି ବାଣ୍ଡିକୁ ବାହାରିବା । ହେଲେ ସୁଦୀର୍ଘ ଜୀବନଟା ତ ଖୋଲା ପଡ଼ିଛି । କେତେ ଦିନ ସେ ହାତରେ ଭିକ୍ଷାପାତ୍ର ଧରି ଅନିଶ୍ଚିତର ଅପନ୍ତରରେ ଜୀବନର କ୍ଷୀଣ, ବିପଦସଙ୍କୁଳ ରାହା ଧରି ଗୃଲିବ ? କେତେ ଦୂର ଗୃଲିବ ? ସାହା ସମ୍ବଳ କିଛି ନାହିଁ । ଦୁଃଖ ଦୈନ୍ୟ ଓ ନୈରାଶ୍ୟକୁ ଜୀବନର ସାଥୀ କରି ଭଙ୍ଗ ମନରେ କେତେ ଦିନ ଗୃଲିବ ସେ !

ଯେଉଁ ଦେହଟାକୁ ବଞ୍ଚାଇ ରଖିବାକୁ ମଣିଷ ଏତେ କଷ୍ଟସ୍ୱୀକାର କରେ, ସେହି ଅନଷ୍ଟେତ ଦେହର ଶେଷ ଦଶା ତ ଶ୍ମଶାନ ଭୂଇଁରେ ଅଖି ଆଗରେ । ତେବେ ଅନିତ୍ୟ ଦେହଟା ପାଇଁ ଏତେ କଷ୍ଟ ସହିବା ଅପେକ୍ଷା ଆତ୍ମହତ୍ୟା କରି ମରିବା ଶ୍ରେୟସ୍କର । ଉମାର ଏହାହିଁ ଶେଷ କଥା, ଶେଷ ସିଦ୍ଧାନ୍ତ ।

ଓଡ଼ିଆର ଦୁର୍ଦ୍ଦଶାର, ଓଡ଼ିଆର ଜନ୍ମେଶ୍ୱାଜାର; ଦାରିଦ୍ର୍ୟର ଅନ୍ୟତମ କାରଣ ଏହି ଶ୍ମଶାନ ଭୂଇଁ ପରି ! ମଣିଷର ଜନ୍ମ, ଜୀବନର ପୂର୍ଣ୍ଣ ଉପଭୋଗ ପାଇଁ ; କିନ୍ତୁ ଓଡ଼ିଆର ଜନ୍ମ ସହିବା ପାଇଁ । ସହି ସହି ମଧ

ଯେତେବେଳେ ଅଦିନରେ ଅସମୟରେ ସେ ମଶାଣି ଭୂଇଁରେ ଝଡ଼ିପଡ଼େ, ଜୀବନର ଅନିଶ୍ଚିତତା, ବିଧିର ଅଭିଶାପ, ଚୈତନ୍ୟର ଧର୍ମ ସେ ଗ୍ରହଣ କରେ ଅତି ସହଜରେ । ଜୀବନଟା କେଇ ଦିନ ପାଇଁ । କାହିଁକି ମଣିଷ ସହିବା ଉଚିତ ଆଶା କରିବ—ଶ୍ମଶାନଟା ଯେ ଆଗରେ ଗୃହିଁଛି ।

ନାନା ବିଷୟର କଥାଭାଷା ହେଉଁ ହେଉଁ ରାତି ନେଉଥିଲା, ବେଳ ଗଡ଼ିଲା । ଖରା ତାତି କମି ଆସିଲା । ତତଲା ବାଲି ଶୀତଳେଇ ଆସିଲା । ଉମା ନଈଧାରକୁ ଗୃହିଁ କହିଲା, "ଜଗୁଭାଇ, ମନକୁ ଯେତେ ବୁଝାଇଲେ ମନ ମାନୁ ନାହିଁ, ଦେହ ସହୁ ନାହିଁ । ଧୈର୍ଯ୍ୟ ମଧ୍ୟ ରହୁ ନାହିଁ । ହଉ, କେତେ ଦିନ ଏପରି ଚାଲୁଛି ଚାଲୁ । ଯେଉଁଦିନ ନିତାନ୍ତ ଦଳେଇ ପଡ଼ିବ, ସେଦିନ ମୁଁ ମୋର ଦେଖିଲା କାମ କରିଦେବି । ଜୀବନ ଥିଲେ ସିନା କଷ୍ଟ ?"

ଜଗୁ ଉମାର ଲଙ୍ଗଳା ମୁଣ୍ଡର ଅଳିଆ ବାଳରେ ହାତ ବୁଲଉଥିଲା । ସେ ବିସ୍ମୟରେ ହାତ ଅଟାଇ ତାର ଗାଲରେ ଗୋଟିଏ ଛୋଟ ଗୃପୁଡ଼ା ମାରି କହିଲା, "ପୁଣି ତୋର ସେହି ପାଗଳାମି ? ଯେତେ କହିଲି ଭାଗବତ, ତୋଷ ନ ହେଲା ତୋର ଶତ୍ରୁ ! ଏତେ କଣ ବୁଝାଇଲି ତୋତେ ତ ଭୁ ସେହି ଅବୁଝା । ଆଲୋ, ମରିବାକୁ ତ ଜନମ ହୋଇଥାଇଁ । ସେଠା ନେଲି ସବା ଶେଷ କଥା । ଜାଣୁ ଜାଣୁ କିଏ କାହିଁକି ତା ପାଖକୁ ଧାଉଁଡ଼ି ଯିବ ? କଣ ହେଉଛି ହୋଇଯାଉ ।"

ଉମା ତୁନି ରହିଲା । ଜଗୁ ଭାଇର ମଧୁର କଥା, ମିଠା ବ୍ୟବହାରରେ ସତେ କି ସେ ନୂଆ ଜୀବନ ଲାଭ କଲା । ତାର କରସ୍ପର୍ଶ, ସାନ୍ତ୍ୱନାରେ ସେ ତାର ମାର ମୃତ୍ୟୁଦୁଃଖ ପାଶୋରିଗଲା । ଜୀବନର ଶତ ସହସ୍ର ଦୁଃଖ ଭିତରେ ସେ ଗୋଟିଏ ନୂତନ ଆନନ୍ଦ, ନୂତନ ସୁଖର ସନ୍ଧାନ ପାଇଲା । ବଡ଼ ଅବୋଧ୍ୟ କିନ୍ତୁ ତାକୁ କିଏ ବୁଝାଇଲା । ଭେକର ଦାଉରେ ଦେହ ମନ ମଉଳିପଡ଼ୁଛି । ସେଠା ତ ତାର ଦେହସହା ହୋଇଛି । ଦୁଃଖ କଷ୍ଟରେ ହୃଦୟ ଜର୍ଜରିଛି, ମନ ଭାଙ୍ଗିଛି । ତଥାପି ତାର ଏ ନୂତନ ଅନୁଭୂତିଟିକ ତାର ବିବ୍ରତ ମନକୁ ଅଳ୍ପ ଯେପରି ଚଞ୍ଚଳ କରିଦେଲା । ସେ ତାର ଧଡ଼ିଆ ଦେହଟି ଜଗବନ୍ଧୁର ଦେହ ଉପରକୁ ସାମାନ୍ୟ ଢ଼ଳାଇ ଦେଇ କହିଲା, "ଜଗୁ ଭାଇ ! ମୋତେ ଏ ଦୁଃଖଜଞ୍ଜାଳ ଭିତରୁ ଉଦ୍ଧାରିବାର

କ୍ଷମତା ଯଦି ତମର ନାହିଁ ବୃଥାରେ ଆଶା, ସାନ୍ତ୍ୱନା ଦେଇ ସ୍ଥିର ବାଟରୁ ମନକୁ ମୋର ଫେରାଇବାର ଚେଷ୍ଟା କରୁଛ କାହିଁକି ?"

ସେ ମୁହଁ ଫେରାଇ ଜଗୁର ବିସ୍ମିତ ଆଖି ଦିଓଟିକୁ ଚାହିଁଲା । କେଜାଣି କାହିଁକି ଧାର ଓଠ ଥରିଉଠିଲା ଅଜ୍ଞର ଥରେ । ଶୁଖିଲା ଗାଲ ଦିଓଟି ସାମାନ୍ୟ ରଙ୍ଗେଇ ଉଠିଲା ଯେପରି । ଦେହଟା ଆତୁର ଅବଶ ଲାଗିଲା । ସେ ଜଗୁର ହାତରେ ହାତ ରଖି କୁଣ୍ଠି ନୁଆଁଇଲା । ଜଗୁର ଆଖି ଅଲୁଅ ତେଜ ଉଠିଲା । ସେ ଉମାର ଥରିଲା ପାପୁଲିକୁ ମୁଠାଇ ଧରି ସାମାନ୍ୟ ଚାପ ଦେଇ କହିଉଠିଲା—"ଏପରି କହୁଛ କାହିଁକି ଉମି ? ମୁଁ ଯେ କାହାର ନୁହେଁ । ମୁଁ ଇଚ୍ଛା କଲେ ସହଜରେ ତୋତେ ଏ ଦୁଃଖଜଞ୍ଜାଳରୁ ଉଦ୍ଧାର କରି ପାରିବି । ମୋ କାର୍ଯ୍ୟରେ ବାଧା ଦେବାକୁ ନରପୁରରେ କେହି ନାହିଁ । କିନ୍ତୁ କହିବାକୁ ତ କେହି ମନା କରିବ ନାହିଁ, କାହା ପାଟିରେ କିଏ ବାଡ଼ବତା ଦେବ ? ଖାଲି ଲୋକଲଜ୍ଜାକୁ ଡ଼ରିବା କଥା !"

ତଳକୁ ମୁହଁ ପୋତି ଉମା ଥରିଲା କଣ୍ଠରେ କହିଲା—"ହିଁ, ଲୋକ ଲଜ୍ଜା !"

"ନୁହେଁ ତ ଆଉ କଣ ? ନୋହିଲେ ତୋତେ ଉପାସ ଶୋକରେ ସଢ଼ିବାକୁ ଛାଡ଼ି ଦିଅନ୍ତି ! ମୁଠାଏ ଖାଇବାକୁ ଦେଇ ତୋର ପ୍ରାଣ ରଖିବାର ଶକ୍ତି କଣ ମୋର ନାହିଁ ? ଇଚ୍ଛା କଣ ହେଉ ନାହିଁ ? ନାଚାର, କଣ କରିବି ?"

ଉମା ଭାବିବାକୁ ଲାଗିଲା—ଯଦି ଏତେ ଦୁର୍ବଳ ତମେ, ତମର ଶକ୍ତି ବା ଇଚ୍ଛା ଥିବା ନ ଥିବାରେ ଉମାର ଲାଭ କ୍ଷତି କିଛି ନାହିଁ । ତେବେ ଭବିଷ୍ୟତର ବୃଥା ପ୍ରଲୋଭନ କାହିଁକି ? ବର୍ତ୍ତମାନ ବା ତାକୁ ଚଞ୍ଚଳ ବିକଳ କରିବାରେ କି ଲାଭ ଅଛି ? ତମେ ତମର ସୁଖରେ ରହ, ଉମା ତାର ଭାଗ୍ୟ ଅନୁସରଣ କରୁ । ସେ କାହିଁକି ଗୋଟାଏ ଛାଇକୁ ଧରିବାକୁ ହାତ ବଢ଼ାଇ ପଦ ପଦକେ ଅପଦସ୍ଥ ହେଉଥିବ ?

ଉମା ଦୁଃଖରେ ତାର ହାତଟିକୁ ଜଗବନ୍ଧୁର ହାତ ଭିତରୁ ଟାଣି ଆଣିବାକୁ ଚେଷ୍ଟା କଲା ଧୀରେ ଧୀରେ । ବିଫଳ ହୋଇ ଭଙ୍ଗା ସ୍ୱରରେ କହିଲା—"ଗରିବର ଦୁଃଖ ଶୁଣିବାକୁ ଅନେକ ବେଳ ବସିଗଲ ଏଠି ଜଗୁ-

ଭାଇ ! ଭୋକ କରୁଥିବ, ଘରକୁ ଯାଅ । ବାଳ ଅଣ୍ଡା ହୋଇ ଆସିଲଣି, ମୋ ହାତ ଛାଡ଼, ମୁଁ ଧାରକୁ ଯାଏ । ଖତ୍ରୀ ମୋତେ ଗୃହଁ ରହୁଥିବ ତେଣେ । ଏତେ ଡେର ହେଲଣି । କେଜାଣି ଆଜ କପାଳରେ କ ଦଶା ଅଛି ।” କହୁ କହୁ ପୁଣି ତାର ଅଖି କୋଣ ଲକେଇ ଅସିଲା । ସେ ଲଗୁର ମୁହଁକୁ ଗୃହଁଲା ।

ଜମାର କରୁଣ ଦୃଷ୍ଟି ଦେଖି, ଅଭିମାନିଆ ଭାଷା ଶୁଣି ଲଗୁ ମନରେ ଦୁଃଖ ହେଲା ଅତ୍ୟନ୍ତ ବେଶି । ତାର ଅଖିରୁ ଝରିଅସୁଥିବା ଲୁହଧାର ଦେଖି ସେ ତାର ଅନ୍ତର ଭିତରେ ସେପରି ଅସହ୍ୟ ବେଦନା ଅନୁଭବ କଲା । ସେ ଭାବିବାକୁ ଲାଗିଲା—ସତରେ ଏଇ ଜମାର ଦୁଃଖ କାହାଣୀ ଥରକୁ ଥର ଶୁଣିବା ଛଡ଼ା ସେମାନଙ୍କର ଦୁଃଖ ଦୂର କରିବାକୁ ସେ ତ କିଛି କରିପାରି ନାହିଁ ଅଦ୍ୟାପି । ତାର କର୍ତ୍ତବ୍ୟରେ ସେ ହେଳା କରିଛି ଲୋକଲଜ୍ଜାକୁ ଡ଼ରି । ଲୋକଙ୍କର କଟାକ୍ଷକୁ ଏଡ଼ି ଯଦି ମଣିଷ ପରି ସାହସ ଦେଖାଇ ଆଗରୁ ପ୍ରତିକାର କରିବାର ଚେଷ୍ଟା କରିଥାନ୍ତା, ହୁଏ ତ ଜମା ବୋଉ ଏପରି ଭାବରେ ଅକାଳରେ ମରି ନ ଥାନ୍ତେ । ଜମାର ଦୁର୍ଦ୍ଦଶା ପାଇଁ ସେ ତ କମ୍ ଦାୟୀ ନୁହେ ତେବେ !

ଦୂରରେ ଠିଆହୋଇ କେଉଁ ପାଣି କେଉଁ ସୁଅରେ ଯାଉଛି ଦେଖି-ବାକୁ କଷ୍ଟକର । ପରି ଗୃହଁ ରହିବାର ବେଳ ଆଜ ନାହିଁ । ଯିଏ ଯାହା ଭାବୁ, ଯିଏ ଯାହା କହୁ, ଆଗକୁ ଅସି ପ୍ରତିକାର କରିବାର ବେଳ ପଡ଼ିଛି । ନୋହିଲେ ଜମା ମଧ୍ୟ ଅଚିରେ ତାର ମାଆ ଗତି ଅନୁସରଣ କରିବ । ଜୀବନମରଣ ସମସ୍ୟା । ଲୋକଲଜ୍ଜାକୁ ଡ଼ରି ଖାଲି ଗୃହଁ ବସିଲେ ସର୍ବନାଶ ହେବ ।

ଲଗୁର କୋମଳ ମନ ବିଗଳିତ ହେଲା । ସେ କହିଲା—“ଜମା, କେତେ ଦିନ ହେଲା ତୋ ପେଟରେ ଦାନା ପଡ଼ି ନାହିଁ, ତୋର ଦୁର୍ବଳ ଦେହ, ମଳିନ ରୂପ, ନିସ୍ତେଜ ଅଖି ଦେଖି ମୁଁ ବେଶ୍ ବୁଝିପାରୁଛି । ଦୁର୍ବଳତା ହେତୁ ତୋର ହାତଟା ମୋର ମୁଠା ଭିତରେ ହେଇ ଥରି ଉଠୁଛି । କେବଳ ମୋର ଝିଅ ହେଲା ନାହିଁ ବୋଲି ଭୋକ କରୁଥିବ କହି ମୋତେ ବିଦାୟ ଦେଉଛୁ; କିନ୍ତୁ ଜାଣି ଜାଣି ମୁଁ ତୋତେ ଛାଡ଼ିଯିବି କିପରି ?”

ଉମା ଅଭିମାନରେ କହିଲା—"ଲୋକଲଜ୍ଜା ପରା !" ସେ ମୁହଁ ବୁଲାଇଲା ।

ଜଗୁ ଗମ୍ଭୀର ହେଲା । କହିଲା—"ସେ ଭୟ ମୋର ତ ହେବାର କଥା ନୁହେ । ଲୋକେ ବୁଝନ୍ତି ଅନ୍ୟ ପ୍ରକାର । ଲୋକ ଅପବାଦକୁ ତୋର ଭୟ ନାହିଁ, ମୁଁ ବି ଡରିବି ନାହିଁ । ଜୀବନ ରହୁ, ଦୈନିକ ଭଲମନ୍ଦ, ଆଗର ବିଗର ଭୟ ନାହିଁ ଉମୀ ! ଭୟ ନାହିଁ । ବୋଝ ମଲା ତୋତେ ମୋର ଆଶ୍ରାରେ ଛାଡ଼ି । ମୁଁ ଏଥର ମୋର ବୋଝ ମୁଣ୍ଡାଇବି ନଷ୍ଟେ...।"

ଉମା ଲୁଗା କାନିରେ ଆଖି ପୋଛିଲା ।

ଜଗୁ କହିବାକୁ ଲାଗିଲା, "ମୁଁ ବୁଝୁଛି, ଦାଦି ଖୁଡ଼ୀଙ୍କି ତୋର ପ୍ରାଣେ ଡ଼ର । ମୋ ସଙ୍ଗେ କୌଣସି ପ୍ରକାର ସମ୍ବନ୍ଧ ରଖିଲେ ହୁଏ ତ ସେମାନେ ତୋ ଉପରେ ଚିଡ଼ି ପାରନ୍ତି, ଶେଷକୁ ଘରୁ ବାହାର କରିଦେଇ ପାରନ୍ତି; କିନ୍ତୁ ଉଜ୍ଜଣୀ ସେଥିଲା ଭାବନା ନାହିଁ । ମୁଁ ଯଦି କେବେ ମୁଠିଏ ଖାଇବାକୁ ପାଏ, ସେଥିରୁ ତୁ ନିଶ୍ଚୟ ଅଧେ ଭାଗ ପାଇବୁ । ତୋର କିଛି ଆପତ୍ତି ନାହିଁ ତ ଉମା ! ସତ କହିଲୁ ?"

କୃତଜ୍ଞତାରେ ତାର କଣ୍ଠ ରୁଦ୍ଧ ହୋଇଆସିଲା । ସେ ଉତ୍ତର ଦେଇ ପାରିଲା ନାହିଁ । ଟିକିଏ ଅପେକ୍ଷା କରି ଜଗୁ ଢ଼ଳଢ଼ଳ ଆଖିରେ ପୁଣି କହିଲା, "କହ,କହ ଉମୀ ତୋର କିଛି ଆପତ୍ତି ନାହିଁ ତ ?" ସେ ଉମାର ମୁଣ୍ଡକୁ ତା କୋଳକୁ ଆଉଜାଇ ଆଣିଲା । ଶିଶୁଟି ପରି ତାର ଲଲାଟରେ ହାତ ବୁଲାଇଲା ।

ଉମା ଧୀରେ ଧୀରେ କହିଲା, "ଆପତ୍ତି ଅଉ କଣ, ...?"

"ବେଶ୍ ବେଶ୍ ସେଇଆ କହ !" ଜଗୁ ଉତ୍ତେଜନାରେ ମୁଣ୍ଡ ନୁଆଁଇ ଉମାର ଗଣ୍ଡରେ ଚୁମ୍ବନ କରି କହିଲା, "ଠିକ୍ କଥା ! ଯେଉଁ ଦିନ ତୋର ଜଗୁ ଭାଇ ଛତରରେ ପଶିବ, ତୁ ବି ତାର କାନି ଧରି ତା ପଛେ ପଛେ ଗୋଡ଼ାଇଯିବୁ, ନା ? ଲୋକେ ପଛରେ ଥାଇ ଯେତେ ହସିବାର ହସୁଥାନ୍ତୁ । ଏହି ହାତରେ ମାହାର୍ଦ ଧରିଥିଲି । ଯେତେ ବଡ଼ ହେଲେ ବି ମୋ ଆଖିରେ ତୁ ସେଇ ସାତ ବର୍ଷର ପିଲାଟା ସବୁଦିନେ ! ନାହିଁ ଲେ ?"

ଆନନ୍ଦରେ ଉମାର ଆଖିପତା ମୁଦ ହୋଇଆସିଲା । ଜଗୁର କୋଳରେ ସେ ଦୁଇଟି ଶୀର୍ଣ୍ଣ ହାତ ବଢ଼ାଇ ଜଗୁର ବେକରେ ଲମ୍ବାଇ ଦେଲା—ସତେ କି ଦୁଇ ବର୍ଷର ଶିଶୁଟି । ଜଗୁ କହିଲା, "ଉଠ୍ ଉମୀ, ସବୁ ଦୁଃଖ ସବୁ ପାଗଳାମି ତୋର ଦୂରକୁ ଫିଙ୍ଗିଦେ । ବୋଉ ମରିଛି ପରା । ଛଇ ଲେଉଟିଲାଣି । ଆ, ଭାଇଭଉଣୀ ଦୁହେଁ ମୁଣ୍ଡ ଧୋଇ ଗାଧୋଇ ଆସିବା । ଆ—ତ—।"

—ପନ୍ଦର—

ଜଗୁ ଉମାକୁ ସାଙ୍ଗରେ ନେଇ ଯେତେବେଳେ ଗୋବିନ୍ଦ ସାହୁ ଘରେ ପହଞ୍ଚିଲା, ସେତେବେଳକୁ ସୂର୍ଯ୍ୟ ପ୍ରାୟ ବୁଡ଼ିବା ଉପରେ । ଉମା ଓଦା ଲୁଗା ପିନ୍ଧି ଜଗୁର ଗାମୁଛାଟି ମୁଣ୍ଡରେ ପକାଇ ଆଗେ ଆଗେ ଚାଲିଛି, ଅଣ୍ଟା ଉପରେ ପାଣି ମାଠିଆ ଧରି । ତା ପଛରେ ଜଗୁ—ଗୋଟିଏ ହାତରେ ଠେଙ୍ଗା, ଆର ହାତରେ ପାଣି ମାଠିଆଟିଏ; ତାର ପିନ୍ଧିଥିବା ଖଦ ଲୁଗାଟି ମଧ୍ୟ ପାଣିରେ ଜୁଡ଼ୁବୁଡ଼ ହୋଇଛି ।

ମାଠିଆଟି ପିଣ୍ଡା ଉପରେ ରଖି ଠେଙ୍ଗାଟି କାନ୍ଥକୁ ଆଉଜାଇ ଜଗୁ ପ୍ରଥମେ ଘର ଭିତରକୁ ପଶି ବଡ଼ପାଟି କରି ଡାକ ଛାଡ଼ିଲା—"ମାଉସି !" ରେଣୁ ବୋଉ ରେଣୁକୁ କାଖରେ ଧରି ଘର ଭିତରୁ ବାହାରିପଡ଼ିଲେ । ଆଗରେ ଜଗୁକୁ ଦେଖି ସେ ଚମକି ପଡ଼ିଲେ । କେଜାଣି କଣ ଉପଦ୍ରବ ଆରମ୍ଭ କରିବ ସେ । ମନରେ ଟିକିଏ ଭୟ ହେଲା; କିନ୍ତୁ ଜଗୁ ରେଣୁ ବୋଉଙ୍କୁ ଦେଖି ପେଟ ଭିତରେ ଘାଣ୍ଟି ହେଉଥିବା ସବୁ ରାଗରୋଷକୁ ଚାପି ରଖି ମୁଣ୍ଡ ନୁଆଇଁ ତାଙ୍କୁ ପ୍ରଣାମ କଲା ।

ରେଣୁ ବୋଉ ହସହସ ହୋଇ ପଚାରିଲେ, "ଏ ଅପୂରୁବ କୁଆଡ଼େ ମ ? ମାମୁଁଘରକୁ ଯାଇଥିଲୁ ପରା ? ମାମୁଁଘର ଭାତ ଖାଇ ମୁହଁ ଏମିତି ଶୁଖି-ଯାଇଛି କି ?"

ଜଗୁ ବି ସାମାନ୍ୟ ହସି କହିଲା, "ଅବକା ତ ଫେରୁଛି... ।"

"ହଉ, ଭଲ କଲୁ ବାପ ! ବସି ଯା ଟିକେ—।" ରେଣୁକୁ କାଖରୁ ଓହ୍ଲାଇ ସେ ନିଜେ ଖଣ୍ଡେ ଛିଣ୍ଡା ଅଖା ଆଣି ପିଣ୍ଡାରେ ପକାଇଦେଲେ । "ଚାଲି ଚାଲି ଆସିଛୁ, ଗୋଡ଼ ଥକି ଯାଇଥିବ, ବସ୍...।"

ଜଗୁର ରୂପକୁ ଚାହିଁ, "ଏଁ, ଓଦାଲୁଗା ଯେ !"

"ହଁ, ଖରାରେ ଚାଲି ଚାଲି ଆସି ଦେହ ଗରମ ହେଲା ବୋଲି ନଈ ଧାରରେ ଗାଧୋଇ ପଡ଼ିଲି ।"

ଜଗୁ ଅଖା ଉପରେ ବସିଲା ରେଣୁ ବୋଉ କାନ୍ଥକୁ ଆଉଜି ବସି ରେଣୁକୁ କୋଳକୁ ଆଣି କହିଲେ, "ଭଲ କଲୁ । ଯେଉଁ ତାତି ପଡ଼ୁଛି, ଦେହହାତ ସତେ କି ଜଳିଯାଉଛି ।" ଉମା ଦୁଆର ଚାଳର ଖୁଣ୍ଟକୁ ଆଉଜି ଠିଆହୋଇଥିଲା । ତାକୁ ଚାହିଁ କହିଲେ—"ସେଠିଟାରେ କାହା ପରି କାହିଁକି ଠିଆହୋଇଛୁ ଉମୀ ! ପିଣ୍ଡା ଉପରକୁ ଆ, ଓଦା ଲୁଗାଟା ବଦଳି ପକା ଯା ଅଲଗୁଣିରେ "ମା ଗାମୁଛା ଅଛି... ।"

ଉମା ମୁଣ୍ଡର ଲୁଗା ଟାଣି ପିଣ୍ଡା ଉପରକୁ ଉଠିଲା, ନଇଁପଡ଼ି ହାତ ଦେଇ ଦୁଇ ଜଣଙ୍କ ମଝିରେ ଘର ଭିତରକୁ ଗଲା । ରେଣୁ ବୋଉ ତା ଆଡ଼କୁ ମୁହଁ ଫେରାଇ ବ୍ୟସ୍ତ ହୋଇ କହିଲେ—"ଲୁଗାଖଣ୍ଡ ହକାଳି ଆସିବାକୁ ଦିନ ଦି ପହରୁ ଗଲୁଣି, ଫେରୁ ଫେରୁ ତୋର ସଞ୍ଜ ବୁଡ଼ିଲା ! ଏ ଯେଉଁ ଖରା, ପଦାକୁ ବାହାରିଲେ ତାଳୁ ଫାଟିଯାଉଛି । କୁଆଡ଼େ ରହିଗଲୁ ?"

ଜଗୁ କହିଲା—"ମୁଁ ଫେରିଲା ବେଳକୁ ତାକୁ ନଈକୂଳ ଆମ୍ବଗଛ ମୂଳରେ ଦେଖିଲି । କୁଆଡ଼େ କେହି ନାହିଁ—ପିଲା ଲୋକ, ଖରା ତାଢରେ ଏକୁଟିଆ ବସି କାନ୍ଦୁଛି ।"

"ଆଉ କାନ୍ଦିଲେ କି ହେବ ଲୋ ମା ! ଯେ ମରିଛି, ସେ ଆଉ ଫେରିବ ନାହିଁ । ମନକୁ ବୋଧଶୋଧ ଦେଇ ନିଜେ କିପରି ବଞ୍ଚିବା ସେ କଥା ଆଗ ବିଚାର । ନିଜେ ଭଲ ତ ଦୁନିଆ ଭଲ । ଖାରେ ପୁଅ ?"

"ହଁ, ତା ନୁହେଁ କିଣ ! ବୋଉ ମଲା, ଉମୀକୁ ତମର ହାତରେ ସମର୍ପି ଦେଇଗଲା । ତାର ଆଉ କିଏ ଅଛି ? ତମେ ଯଦି ନ ଚାହିଁବ ସେ ଛତରକୁ ଯିବ ସିନା ।"

"କାହିଁକି ? ଆମେ କଣ ତାକୁ ଅଣଦେଖା କରୁଛୁ ? ତେବେ ଯାହାର ଯେତିକି ଶକ୍ତି ସେ ସେତିକି ବୋଝ ମୁଣ୍ଡାଇବ ସିନା । ଆମେ ତ କପାରିଲୁ ନାହିଁ… ।"

ହସି ହସି ଜଗୁ କହିଲା—"ସେ କଥା କହିଲେ କିଏ ଶୁଣୁଛି ? ଭଲ-ମନ୍ଦକୁ ଯିଏ ଜାଣିବ ତାକୁ କହିବ । ଉମା ଦାଣ୍ଡକୁ ବାହାରିଲେ ଲାଜ କାହାକୁ ?"

ରେଣୁ ବୋଉ କଣ ଭାବିବାକୁ ଲାଗିଲେ ।

ଜଗୁ କହିଲା—"ମାର ତାର ଯାହା କର, ସେ ଯେପରି ମୁଠିଏ ଖାଇବାକୁ ପାଏ ।"

"ସବୁଦିନେ କାହୁଁ ପାଇବ୍ରୁ ବାବୁ ? ଯେତେ ଦିନ ଚଳୁଛି ଚଳୁ । ଶେଷକୁ ସଭିଙ୍କୁ ତ ଛତର ଖୋଜି ଘରୁ ଯିବାକୁ ହେବ । ଜୀବନ ଉପରେ ପଡ଼ିଲେ ଲାଜସରମ ଭଲମନ୍ଦ ମାନମର୍ଯ୍ୟାଦା ଲୋକହସାକୁ ପଚାରେ କିଏ ?"

ଜଗୁ ଚିନ୍ତା କରିବାକୁ ଲାଗିଲା । ହଠାତ୍ ରେଣୁ ବୋଉଙ୍କ କଥାର ଧରଣଟା ଏପରି ବଦଳିଗଲା କିପରି ? ତାକୁ ଦେଖିଲେ ଯେ ଆରମ୍ଭରୁ ଚିଡ଼ିଚିଡ଼ି ହୁଅନ୍ତି, ଆଜି ଏପରି ଭଦ୍ରଭାବରେ ଆଦର ଦେଖାଇ ଅହ୍ଲାଦରେ ମନ ଖୋଲି ସବୁ କହୁଛନ୍ତି ଅତି ଆପଣାର ଲୋକ ପରି । କି ସୌଭାଗ୍ୟର କଥା ! ହଁ, ମଣିଷର ମନ, ମଣିଷର ପ୍ରକୃତି ସାମାନ୍ୟ ସାମାନ୍ୟ ଘଟଣାରେ ବଦଳି ଯାଇପାରେ । ଉମା ବୋଉଙ୍କର ମୃତ୍ୟୁର ପ୍ରଭାବରେ ଏହାଙ୍କ ମନରେ ଅନୁତାପ ଆସିଛି । କ୍ଷଣିକ ହେଉ ପଛେ ଉମାର ଦୁରବସ୍ଥା ଦେଖି, ଦୁର୍ଦ୍ଦଶା କଥା ଭାବି ତାଙ୍କ ମନରେ ପରିବର୍ତ୍ତନ ଆସିବା ସମ୍ଭବ । ମଣିଷର ହୃଦୟ ତ ଲୁହା ପଥର ନୁହେଁ । ଲୁହା ବାଙ୍କି ପାରେ, ପଥର ଭାଙ୍ଗି ପାରେ, ହୃଦୟଟା ତରଳିବ ନାହିଁ ?

ସେ ଖୁସି ହୋଇ କହିଲା, "କାହିଁକି, ଦୁନିଆରେ କେଉଁ କଥାଟା ଅଟଳ ରହିଯାଇଛି ? ତମେ ଯଦି ଗରିବ ଉମା ପାଇଁ ଛିଡ଼ି ପଡ଼ିବ, ତାକୁ ଆଦର ସ୍ନେହ କରିବ, କୋଳକୁ ଟାଣି ନେବ, ତମ ପ୍ରତି ଠାକୁରେ ସନ୍ତୁଷ୍ଟ ହେବେ । ତମର ଦୁଃଖ ସେ ନିଶ୍ଚୟ ହରଣ କରିବେ ।"

ରେଣୁ ବୋଉ କପଟ ଭାବରେ ତାଙ୍କର ମନ କଥାଗୁଡ଼ିକ କହି ଜଗୁର ମନ ନେବେ, କିଛି ସ୍ଥିର କରି ପାରିଲେ ନାହିଁ । କହି କହି କଣ କହି ଦେଉଥିବେ, ଜଗୁ ଯେପରି ଆଣ୍ଠୁଆ ପିଲା କାଳେ ବିରକ୍ତ ହେଉଥିବ, ସେଥିକି ତାଙ୍କର ପ୍ରାଣେ ଡ଼ର । ସେ ରହି ରହି କହିଲେ, "ଠାକୁରେ ତ ଏଛ କଥା । ତୁ ଯଦି ମନକରୁ ଗୋଟାଏ ଗରିବ କୁଟୁମ୍ବ କଣ ଖାଇବା ବିନା ଉପାସରେ ମରିବେ ? ସେହି ଉମୀ କଥା ମୁଁ କହୁଛି । ଉମୀଠେଇଁ ତୋର ଯେପରି ଶରଧା, ଆହା ! କଣ ଲୋକଟି କଲ ! ତୁ ଚାହିଁଲେ କଣ ସେ ଚଳିଯିବ ନାହିଁ ?"

"ମୋତେ ତା ପାଇଁ ଯାହା କରିବାକୁ କହିବ, ମୁଁ ରାଜି ଅଛି । କେଜାଣି କାହିଁକି ତାର ଦୁଃଖ କଷ୍ଟ ଦେଖିଲେ ମୋତେ ଭାରି କଷ୍ଟ ଲାଗେ ।"

"ଲାଗିବାର ତ କଥା । ତା ଠେଇଁ ତୋର ଯେପରି ସ୍ନେହ... । ହେଲେ ଖାଲି ଉପରଠାଉରିଆ ଶୁଖିଲା ସ୍ନେହ କଲେ ତାର ଦୁଃଖ ଯିବ ନାହିଁ, କି କାହାର ଦୁଃଖ ଯିବ ନାହିଁ ।"

ଉମାକୁ ଲକ୍ଷ୍ୟ କରି କହିଲେ, "ଆଲୋ ଉମୀ, ଗାଧୋଇ କରି ଆସିଛୁ, ପାଣି ଧରିବ । ସଙ୍ଗା ଉପର କାଇଁଚ ପାତିଆରେ ମୁଡ଼ି ଅଛି, ଗଣ୍ଡାଏ ପାଟିକି ପକାଇ ଦେ । ହଁ, ବେଳ ଯେମିତି ଏଥିରେ ମୂର୍ତ୍ତିକିଆକୁ କାଏ ସିଦ୍ଧି ବଢାଇବାକୁ ଯାଉଛୁ ? ସାତ ଦିନରେ ପଞ୍ଚାମୃତ ପାଣି ଛୁଇଁ ହାଣ୍ଡି ବଦଳାଇ-ଦେଲେ ଗଲା ।"

ଜଗୁ କହିଲା, "ସୁବିଧା ଅସୁବିଧା ଦେଖି ସବୁ... ।"

"ଆରେ ପୁଅ, ତୁ ଓଦାଲୁଗା ପିନ୍ଧି ବସିଲୁ, ଗାମୁଛାଟା ବଦଳ ପକା... ।"

"ଥାଉ ଖରାଦିନ ତ... ।"

"ହଁ, କଣ କହୁଥିଲି—ପୁଅ, ମନରେ କିଛି ଦେଖିବୁ ନାହିଁ । ଯେତେ-ବେଳେ ଚଳେ ଥିଲି, ମୁଁ କହି କହି ଥକିଗଲି । ଇଏ ତ ଗଞ୍ଜେଇ ଧୂଆଁ ଟାଣି ଭୋଳ, ମୋ କଥାରେ କାଏ କାନ ଦେଉଛି ? ମୋ ସାନକୁହା ମାନ ଯଦି କେଉଁଠି ହେଲେ ଉମାକୁ ନେଇ ଛନ୍ଦି ଦେଇଥାନ୍ତେ, ଏତେବେଳକୁ ତା ନେଇ ଭାବନା ପଡ଼ିଥାନ୍ତା କାହିଁକି ?"

"ଯାହା ହୋଇ ନାହିଁ, ଅବକା ସେ କଥା ତ ହୋଇ ପାରିବ ନାହିଁ ।
ଏ ବର୍ଷଟା କଟୁ ।"

"କଟିବ କେମିତି ? ଯେଉଁ ଅଭାବ...।"

"ଉମା ବୋଉ ଯେତେବେଳେ ମୋ ହାତକୁ ମାହାର୍ଦ୍ଦ ଦେଉଛ, ତା ପାଇଁ ଯାହା ଖର୍ଚ୍ଚ, ମୁଁ ଦେବି । କିନ୍ତୁ ବୁଝି ଖବରଦାର୍ ଏ କଥା ଯେମିତି ବାପାଙ୍କ କାନକୁ ନ ଯାଏ...।"

"ସେହି ତ ଅଡୁଆ । ତା ନ ହେଲେ ଉମାକୁ ତ ତମ ଘରେ କିଛିଦିନ ରହିବାକୁ ଛାଡ଼ିଦିଅନ୍ତି । ଲୋକେ ଦେଖି ନ ପାରି ସହି ନ ପାରି କହିବେ । କହିଲେ କିଏ ଶୁଣୁଛୁ ? ଗାଁଟାରେ ତ ଏତେ ଲୋକ, କହିବାକୁ ସମସ୍ତେ । ବିପଦ ଆପଦ ବେଳେ କିଏ ଆସି ଦୁଆରେ ଗୋଡ଼ ଦେଲା ।"

ଜଗୁ ମୁହଁରେ ହାତ ବୁଲାଇ କହିଲା, "ଏ ଗାଁ ଲୋକଙ୍କୁ ମୁଁ ଘିଏ କୁଟା ପରି ଦେଖେ ନାହିଁ ; ତମକୁ ବି ଏ କଥା କହିବାକୁ ପଡ଼ି ନ ଥାନ୍ତା । ଉମା ମୋର ଭଉଣୀ । ସେ ତମମାନଙ୍କ ଦାଉ ସହି, ଗଞ୍ଜଣା ସହି, ଉପାସ ଭୋକରେ ତମରି ଗୋଡ଼ତଳେ ପଡି ଶୁଖି ଶୁଖି କଳାକାଠ ହୁଅନ୍ତା ? ମୋର ଯଦି ଶକ୍ତି ଥାନ୍ତା, ସ୍ୱାଧୀନତା ଥାନ୍ତା, ମୁଁ ଏକଥା କରେଇ ଦିଅନ୍ତି ନାହିଁ । ତମ କହିବା ଆଗରୁ ମୁଁ ତାର ହାତ ଧରି ଘରକୁ ନେଇଯାନ୍ତି, ବୁଝିଲ ମାଉସୀ !" ଘୃଣାରେ ତାର ନାକପୁଡ଼ା ଫୁଲିଉଠିଲା । ସେ ପୁଣି କହିଲା, "ଲୋକେ ଥଟ୍ଟା କରିବେ । ତମେ ବି ଥଟ୍ଟା କରୁଛ । ତମରି ମନ ଯେମିତି, ଭାବନା ଯେମିତି, ପ୍ରକୃତି ସେମିତି, କଥା ବି ସେମିତି । ତମରି ଥଟ୍ଟା ତାମସାକୁ ଜଗୁ କି ଖାତିର କରିବା ଲୋକ !"

ରେଣୁ ବୋଉ ହସି ହସି କହିଲେ, "ପୁଅ, ମୁଁ ତ ଠାହି କରି ନାହିଁ, ତୁ ସେ ଦିନ ବୁଝିଲୁ ଓଲଟା । ତୁ ଯଦି ଜାତପୁଅ ହୋଇଥାନ୍ତୁ... । ସତ କହିଲୁ, ଉମା କଣ ଛୋ ଲକ୍ଷ୍ମୀ ନୁହେଁ ? ପାଞ୍ଚଖଣ୍ଡ ଗାଁରେ ଉମା ପରି ସୁନ୍ଦର ଲକ୍ଷ୍ମୀ ପିଲାଟାଏ ବାହାରି କଲୁ ଦେଖି ?" ସେ ଘର ଭିତରକୁ ଗଲେ । ଉମା ଓଦା ଲୁଗାଟି ଶୁଖାଇବାକୁ ପଦାକୁ ଆସୁ ଆସୁ ଖୁଡ଼ୀର କଥା ଶୁଣି ଓଢ଼ଣା ଟାଣି ଫେରିଗଲା । କେଜାଣି କାହିଁକି ତାର ମୁହଁଟା ରକ୍ତହୀନ ଦେଖାଗଲା, ଛାତି ଦାଉଁ ଦାଉଁ ପଡ଼ିଲା । ସତେ କି ଗୋଡ଼ ହାତରୁ ପ୍ରାଣ ଛାଡ଼ିଆସୁଛି ।

ଖୁଡ଼ୀଙ୍କର ଅଜବାର ବ୍ୟବହାର ଦେଖି, କଥାଭାଷା ଶୁଣି ସେ ଆରମ୍ଭରୁ କଛି ବୁଝି ପାରୁ ନ ଥିଲେ । ଏତେ ଶୀଘ୍ର ମଣିଷର ଏପରି ପରିବର୍ତ୍ତନ ହୁଏ କ ? ଅସମ୍ଭବ ! ଖୁଡ଼ୀଙ୍କର ପ୍ରତ୍ୟେକ କଥାର କଛି ଗୋଟାଏ ଭିତର ଅର୍ଥ ଅଛି, ଉଦ୍ଦେଶ୍ୟ ଅଛି । ଉଦ୍ଦେଶ୍ୟ ଯାହା ହେଉ, ଉମାର ସେଥିରେ ଯାଏ ଆସେ କଣ ? ସେ ତ ଗୋଟାଏ ଗୋଡ଼ ଘର ଭିତରେ ରଖି ଆର ଗୋଡ଼ ଦାଣ୍ଡକୁ ଟେକିଛି ! ତା ନାମରେ ଲୋକେ ପାଞ୍ଚ କଥା କହିଲେ କ ତାର ଚରିତ୍ର ବ୍ୟବହାର ନେଇ ପ୍ରତିବାଦ କଲେ ସେ ଶୁଣିବ କାହିଁକ ? ଖାତର କରିବ କାହିଁକ ? ଲୋକଙ୍କର ଅଲଣା ମୁଅଗ ସହାନୁଭୂତିରୁ ତାକୁ ମିଳିବ କଣ ? ସେ ଯଥେଷ୍ଟ ସହିଛି, ଯଥେଷ୍ଟ ବରଦାସ୍ତ କରିଛି । ଏଣିକ ଅଉ ସେ ଦବି ରହିବ ନାହିଁ, ତ୍ରିହର ପଥର ପରି ସର୍ବସହଣୀ ହୋଇ ମଥା ନୁଆଇଁ ଅପସରିଯିବ ନାହିଁ । ତାକୁ ଯେ ପଦେ କହିବ, ସେ ତାର ଯଥାର୍ଥ ଉତ୍ତର ତାର ମୁହେଁ ମୁହେଁ ଦେବ ଅବଶ୍ୟ । ବିପଦ ଆସିବା ଯାଏ ସିନା ଭୟ ? ଆସିଗଲେ ତ କଥା ସରିଲା ।

ରେଣୁ ବୋଉଙ୍କ କଥା ଶୁଣି ଜଗୁ ବ ଅନେକ ଭାବିଲା । ଲୋକଙ୍କ ଢଙ୍ଗ ଦେଖ । ବଡ ସହଜରେ ଲୋକେ ବହୁତ କଥା ଅନୁମାନ କରି ନଅନ୍ତି । ଯେତେ ଦ୍ୱାହି ଦେଲେ ବ ସେମାନଙ୍କର ପତିଆରା ଆସେ ନାହିଁ । ଆଛା, ଦେଖାଯାଉ, ସେମାନଙ୍କର ଉଦ୍ଦେଶ୍ୟଟା କଣ । ଅନୁମାନକୁ ପକ୍ଷୀ ବାନ୍ଧି କେତେ ଉପରକୁ ଉଡ଼ଯାଇ ପାରନ୍ତି । ସେ ମନେ ମନେ ହସି ଟିକଏ ଜୋରରେ କଟିଣ କଣ୍ଠରେ କହିଲା, "ଉମା ମୋ ଲକ୍ଷ୍ମୀ କ ନୁହେଁ, ସେ କଥା ମୁଁ ଜାଣେ ନାହିଁ । ତାକୁ ମୁଁ ସୁଖ ପାଏ । ବାସ୍ ଏତିକ । ତମେ-ମାନେ ଯେଉଁ ମତଲବରେ ଦେଖେଇ ଦେଖେଇ କଥାଗୁଡ଼ା ଫୋପାଡ଼ିଲ ପରି କହୁଛ, ଜଗୁଟା ଯେତେ ହୁଣ୍ଡା ହେଲେ ବ, ସେଟା ତ ମଣିଷ । ତମ କଥାର ମର୍ମ କଣ ସେ ବୁଝି ନାହଁ ? ବେଶ୍ ବୁଝିଛି । ମାହାର୍ଦ ପାଖରେ ଜାତ ଅଜାତ, ଲକ୍ଷ୍ମୀ ଅଲକ୍ଷ୍ମୀ ନ ଥାଏ । ମାହାର୍ଦ ହାତରେ ଦେଇ ତା ବୋଉ ମୋତେ ପୁଅ କରିଛି । ଉମା ମୋର ଭଉଣୀ । ବୁଝିଲ ମାଉସି, ଉମା ମୋର ଭଉଣୀ । ତା ହୋଇ ନ ଥିଲେ, ଜଗୁ ଜାତ ଅଜାତ ଘେନ ବସି ନ ଥାନ୍ତା ଅଜ ଯାଏ । ଉମା ବ ତମର ଗଳଗ୍ରହ ହୋଇ ତମ ଘରେ ଦୁଃଖ

କଷ୍ଟ ସହ ମୁହଁ ମାଡ ପଡ ନ ଥାନ୍ତା । କେତେବେଳେ ଯାଇ ଜଗୁର ଘର ସେ ଉଜ୍ଜ୍ୱଳ କରନ୍ତାଣି । ନୋହିଲେ ଜଗୁର କାଖ ଧରି ବାଟ ଉପରକୁ ବାହାର ପଡ଼ନ୍ତାଣି । ବୁଝିଲ ଏଥର··· ?”

ଜଗୁ ଏକା ସ୍ୱରରେ ଏତେଗୁଡ଼ାଏ କଥା କହିଗଲା । ରେଣୁ ବୋଉଙ୍କ ମୁଣ୍ଡରେ ସତେ କି ବଜ୍ର ପଡ଼ିଲା । ସେ ଲଜ୍ଜିତ ହୋଇ ତଳକୁ ମୁହଁ ପୋତିଲେ । ଉତ୍ତର ଦେବାର ବାଟ ଖୋଜି ପାଇଲେ ନାହିଁ । ଉମା ମଝି ଘର ଭିତରେ ଅବାକ୍ ହୋଇ ଜଗୁ ଭାଇର ଉତ୍ତେଜିତ କଥାଗୁଡ଼ା ଶୁଣିଗଲା । କଣ କହିବ କହିବ ହେଲା; କିନ୍ତୁ ସତେ ଯେପରି କିଏ ତାର ମୁହଁ ବନ୍ଦ କରି ଧରିଲା ।

ଶେଷକୁ ରେଣୁ ବୋଉ ଡ଼ରି ଡ଼ରି ଧୀରେ ଧୀରେ କହିଲେ, “ମୁଁ ବି ତ ସେଇ କଥା କହୁଥିଲି ବାବୁ, ମୁଁ କଣ ଜାଣେ ନାହିଁ ? ଅପା ତୋତେ ମାହାର୍ଦ୍ଦ ଦେଇ ପୁଅ କରିଥିଲେ । ସାନ୍ତ୍ୱେ ଥାନ୍ତୁ । ସେ ତ ବହୁଦିନ ତଳର କଥା, ଯେଉଁ ଦିନ ଉମୀ ବୁଡ଼ି ମରୁଥିଲା— ତୁ ତୋ ନିଜ ଜୀବନରେ ପାଣି ଛଡ଼ାଇ ତାକୁ ମରିଲାଠୁଁ ଉଦ୍ଧାରିଲୁ । ତେବେ··· ?”

ଜଗୁ କହିଲା, “ତେବେ ଫେବେ ଆଉ କିଛି ନାହିଁ, ମାଉସି ! ତାକୁ ମଲାଠଉଁ ଦିନେ ବଞ୍ଚେଇଥିଲି । ମୋର ଆଖି ଆଗରେ ମୁଁ ତାକୁ ମରିବାକୁ, ଛତରରେ ପଶିବାକୁ ଛାଡ଼ିଦେବି କିପରି କହିଲ ? ମୁଁ କହି ଯାଉଛି, ଉମା ଯେତେଦିନ ଯାଏ ପର ଘରକୁ ନ ଯାଇ ତମ ଘରେ ଥିବ, ମୁଁ ନିଶ୍ଚୟ ତାର ସବୁ ଖର୍ଚ୍ଚ ତୁଲାଇବି । ଯଦି ମୁଁ ନ ପାରେ, ଯଦି ତେମେ ବି ତାକୁ ଚଳାଇ ନ ପାରି, ତେବେ ସେ ଛତରରେ ପଶିବ; କିନ୍ତୁ ଏକା ନୁହେଁ, ମୋ ସଙ୍ଗରେ··· । ଉମୀ, ଶୁଣ ତ ।”

ଉମାର ଆସିବାକୁ ଗୋଡ଼ ଚଳିଲା ନାହିଁ ।

ଜଗୁ ପୁଣି ଡ଼ାକିଲା, “ଡରୁଛୁ କାହାକୁ ଉ ? ବାଟରେ ବସିଲା ଲୋକର କେଉଁଥିକି ଆଉ ଡ଼ର ? ଦାଦି ଖୁଡ଼ୀଙ୍କ ଆଶାରେ ପଡ଼ିରହି, ତୋର ଭବିଷ୍ୟତ ତ ଉଜ୍ଜ୍ୱଳ କରି ସାରିଛୁ । ଆଉ ଅଧିକ କଣ ? ଶୁଣ, ଏଠିକି ଆ··· ।”

ଉମା ବାଘ ହୋଇ ଯନ୍ତ୍ରଗ୍ରସ୍ତ ପରି ଅସି, ମୁଣ୍ଡର ଓଢ଼ଣା ଟାଣି ତାର ଖୁଡ଼ୀ ପଛରେ ଠିଆହେଲା । ଜଗୁ କହିଲା, "ଦେଖ୍, ତୋର ଖୁଡ଼ୀର ମୁକାବଲାରେ କହୁ ଯାଉଛୁ, ମୁଁ ଯେ କୌଣସି ଉପାୟରେ ତୋର ଚଳବାର ଖର୍ଚ୍ଚ ଅଜାଠୁଁ ଯୋଗାଇବ । ଘରର ଅଉମାନେ ଯେପରି ଚଳିବେ ତୋତେ ବ ସେହିପରି ଚଳିବାକୁ ହେବ, ବୁଝିଲୁ ?"

ଉମା ନୀରବ ରହିଲା ।

ଜଗୁ କହିଲା, "ଲୋକେ ବାର କଥା କହିବେ । ତୋର ଏଇ ଖୁଡ଼ୀ ବ ତୋତେ ଠାହି ଠାପରି କରି ଅନେକ କଥା କହିବେ—"

ରେଣୁ ବୋଉ—"ଅ, ମୁଁ କଣ ଏଡ଼ିକ ଅମଣିଷ, ଅଜାଣିଲା ଲୋକ ।"

ଜଗୁ—"କହନ୍ତୁ । ସେଥିକି ତୋର ଭାବନା କଣ ? ବାଟରେ-ବସିଲା ଲୋକର ଠାହିଠାପରିକୁ କି ଡ଼ର ଲୋ··· ? ଯେତେଦିନ ଭଲରେ ଚଳୁଛୁ ଚଳ୍, ଯେଉଁଦିନ ନ ଚଳିବ, ସେ ଦିନ ଯାଇ ଛଡ଼ରେ ଆଶ୍ରା ଲୋଡ଼ିବୁ । ତେବେ କହି ରଖୁଛୁ, ତା ଆଗରୁ ଚିକେ ତୋର ଜଗୁ ଭାଇକି ପଚାରିବୁ । ବୁଝିଲୁ ? ଯା··· ।"

ରେଣୁ ବୋଉଙ୍କ ମନ କଥା ଘଟିଲା । ଏକା ଉମୀର ଆଖିରେ ଲୁହ ଢ଼ଳ ଢ଼ଳ ହେଲା । ଜଗୁ ଘରକୁ ଫେରିଲା ।

## —ଷୋହଳ—

ଜଗୁ ଉତ୍ତେଜିତ ହୋଇ ଗୋବନ୍ଦ ସାହୁ ଘରୁ ବାହାରି ଅସି ଯେତେ-ବେଳେ ଗାଁ ବରଗଛ ମୂଳରେ ପହଞ୍ଚିଲା, ସେ ଦେଖିଲା, କେତେ ଜଣ ଗ୍ରାମବାସୀ ପାଖାପାଖି ହୋଇ ବସି କଣ କଥାଭାଷା ହେଉଛନ୍ତି । ହଠାତ୍ ଜଗୁକୁ ଅଗରେ ଦେଖି କେଜାଣି କାହିଁକି ସେମାନେ ଅସ୍ତବ୍ୟସ୍ତ ହୋଇ ଉଠି ଠିଆହେଲେ; ବଡ଼ ସନ୍ଦେହରେ ଜଗୁର ମୁହଁକୁ ଗୃହିଁ, ଜଣ ଜଣ ହୋଇ ଧୀରେ ଧୀରେ ଭନ୍ନ ଭନ୍ନ ଦଗରେ ପ୍ରସ୍ଥାନ କଲେ । ଜଗୁ ଏହାର କୌଣସି ଅର୍ଥ ବୁଝି ପାରିଲା ନାହିଁ । ବୁଝିବାର ଅବସର ମଧ୍ୟ ତାର ନ ଥିଲା । କପରି ଯାଇ ଘରେ ପହଞ୍ଚି ଭାଉଜବୋଉଙ୍କୁ ପ୍ରଣାମ କରିବ, ରେଣୁକୁ ଅନନ୍ଦରେ କୋଳ କରିବ, ତାର ବର୍ତ୍ତିମାନ ଏହି ଚିନ୍ତା । ସେ କାହାରିକୁ

କିଛି ନ ପାରି ଘରମୁହାଁ ହୋଇ ଫେରିଲା । ଘରେ ପଡ଼ନ୍ତି ସେ ବାଣ୍ଡରେ ତାହାରକୁ ଦେଖିବାକୁ ପାଇଲା ନାହିଁ । କେବଳ ଘର ଭିତରୁ ବାପାଙ୍କର ପାଟି ଶୁଭୁଛି, ଯେପରି ସେ କାହା ଉପରେ ବିରକ୍ତ ହୋଇ ଗାଳି ଦେଉଛନ୍ତି । ସେ ଗୋଡ଼ ଚପି ଚପି ଘର ଭିତରକୁ ପଶିଲା । ତଳ ଖଞ୍ଜାରେ କେହି ନାହାନ୍ତି । କଥା କଣ ? ଭାଉଜବୋଉ ତେବେ କଣ ଆସି ନାହାନ୍ତି ? ତାର ସବୁ ଚକାନ୍ତ ଧରାପଡ଼ି ଗଲା କି ? କେଣ୍ଟୁ କାହିଁ ? ଜଗୁ ମନରେ ବଡ଼ ଭୟ ହେଲା । ସେ ତରଙ୍ଗ ତରଙ୍ଗ ହୋଇ ଏ ଘର ସେ ଘରକୁ ଗଲା, ଅମାର ଖଞ୍ଜା ଆଡ଼େ ଗଲା । ବାଡ଼ଘର କାନ୍ଥ ଉହାଡ଼ରେ ଠିଆ ହୋଇ ଉଙ୍କି ମାରି ଚାହିଁଲା, ଅମାର ଘର ମଝିରେ ଗୋଟାଏ ପିଢ଼ିଆ ଉପରେ ବସି ବାପା ଅନର୍ଗଳ କାହାକୁ ଗାଳି ଦେଇଯାଉଛନ୍ତି । ଟିକିଏ ଦୂରରେ ନେଡ଼ା ମୁଣ୍ଡରୁ ଲୁଗା କାଢ଼ି ପଧାନଙ୍କର ବକ୍ତବ୍ୟ ଶୁଣୁଛି । କେଣ୍ଟୁ କାନ୍ଥକୁ ଅଉଜି ଭୁକ ହୋଇ ଠିଆହୋଇଛି, କେବେ କେବେ ହାତ ଟେକି ଆଖି ପୋଛୁଛି । ଘଟଣାଟା କଣ ଜାଣିବାକୁ ସେ କାନ ପାରି ଶୁଣିଲା— ଗାଳିଟା ହେଉଛି ତାରି ଉପରେ ।

—ଜଗୁଟା କୁଳାଙ୍ଗାର ପୁଅ । ତା ନେଇ ଘରର ସବୁ ପ୍ରକାର ଅନିଷ୍ଟ ହେଉଛି । ତାକୁ ମୋଟେ ବିଶ୍ୱାସ ନାହିଁ । ପିଲାଟାକୁ ଶିଖାଇ ଚିଠି ଜାଲ୍ କରି ପଠାଇବାରୁ ଏପରି ବିଷମ କାଣ୍ଡ ଘଟିଲା ସିନା । ବୋହୂ ଯଦି ବାପଘରୁ ଗୋଡ଼ କାଢ଼ି ଅବେଳରେ ଆସି ନ ଥାନ୍ତେ, ରାତିଟାରେ ସେ ଚୋର ହାବୁଡ଼େ ପଡ଼ିଥାନ୍ତେ କାହିଁକି ? ମାଡ ଖାଇ ହତଜ୍ଞାନ ହୋଇ ଅପନ୍ତରାରେ ଶୋଇଥାନ୍ତେ କାହିଁକି ? ତେବେ ବୁଝିବାକୁ ଗଲେ ତାଙ୍କର କିଛି ଦୋଷ ନାହିଁ । ଶଶୁରଙ୍କ ନାମରେ ଜାଲ୍ ହୋଇଥିବା ଚିଠି ପାଇ ଶଶୁର—ଗୁରୁ-ଜନଙ୍କର ଆଦେଶ ମାନିବା ପାଇଁ ସିନା ସେ ବାହାରି ପଡ଼ିଥିଲେ । ସେ ତ ଆଉ ଜାଣି ନ ଥିଲେ, ବାଟରେ ଏପରି ବିପଦ ପଡ଼ିବ । ତାଙ୍କ ଘରଲୋକଙ୍କର ବା କି ଦୋଷ ? ସେମାନେ ବି ତ ଜାଣନ୍ତି ନାହିଁ । ଚିଠି ନା ଚିଠି । ତା ଭିତରେ ଏତେ କଥା ଅଛି ବୋଲି କିଏ ଠଉରାଇବ ? ଭଲ ବଳଦର ଲାଙ୍ଗୁଳ ଖଣ୍ଡିଆ । ଦୋଷଟା ଷୋଳ ଅଣା କୁଳାଙ୍ଗାର ଜଗୁର ।

—ନେଡ଼ ଗୁଡ଼ କହୁଣିକି ବୋହୂଯାଇଛୁ । ଭୁଲ୍‌ଟା ସୁଧାରି ନେବାର ଉପାୟ ନାହିଁ । ଆଜି କେହି ନୁହେଁ, ଯେତେ ଭଲ ହେଲେ ବି ଜାତିରେ ପଠାଣ—ବିଧର୍ମୀ । ଦୟା ପାଇ ଘରକୁ ନେଇ ସାଷ୍ଟମ କଲେ ହିଁ, କି ଲାଭ ମିଳିବ ? ପଠାଣ ଘରେ ଅଣ୍ଡା ନେବା ମାନେ ଜାତି ହରାଇବା । କୁଳର ଲକ୍ଷ୍ମୀ, କୁଳର ବୋହୂ, ବଡବଡୁଆଙ୍କୁ ପାଣି ଠେକିବାର କଥା । ସେ ଯେତେବେଳେ ବିଧର୍ମୀ ପଠାଣ ଘରେ ରହିଲେ, କାୟା ନଷ୍ଟ ହେଲା । ସେ ପୁଣି ଘରକୁ ଆସନ୍ତେ କିପରି ? କେଉଁ ସାହସରେ ଘରକୁ ତାଙ୍କୁ ଅସିବାକୁ ଖବର ପଠାନ୍ତେ ପଧାନେ ? ସେ ଦାଣ୍ଡ ପିଣ୍ଡାରେ ଗୋଡ ଦେବା ସଙ୍ଗେ ସଙ୍ଗେ ପୂର୍ବପୁରୁଷ ସପ୍ତସ୍ୱର୍ଗରୁ ଦୁଲ୍‌ଦାଲ୍ ଖସିପଡନ୍ତେ ନରକକୁଣ୍ଡରେ । ଘର ବିଧବା ବୋହୂଟା ପାଇଁ ସପ୍ତପୁରୁଷଙ୍କୁ ନରକରେ ପକାଇ ଘାଣ୍ଟିବାକୁ କୁଳର ସୁପୁତ ପଧାନଙ୍କର ଇଚ୍ଛା ପଡେଇଲା ନାହିଁ । ତା ପରେ ତ ପୁଣି ଜାତିଭାଇଙ୍କର ଜୁଲମ । କଥା ତ କିଛି ଲୁଚି ରହନ୍ତା ନାହିଁ । ଆଜି ନ ହେଲେ କାଲି ପଦାକୁ ଫୁଟି ବାହାରନ୍ତା । ଲୋକଙ୍କର ଜାତିଅଣ ଦାଉ ସହିବା କଣ ସହଜ ପଡ଼ିଛି ? ସେତେବେଳକୁ ସମସ୍ତେ ଏକାଠି ହୋଇ ଅକଟେଇ ଦିଅନ୍ତେ । ଏତେ ତେଣ୍ଟାରୁ ମିଳିବ କଣ ?

—ଯାହା ହେଉ ସେ ବୋହୂଙ୍କୁ ଘରକୁ ଆସିବାକୁ ଖବର ନ ପଠାଇ ଯେଉଁଠି ଅସିଥିଲେ ସେଇଠି ଛାଡ଼ି ଆସିବାକୁ ଯେ କହୁଛନ୍ତି, ଖୁବ୍ ଭଲ କାମ କରୁଛନ୍ତି । ଅଗେ ସେ ବାପଘରେ ରହନ୍ତୁ, ପରେ ଦେଖାଯିବ ।

—ସବୁ ଦୋଷ ଇଶ୍ୱର । ସେଇଟା ତ ମଣିଷ ହେଲା ନାହିଁ । ହୁଣ୍ଡାଟାଏ, ଦୁଷ୍ଟରକ୍ତ, ପରଝିଅ ପ୍ରତି ଆଖି । ଛି ! ଛି ! ଶୁଣି ଶୁଣି ପଧାନଙ୍କର କାନ ବଧିର ହେଲାଣି । ନେଟା ନିଜେ ଦ ଅଖିରେ ତାଙ୍କ ଢଙ୍ଗ ଦେଖିଛି, ବିଶ୍ୱାସ ନ କରି ରହି ହେଉ ନାହିଁ । ଉମା କଥା ଦାଣ୍ଡରୁ ଯାହା ଶୁଣନ୍ତୁ ନ ଶୁଣନ୍ତୁ, ନିଜେ ନେଟା ତାଙ୍କୁ କହୁଛି । ଉମା ଗୁଡଅଘର ଝିଅଟା । କିଛି ପିଲା ନୁହେଁ—ବଡିଲା ଝିଅ । ତା ସଙ୍ଗେ ଏତେ ରଙ୍ଗ୍‌ଢଙ୍ଗ୍, ମିଳାମିଶା, ହସାହସି, କଥାଭାଷା କରିବା ଦରକାର କଣ ? ସାହସ ଦେଖ ! ବେଳ ପାଇଲେ ଠୋକାଟା ଠୁଙ୍ଗ୍‌ଠୁଙ୍ଗ୍ ପଧାନଙ୍କ ଘରକୁ ଦିନ ଦିପହରେ ଚାଲି ଅସେ । ତାର ବି ଲାଜ ସରମ ନାହିଁ । ତାଙ୍କ ଘରେ ତାକୁ କେହି ଅଟକ କରନ୍ତି ନାହିଁ । କେଡେ ଲାଜର କଥା ! ବେମହତ ଲୋକହସା କଥା !

—ଅମାରରୁ ଧାନ ଯାଉଛ କୁଆଡେ ? କୋଠିଆଗୃହରଙ୍କୁ ଧର; ଯାଆ ପଗୃର, ତାକୁ ପଗୃର । ଗୃର ତ ଘରେ, ବାଣ୍ଡରେ ବାଡ଼େଇ ହେଲେ କିଏ ଶୁଣୁଛି ? ଭାଗ୍ୟକୁ ଦିନେ ନେତା ଲୁଚି ଲୁଚି ଦେଖିଗଲୁ ସିନା ଜଣାପଡ଼ିଲା । ଘର ପୁଅ ଯଦି ମୂଷା ପରି ଗୁଲୁଗୁଲୁ କରି ନେଇ ପର ଘରେ ପୂରାଇବ, ସେଥିକି କିଏ କଣ କରିବ ? କୁଳାଙ୍ଗାର ପୁଅଟା ଯଦି ଛାଣି ଛାଣି ଘରର ଚଳ ଉଜାଡ଼ିବ, ମଣିଷର ଆଉ କି ଗୃରି ? ଗୋବିନ୍ଦ ସାହୁକୁ ତ ସୁବିଧା ପଡ଼ିଛି । ସେ କାହିଁ କି କାହିଁରେ ବାଧା ଦେବ ? ଭଲ ବେଉସା ଚଳାଇଛି !

—ଟୋକାଟା ଅସମୟରେ ଯାଇ ମାମୁଁଘରେ ପଶିଲା । ହିଙ୍କିଏ ହୋଇ ଦାଣ୍ଡିଛି ସ୍ଥାନ ନାହିଁ । ହଇଜା ବସନ୍ତ ଗାଁ ଗାଁ ବ୍ୟାପିଗଲାଣି । ଯାଉଛି ତ ଯାଉଛି, ଖବର ଅନ୍ତର କିଛି ନାହିଁ । ଗାଁଲୋକଙ୍କର ଯେଉଁ ଢଙ୍ଗ । ଘଡ଼ିଏ ଗଲେ ଯୁଗେ ବିତୁଛି !

ଜଗୁ ଧୈର୍ଯ୍ୟ ଧରି ସବୁ ଶୁଣିଗଲା । ତା ମନରେ ସ୍ୱଗ ହେଲା ଯେତେ, ଦୁଃଖ ତହୁଁ ବେଶି ବଳିପଡ଼ିଲା । ପ୍ରକୃତରେ ଏକା ସେ ଦ୍ରୁଷ୍ଟା, କିବା ନିର୍ଦ୍ଦିଆ ! ନେତାକୁ ବିଶ୍ୱାସ କରିବା ତା ପକ୍ଷରେ ଭଲ ହୋଇ ନାହିଁ । ତାର ଅନୁପ–ସ୍ଥିତିରେ ନେତା ମିଛ ସତ କରି ତା ବିରୁଦ୍ଧରେ ପଧାନଙ୍କ ଆଗରେ ବାରକଥା କହୁଛି । ଗରିବ ନିଷ୍ପାପ ଜମାର ନିର୍ମଳ ଚରିତ୍ରକୁ କଳଙ୍କିତ ବୋଲି ଲୋକଙ୍କ ମନରେ ଧାରଣା କରିବାକୁ ଚେଷ୍ଟା କରୁଛି । ଏଥିର ପ୍ରତିଫଳ ସେ ଦିନେ ନେତାକୁ ଦେବ, ଆଜି ନୁହେଁ । ତାର ମୁହଁ କେତେଦୂର ବଢ଼ିଛି ଦେଖି । ପଧାନଙ୍କ ଆଗରେ ତାକୁ ଗୃର ଲମ୍ପଟ କହି ଲୋକମୁଖରେ ତାକୁ ଓ ଜମାକୁ ବୃଥା ଦୋଷୀ ବୋଲି ପ୍ରଗୃର କରିବାର ପରିଣତି ଦିନେ ସେ ତାକୁ ଦେବ । ସେହି ଦିନ ହେବ ତାର ପାପର ଉପଯୁକ୍ତ ପ୍ରାୟଶ୍ଚିତ୍ତ, ଯେଉଁ ଦିନ ଗାଁ ଲୋକଙ୍କ ଆଗରେ ନେତାର ଚୁଟି ଧରି, ଓଠାରି ଓଠାରି ଗାଁ ସୀମା ପାରି କରିବ ।

ଜଗୁ ସ୍ୱଗରେ ହାତ ମୂଠା କରି ଓଠ କାମୁଡ଼ିଲା । ଇଚ୍ଛା ହେଲା, ଧୂମକେତୁ ପରି ସହସା ନେତା ଆଗକୁ ବାହାରିପଡ଼ିବ । ହାତମୂଠାର ସଦ୍–ବ୍ୟବହାର କରି ତାର କାନ ଧରି ପଗୃରିବ—'କଣ ଦେଖିଛୁ ? ବାପାଙ୍କ ଆଗରେ ଛୁନ ଛୁନ କରି ମୋ ନାମରେ କଣ ପୋଡ଼ୁଛୁ ? ମୋ ମୁହଁରେ

ଅନ୍ତର ଥରେ କହ ତ ଦେଖି, ତୋର୍ କେତେ ସାହସ ଅଛି ମୁଁ ଦେଖେଁ ?"
କ୍ରୋଧରେ ଜଗୁର ପେଟ ଜଳୁଥିଲା । ଗାଳି ଖାଇ ତାର କ୍ଷୁଧା କିଣ ଉପଶମ ହୁଅନ୍ତା । ତାର ଆଖିରେ ଲୁହ ଆସିଲା । ସେ ଗୃଳର ବତାକୁ ଦୁଇ ହାତରେ ଧରି ମୁଣ୍ଡକୁ କାନ୍ଥରେ ମାଡ଼ି ବାପାଙ୍କର ଗାଳି ଶୁଣିବାକୁ ଲାଗିଲା ।

କିନ୍ତୁ କଣ ଶୁଣିଲା, ସେ କିଛି ବୁଝିଲା ନାହିଁ । ଦୁଃଖ, କ୍ରୋଧ, ଉତ୍ତେଜନାରେ ତାର ମନ ବଡ଼ ଚଞ୍ଚଳ ହୋଇଉଠିଥିଲା । ସେ କଣ ଏତେ ଉଦ୍‌ବିଗ୍ନ ହୋଇ, ଏତେ ଅଧୀର ହୋଇ ମାମୁଘରୁ ଧାଇଁ ଆସିଥିଲା, ଏହି ଅପ୍ରିୟ କଥା ଶୁଣିବ, ଆଉ ଏହି ଭୀଷଣ ଦୃଶ୍ୟ ଦେଖିବ ବୋଲି ! ଛିଃ, କି ଦୁଃଖର କଥା !

ଭାଉଜବୋହୂଙ୍କୁ ଦେଖିବାକୁ ଧାଇଁ ଆସିଥିଲା । ଭାଉଜବୋହୂ କାହାନ୍ତି ? ପଧାନଙ୍କ କଥାରୁ ଘଟଣାଟି କଣ ସେ ବୁଝି ପାରିଲା ନାହିଁ । ସତେ କଣ ତେବେ ସେ ତାର ଭାଉଜବୋହୂର ସର୍ବନାଶର କାରଣ ହୋଇଛି ? କଥାଟା କଣ ନ ବୁଝିବା ଯାଏ ତାର ମନ ସ୍ଥିର ହୁଅନ୍ତା କିପରି ? ମିଛ ସତ କହି ତାଙ୍କୁ ଯେତେ ନିନ୍ଦା କରିବାର କରନ୍ତୁ । ନିର୍ଦୋଷ ହତଭାଗିନୀ ଭାଉଜବୋହୂଙ୍କ ପ୍ରତି କେହି କଠୋର ବ୍ୟବହାର କରି-ପାରିବେ ନାହିଁ । ସେ କଦାପି ଏହା କରିଇ ଦେବ ନାହିଁ ।

ଜଗୁ ଆଖିର ଲୁହ ପୋଛିଲା । ହୃଦୟର ସବୁ ଦୁଃଖ, ମନର ସବୁ କ୍ରୋଧ ଚୁପି ରଖି ସେ ଧୀରେ ଧୀରେ ବାଡ଼ଘରୁ ବାହାରି ଅମାରଘର ଖଞ୍ଜାକୁ ଗଲା । ବେଳ ବୁଡ଼ିଲାଣି; କିନ୍ତୁ ସଞ୍ଜର ଅନ୍ଧାର ସେତେବେଳଯାଏ ଘୋଟି ଆସି ନାହିଁ । ଲଜ୍ଜାଶୀଳା କୁଳକାମିନୀ ପରି ସୂକ୍ଷ୍ମ ଅନ୍ଧାର ଛପି ଛପି ଧୀରେ ଧୀରେ ଆସିବାର ଉପକ୍ରମ କରୁଛି । ଜଗୁ କାହାକୁ କିଛି ନ କହି, ପଧାନଙ୍କ ଆଗରେ ଯାଇ ଠିଆହେଲା ।

ତାକୁ ଦେଖିବା ସଙ୍ଗେ ସଙ୍ଗେ ପଧାନଙ୍କର ପାଟି ଥମିଲା । ସେ ଅବାକାବା ହୋଇ ଜଗୁର ଗୋଡ଼ରୁ ମୁଣ୍ଡଯାଏ ଚାହିଁଲେ । ତାଙ୍କ ମନରେ ଭୟ ହେଲା କି ଦୁଃଖ ହେଲା, କି ଆନନ୍ଦ ହେଲା କହି ହେବ ନାହିଁ । ସେ ନରମ ସ୍ୱରରେ ସଙ୍ଗେ ସଙ୍ଗେ ପଚାରିଲେ, "କେତେବେଳେ ବାହାରିଲୁ

ବାପ ? ଏ ଖବ୍ଵଏ ଖବ୍ଵଏ ? ମୂହଁଟା ଯେ ଶୁଖିଯାଇଛି । ଆଲୋ ନେଟା, ଯାନ୍ ଯା...ପୂଅର ଖାଇବା ଖବର ବୁଝ ଆଗ... ।”

ବାପାଙ୍କୁ ଦଣ୍ଡବତ କରିବାକୁ ସେ ଭୁଲିଯାଇଥିଲ । ହଠାତ୍ ମନେ ପଡ଼ିବାରୁ, ମୂହଁ ଗମ୍ଭୀର କରି ପ୍ରଣାମ କରି କହିଲ, “ହଁ, ଖବ୍ଵଏ ଖବ୍ଵଏ··· ।”

କଗୁକୁ ଦେଖି ନେଟା ଜଠେ ଠିଆ ହୋଇଥିଲ । ସେ ହସ ହସ ହୋଇ ପଗ୍ଭରିଲ; “ଏତେ ଦନକେ ମନେପଡ଼ିଲ ବାପ ! ଯା, ଅଗ ଗୋଡ଼ ଧୋଇପକା ତ । ସ୍ନେହ କରୁଥିବ, ମୂଠେଏ ସଞ୍ଜ ପଖାଳ ଅଣେ... ।” ଉତ୍ତର ନ ପାଇ ନେଟା ଭିତର ହେବାକୁ ବାହାରିଗଲ ।

ତଳକୁ ମୁହଁ କରି ବେଣୁ ତୁନି ହୋଇ ଠିଆ ହୋଇଥିଲ । କାନ୍ଦ କାନ୍ଦ ଆଖିରୁ ତାର ଲୁହ ଶୁଖିଯାଇଥିଲ । ପିଲାଲୋକ, ନ କାନ୍ଦନ୍ତା କପରି ? କେତେ ଯେତେବେଳେ ତାର କାନ ଧରି ନାଲି ଆଖି ଦେଖାଇ, ପ୍ରହାର କରିବାକୁ ଭୟ ଦେଖାଇ ସତ କଥା ପଗ୍ଭରିଲେ, ସେ ଉପାୟାନ୍ତର ନ ଦେଖି ସତ ସତ କଥାଗୁଡ଼ିକ କହିଯାଇଥିଲ—କପରି ଦାଦାର ଶିକ୍ଷାରେ ପଡ଼ି ସେ ଅସଲ ଚିଠି ଚିରିବାକୁ ଦେଇ ଦାଦାଙ୍କର କହିବାମତେ ଅନ୍ୟ ଚିଠି ଲେଖିଥିଲ ଇତ୍ୟାଦ । ପଧାନ ବୁଢ଼ା ସବୁ ଶୁଣି, ବେଣୁକୁ କ୍ଷମା ଦେଲେ ସତ; କନ୍ତୁ ବରକ୍ତ ହୋଇ କାଲି ଚିଠିର ବିଷମୟ ଫଳ ବୁଝାଇ ଦେଲେ—ତୋର ବୋଉ ପଠାଣଘରେ ରହିଲ; ତାର ଜାତ ଗଲ । ସେ ଅଉ ଅସି ପାରିବ ନାହିଁ । ବୋଉକୁ ଆଉ ଏ ଜୀବନରେ ତୁ ଦେଖି ପାରିବୁ ନାହିଁ କ ‘ବୋଉ’ ବୋଲି ଡାକ ପାରିବୁ ନାହିଁ, ଇତ୍ୟାଦ—

ଶିଶୁର ମନରେ ଏହି କଥାଗୁଡ଼ିକ ଯେ କ ଦାରୁଣ ଅଘାତ ଆଣିଥିବ, ସେ କଥା ପଧାନଙ୍କ ବୟସର ଯୋଖଡ଼ା ଲୋକ କପରି ଯେ ବୁଝି ପାରିଲେ ନାହିଁ, ଅଶ୍ଚର୍ଯ୍ୟ । ଯେତେବେଳେ ତାର ସରସ ମୁହଁ ସଜଳ ଆଖି ଦେଖି ତାକୁ ନର୍ଦ୍ଦୋଷ ପ୍ରମାଣ କରିବାକୁ,ଦୋଷଗୁଡ଼ା କଗୁ ଉପରେ ଠେଲି ଦେବାକୁ ସେ ଗର୍ଜ୍ଜନ କରି କଗୁ ଉଦ୍ଦେଶ୍ୟରେ ବାକ୍ୟବାଣ ବର୍ଷଣ କରିବାକୁ ଲଗିଲେ, ବେଣୁ ବାନୁକୁ ଅଉଜି, ତାର ବୋଉ କଥା ଭବି ମନେ ମନେ

କାନ୍ଦିବାକୁ ଲାଗିଲା । ସତେ କଣ ତାର ବୋଉ ଅଜାଡ ହୋଇଗଲା ? ସତେ କଣ ତାର ବୋଉ ଆଉ ଘରକୁ ଫେରିବ ନାହିଁ, ସେ ଦେଖିବ ନାହିଁ ।

ଦାଦାକୁ ଆଗରେ ଦେଖି ତାର ସବୁ ଭୟ, ସବୁ ଭାବନା ଉଭେଇଗଲା; କିନ୍ତୁ ଦୁଃଖର କୋହଟା ଉହାଇ ଉହାଇ ତାର ଛୋଟ ହୃଦୟଟିକୁ ଅସ୍ଥିର କରିପକାଇଲା । ମନରେ ସାହସ ଆଣି ସେ ଧାଇଁଯାଇ ଜଗୁକୁ କୁଣ୍ଢାଇ ଧରିଲା । ମନର ଉଦ୍‌ବେଗ ସମ୍ଭି ନ ପାରି କହିଁ କହିଁ ହୋଇ କାନ୍ଦି ଉଠିଲା । ଜଗୁ ଦୁଇ ହାତରେ ତାକୁ ଟେକି ନେଇ ଛାତିରେ ଭିଡ଼ିଧରିଲା । ତାକୁ ବାରମ୍ବାର ଚୁମ୍ବନ କରି ସଜଳ ଆଖିରେ ଭଙ୍ଗା କଣ୍ଠରେ କହିଲା, "ଚୁପ ହ, ଚୁପ ହ... ।" ଆଉ ଅଧିକ କିଛି କହି ପାରିଲା ନାହିଁ । ବେଣୁକୁ କାନ୍ଧରେ ପକାଇଲା ।

ଏ ଦୃଶ୍ୟରେ ପଧାନଙ୍କର ମନଟା ଯେ କଣ ହେଲା କେବଳ ତାଙ୍କୁହିଁ ଜଣା । ସେ କିଛି କହି ପାରିଲେ ନାହିଁ । ନେଗୀକୁ ପାଣି ଲୋଟାଏ ଆଣୁଥିବାର ଦେଖି ସେ ସତେ କି ଭାରି କୁଣ୍ଠିତ ହୋଇ କହିଲେ, "ଗୋଡ଼ ଧୋଇ ପକା ରେ ଜଗୁ... ।"

ଜଗୁ କହିଲା, "ବାପା, ଭାଉଜବୋଉ କାହାନ୍ତି... ?"

ପଧାନେ ମୁଣ୍ଡ କୁଣ୍ଡାଇ କହିଲେ, "ସେ କଥା ପରେ ଶୁଣିବୁ, ଆଗ କିଛି ଖାଇନେ ଯାଇ ।" ନେଗୀ ଆଡ଼କୁ ମୁହଁ ଫେରାଇ କହିଲେ, "ପୁଅକୁ ଜଳଖିଆ ଆଣିଦେ ନେଗୀ, ଏଇଠିକି ଆଣ ।"

ଜଗୁ କହିଲା, "ମୁଁ ସବୁ ଶୁଣିଛି ବାପା, ଆପଣଙ୍କର ଗାଳି ଖାଇ ମୋର ପେଟ ପୂରିଛି । ଆଉ ଖାଇବାକୁ ଇଚ୍ଛା ନାହିଁ । ଆଗ କହନ୍ତୁ, ଭାଉଜ-ବୋଉ କାହାନ୍ତି ?"

ପଧାନେ ଜଗୁ ମୁହଁରୁ ଏପରି କଥା କେବେ ଶୁଣି ନ ଥିଲେ, ଶୁଣିବେ ବୋଲି ଆଶା ମଧ୍ୟ କରି ନ ଥିଲେ । ଆଖି ଆଗରେ ପଲକ ହୋଇ ଠିଆ ହେବାର ଯାହାକୁ ଦିନେ ସେ ଦେଖି ନ ଥିଲେ, ସେ ଆଜି ସାମନା ଉପରେ ଟେକି କରି କଥା କହୁଛି, ଜବାବ ଗୁହୁଁଛି । ପଧାନେ କି ଏପରି ଉଚ୍ଛୃଙ୍ଖଳତା ସହିବାର ଲୋକ ! ତଥାପି ସେ ରାଗଟାକୁ ସମ୍ଭାଳି ନେଇ କହିଲେ, "ଆରେ, ମୁଁ ତ କୁଆଡ଼େ ପଳାଉ ନାହିଁ । ସବୁ କଥା ପରେ ଶୁଣିବୁ । ନିଜ କର୍ମର ଫଳ ତ... ।"

ଜଗୁର ଦୃଗ ବଢ଼ିଲା, ସେ ବେଣ୍ଟକୁ ତଳେ ଠିଆକର କହିଲା, "ସେ କଥା ମୁଁ ଜାଣେ । ମୁଁ ମୂର୍ଖ । ମୁଁ କୁଳାଙ୍ଗାର । ମୁଁ ଲମ୍ପଟ । ମୁଁ ଚୋର । ମୁଁ ସବୁ । ନେଡ଼ା ମିଛରେ ସତରେ ଅପଣଙ୍କୁ ମୋ ନାମରେ ଯାହା ବୁଝାଇଛୁ, ଅପଣ ତାହା ବିଶ୍ୱାସ କରୁଛନ୍ତି । ଭଲ କଥା । ଆପଣଙ୍କ ବିଶ୍ୱାସ ମୁଁ ଭାଙ୍ଗିବାକୁ ଯାଉ ନାହିଁ । ମୁଁ ଜାଣେ, ମୁଁ ଯାହା କରୁଛି ଭଲ କରୁଛି । ...କହନ୍ତୁ, ଭାଉଜବୋହୂଙ୍କର ଅସିବାର କଥା ଥିଲା, ସେ ନ ଆସିଲେ କାହିଁକି ?"

ପଧାନେ ରାଗିଯାଇ କହିଲେ, "କି ରେ, ତୋ ମୁଣ୍ଡରେ ସଇତାନ ଚଢ଼ିଛି କି ? ମୁରବି ମାନଣା ନାହିଁ ? କଥାଗୁଡ଼ା କହୁଚୁ କେମିତି—?"

ଜଗୁ ପୂର୍ବପରି କହିଲା, "ମୁଁ ତ ଅପଣଙ୍କୁ କିଛି ଅମାନ୍ୟ କରି ନାହିଁ । ଘଟଣାଟା ଜାଣିବାକୁ ଚାହୁଁଛି...।"

ପଧାନେ ଦବିଗଲେ । କଳିକାଳିଆ ଟୋକା । ଦାୟିତ୍ୱ ଜ୍ଞାନ ନାହିଁ । ରାଗରେ ମୁଣ୍ଡକୁ ପିତ୍ତ ଉଠିଲେ ଚନ୍ଦ୍ରସୂର୍ଯ୍ୟ ମାନନ୍ତି ନାହିଁ । ଘଟଣାଟା ନ କହିଲେ ନିତାନ୍ତ ଛାଡ଼ିବ ନାହିଁ ଟିକେ । ସେ ଗଳା ଖଙ୍କାରି କହିଲେ, "ବ୍ୟସ୍ତ ହେଉଚୁ କାହିଁକି ? ଶୁଣ ମୁଁ କହୁଚି ।"

ପଧାନେ ଧୀରେ ଧୀରେ ସବୁ କଥା କହିଗଲେ । ଶେଷକୁ କହିଲେ— "ବାଙ୍କମପୁର ମିଆଁଙ୍କ ଘରେ ରହିଲେ, ଜାତି ଗଲା । ଜାତିଭାଇଙ୍କ ବିନା ଅନୁମତିରେ, ବିନା ପ୍ରାୟଶ୍ଚିତ୍ତରେ ଘରକୁ ଆସିବାକୁ ତାଙ୍କୁ ଅନୁମତି ଦିଅନ୍ତି କିପରି ?"

ଜଗୁ ଉତ୍ତର ଦେବା ପୂର୍ବରୁ ନେଡ଼ା ପଖାଳ କଂସା ଆଣି ଅମାରି ପିଣ୍ଡାରେ ରଖି ଲୁଣ, ଛଅଣ ଅଣିବାକୁ ଭିତର ଖଞ୍ଜାକୁ ଗଲା । ପଧାନେ କହିଲେ, "ତୁ ଖାଇ ବସ ତ...।"

ଜଗୁ ଧୈର୍ଯ୍ୟ ଧରି ସବୁ ଶୁଣିଗଲା । ତାରି ପାଇଁ ତାର ସେହମୟୀ ଭାଉଜବୋହୂ ପଠାଣଘରେ ଉପାସ ଭୋକରେ ପଡ଼ି କାନ୍ଦି କାନ୍ଦି ବେଳ କଟାଉଥିବେ, ଆଉ ସେ ଏଠି ଆନନ୍ଦରେ ଭାତ ଖାଇବ । ନା, ଏହା କଦାପି ହୋଇପାରିବ ନାହିଁ । ବିପଦ ବେଳେ ଜାତି ଅଜାତି ଧରି ବସିବାଟା ନିତାନ୍ତ ଅନୁଚିତ । ଅଗ ମମତା ନା ଅଗ ଜାତିଧର୍ମ ? ଜୀବନ

ସ୍ନେହ ମମତା ଅପେକ୍ଷା ଜାତିଟା ବଡ଼ କଥା ନୁହେଁ । ହେଲେ ବି ଅସମୟରେ ଜାତିଧର୍ମକୁ ଆଗକୁ ଆଣିବା ବଡ଼ ଅନ୍ୟାୟ ।

ଜଗୁ ବିନୀତ ହୋଇ କହିଲା, "ବାପା, ଆପଣ ଭଲ କାମ କରି ନାହାନ୍ତି, ସଙ୍ଗେ ସଙ୍ଗେ ଯାଇ ଭାଉଜବୋହୂଙ୍କୁ ଶାଙ୍ଖୋଳି ଆଣିବା ଉଚିତ ଥିଲା । ବର୍ତ୍ତମାନ ବି ବେଳ ବଳେଇ ପଡ଼ି ନାହିଁ ।"

ବେଖାତିରିଆ ହସଟାଏ ହସି ପଧାନେ କହିଲେ, "ଆରେ ବୁଢ଼ା ହେଲି, ମୁଣ୍ଡର ପାକଲା ବାଳ ଝଡ଼ି ମୁଣ୍ଡ ଚନ୍ଦା ହେଲା । ଆଜିଯାଏ ଉଚିତ ଅନୁଚିତ କଣ ମୁଁ ଜାଣେ ନାହିଁ ଯେ, ତୁ ମୋଠୁଁ ଜନ୍ମ, କାଲିକାର ପିଲା, ତୋଠୁଁ ମୋତେ ଶିଖିବାକୁ ପଡ଼ିବ ? ଗୋଟାଏ ମାଇକିନା ପାଇଁ କଣ ସପ୍ତ-ପୁରୁଷଙ୍କୁ ଅକ୍ଷୟ ନରକରେ ଘାଣ୍ଟିବି ? ତୁ ମୋତେ ବୁଦ୍ଧି ଶିଖାଉଚୁ ? ମୁଁ ଯାହା କରିଛି, ଠିକ୍ କରିଛି ।"

ଜଗୁ ଦୁଃଖିତ ହୋଇ କହିଲା, "ଆପଣ ବେଣୁର ମୁହଁକୁ ଚାହିଁ କହୁ-ଛନ୍ତି ତ ? ଆପଣ ଜାତି ଡ଼ରରେ ଭାଉଜବୋହୂଙ୍କୁ ଛାଡ଼ିଲେ ଏ କଥା ଶୁଣିଲେ, ତାଙ୍କର ଭାଇ ବି ତ ତାଙ୍କୁ ଘରେ ଥାନ ଦେବେ ନାହିଁ । ତାଙ୍କର ଗତି କଣ ହେବ, ଭାବୁଛନ୍ତି ?"

ପଧାନେ କହିଲେ; "ବେଣୁର ତ କୌଣସି କଥାର ଅଭାବ ନାହିଁ ।"

ଜଗୁ କହିଲା, "ସେ କଥା ଆପଣ କପରି ବୁଝିବେ ? ଯେଉଁ ଅଭାବ କରିବାକୁ ଯାଉଛନ୍ତି, ସେତକ ସଂସାରରେ କେହି ପୂରଣ କରିବେ ନାହିଁ, ବାପା । ତାର ମନର ଦୁଃଖ ଆପଣ ବୁଝି ପାରିବେ ନାହିଁ । ବୁଝିଲେ ବୁଝିବି ମୁହିଁ ।" ଜଗୁର କଣ୍ଠସ୍ୱର କରୁଣ ହୋଇଆସିଲା, "ଆଜି ଯଦି ମୋର ବୋଉ ଥାନ୍ତା...।" ଜଗୁ ଆଖିରୁ ଲୁହ ପୋଛିଲା, "ଶହେଟା ନେଗି କଣ ମୋର ବୋଉର ଅଭାବ ପୂରଣ କରିପାରିବେ, ବାପା ?... ।" ଜଗୁ ଆଉ କହି ପାରିଲା ନାହିଁ ।

କେଜାଣି କାହିଁକି ବୁଢ଼ା ପଧାନଙ୍କର ପେଟ ଭିତରଟା କଣ ହୋଇ-ଗଲା । ବିଜୁଳି ବେଗରେ ସୁଦୂର ଅତୀତର କେତେ ଚିତ୍ର ଆସି ସତେ କି ଆଖି ଆଗରେ ନାଚିଗଲା । ସେ ଘଡ଼ିଏ ତୁନି ହୋଇ ରହିଲେ । କେଜାଣି କାହିଁକି ତାଙ୍କର ଶୁଖିଲା ଆଖି ପତା ଓଦା ହୋଇଆସିଲା । ସେ ମନର

ଦୁର୍ବଳତାକୁ ଦମନ କରି କହିଲେ, "ନାଚାର ବାବା, ନାଚାର ! ପଠାଣଘର ପରି । ତାଙ୍କର ଯେଉଁ ଗତି ହେଉ ପଛେ, ଜାତି ତ ଆଉ ନାହିଁ ।"

ଜଗୁ କେତେ କଣ ଭାବି କହିଲା, "ସେ ଯଦି ଆଜି ଫେରିଆସନ୍ତି, ଆପଣେ ତାଙ୍କୁ ଘରେ ପୂରାଇବେ ନାହିଁ ? ସେ ତ ଜାଣି ଜାଣି ପଠାଣଘରକୁ ଯାଇ ନାହାନ୍ତି । ତାଙ୍କର କିଛି ଅପରାଧ ନାହିଁ !"

ପଧାନେ କହିଲେ, "ଜାଣେ; କିନ୍ତୁ କଣ କରିବି ? ଧର୍ମ, ଦେଶାଚାର, କୁଳାଚାର... ।"

"ତା ହେଲେ ତାଙ୍କୁ କଣ ଜାତି ଡରରେ ଆପଣ ଛାଡ଼ିଲେ ?"

"ତା ଛଡ଼ା ଯେ ଉପାୟ ନାହିଁ ।"

ଜଗୁ ଚୁପ ହୋଇ ଭାବିବାକୁ ଲାଗିଲା । ଯେତେ ବୁଝାଇଲେ ଅବୁଝା ପଧାନେ ବୁଝିବେ ନାହିଁ । କିନ୍ତୁ ଜାଣି ଜାଣି ସେ କପରି ଏତେ ବଡ଼ ଅନ୍ୟାୟ ସହିବ ? ଭଉଜ ଅନାଥା ହୋଇ ଜାତି ହରାଇ ଦାଣ୍ଡରେ ଠିଆ-ହେବେ, ସେ ନିଶ୍ଚିନ୍ତ ହୋଇ ଘରେ ରହିବ କପରି ? ନା, ଏକଥା କଦାପି ହୋଇ ପାରିବ ନାହିଁ । ପଧାନେ ତାଙ୍କର ଜାତି ଠାଣ ଧେନ ବସିଥାନ୍ତୁ । ସେ ମଧ୍ୟ ତାର ଭଉଜବୋହୂର ଗତି ଅନୁସରଣ କରିବ ।

ଜଗୁ ବେଣୁର ହାତ ଧରି ପଚାରିଲା, "ଆଚ୍ଛା ବେଣୁ, ତୁ ତୋର ବୋଉ ପାଖକୁ ଯିବୁ ?"

ବେଣୁ ଭୟରେ ପଧାନଙ୍କ ମୁହଁକୁ ଚାହିଁଲା ।

ଜଗୁ—"କହ, ଯିବୁ ?"

ବେଣୁ ଜଗୁର ପଛ ଆଡ଼କୁ ଯାଇ କହିଲା, "ହଁ, ଦାଦା··· ।"

ଜଗୁ ବେଣୁକୁ କାଖ କରି ପିଣ୍ଡା ଉପରୁ ତଳକୁ ଓହ୍ଲାଇ ପଧାନଙ୍କୁ ଚାହିଁ କହିଲା, "ମୁଁ ଯାଉଛି ବାପା, ଆପଣ ଆପଣଙ୍କର ଜାତିକୁ ଧରି ଘରେ ବସିଥାନ୍ତୁ । ଭଉଜବୋହୂଙ୍କର ଆଶା ତ ଛାଡ଼ିଛନ୍ତି, ଏଣିକି ଆମର ଆଶା ବି ଛାଡ଼ି ନିଶ୍ଚିନ୍ତ ହେଉନ୍ତୁ··· ।"

ସଞ୍ଜ ଅନ୍ଧାର ଘୋଟି ଆସୁଛି । ଚାହୁଁ ଚାହୁଁ ରାତି ହେବ । ଅନ୍ଧାର ରାତି—ସମୟ ବି ଖରାପ । ପଧାନେ କି ଜଗୁର ଧମକରେ ଡରିଯାନ୍ତେ ? ସେ ମନେ ମନେ ହସିବାକୁ ଲାଗିଲେ । ଯେତେବେଳେ ଜଗୁ ବାଡ଼କବାଟ ଖୋଲି

ପଦାକୁ ଗୋଡ଼ ବଢ଼ାଇଲା, ସେ ପଛରୁ ଡାକ କହିଲେ, "ଆରେ ପାଗଳ, ଶୁଣ ଶୁଣ— ।"

ଜଗୁ ଶୁଣିଲା ନାହିଁ, ପଦାକୁ ବାହାରିଗଲା ।

ପଧାନେ ଟିକିଏ ଯୋରରେ ହସିଉଠିଲେ । ଅକାଶକୁ ଚାହିଁ ମନକୁ ମନ କହିଲେ, 'ଜହ୍ନରାତି ତ ନୁହେଁ, ଅନ୍ଧାର ରାତି ।' ଭାବିଲେ—ବାଡବାଟେ ଯାଇ ଦାଣ୍ଡବାଟେ ଅସିବାର ଇଚ୍ଛା ପରି । ହଉ, ପିଲା ଲୋକ, ମନ ବୁଝି ଯାଉ । ବାଧା କାହିଁକି ଦେବେ ? ଦୁନିଆଟା ଯେ ସଫା ନୁହେଁ, ଭାରି ଅନ୍ଧାର ଦାଣ୍ଡକୁ ଗଲେ ସିନା ବୁଝାପଡ଼ିବ ?

## —ସତର—

କଟି କଟି ଅନ୍ଧାର ରାତି । ମୁହଁକୁ ମୁହଁ ଦିଶୁ ନାହିଁ । ବରଗଛ ମୂଳରେ ଗାଁ ଭେଣ୍ଡିଆ ଗୁଣ୍ଡା ହୋଇ ଭୁନ ଭୁନ କଥାଭାଷା ହେଉଛନ୍ତି । ହଠାତ୍ ମଧୁ ସ୍ୱାଇଁ ଟିକିଏ ରାଗିଯାଇ କହିଲା, "କିରେ ବଇଆ, ବାରଣ ବଢ଼େଇରେ ଦାଏ ନା ସୁଅରେ ଦାଏ ରେ ! ଧାନ ଗୁଣ୍ଡଲ କେଉଁଠି ମିଳୁ ନାହିଁ । ପଧାନଙ୍କ ଘରେ ଅମାର ମରେଇ ଭରି । ଗାଁ ଲୋକେ ଯାଇ ଦାନ୍ତରେ ଛଇଣ ଧରି ଲମ୍ବ ଲମ୍ବ ହୋଇ ଗୋଡତଳେ ପଡ଼ିଲୁ । ଆମେ କେଣେ କଣ ମାଗୁନୁ । ଅମର ସର୍ବସ୍ୱ ନିଅ, ପିଲାଛୁଆଙ୍କ ପାଟିରେ ପେଜ ଟୋପାଣି ଟିକେ ଦେଇ ଜୀବନ ରଖ । ଓହୋ, ଏଡ଼େ ନିର୍ମମ ! ଗାଁ ଲୋକଙ୍କର ମୁହଁକୁ ଚାହିଁଲେ ନାହିଁ । କେଉଁ କାଳର ପୁରୁଣା ଖଠା ଖୋଲି କହିଲେ—ତୋ ଉପରେ ଏତେ, ତା ଉପରେ ଏତେ ବାକି, ଅଗ ପରିଶୋଧ କର । ଆରେ ବାବୁ, ଆମର ଯଦି ପରିଶୋଧ କରିବାର ଶକ୍ତି ଥାନ୍ତା, ଆମେ ଆଜି ତମ ଦୁଆରେ ଗୋଡ ଭାଙ୍ଗି ଠିଆ ହୋଇଥାନ୍ତୁ କାହିଁକି ? ବୁଝିଲୁ ରେ ବଇ, ଏମିତ ଲୋକକୁ ଉପ୍ରୋଧ ନାହିଁ...।"

ବଇଆ ( ବୈଷ୍ଣବ ଭୋଇ ) କହିଲା, "ସାନ୍ତେ, ନିମକ୍‌ହାରାମୀ କରିବ କେମିତ ? ବିଶ୍ୱାସରେ ନିଜର ଖାମିନ୍‌ଦକୁ ବିଷ ଦେବ କେମିତ ? ଦାନା ଦେଇ ମୋତେ ଏତେଟିରୁ ଏଡ଼େ କଲେ, ମଣିଷ କଲେ, ମୋ ପିଲା କୁଟୁମ୍ବକୁ ରକ୍ଷାରକ୍ଷଣ କଲେ । ଏତେବେଳକୁ ତାଙ୍କ ତଣ୍ଟିରେ ଛୁରି ବସାଇବି ?

ସ୍ୱମ ଭୋଇ କହିଲା, 'ଆରେ ଯାମ, ରଖ୍ ତୋର ଭଲଲୋକ । ଏକା ତୋର ବଂଶଟା ବଞ୍ଚିଲେ ତ ଗାଁ ଯାକ ଲୋକଙ୍କୁ ପାଣି ଦେବେ ! କାରେ, ଆମେ ତ ଖାଇବା ବିନା ମରିବୁ, ତମେ ଥାଇ ଆମର କଣ କରିବ ?"

ଗୋପୀ ମାହାରଣା କହିଲା, "ତୋତେ ଅମେ ଦେଖି କିଛି କରିବାକୁ କହୁନ । କାଲି ଗ୍ରାଡ ପଅର ଦିନ ଉଆଁସ । ଉଆଁସ ଘଡିରେ ଭଲ ହେବ । ତୁ ସେଦିନ ଶୋଇବାକୁ ଯିବୁ ନାହିଁ ।"

ବଇଆ—"ଯ୍ୟା ମୁଁ କାପର କରିବ ? ଜଗୁ ବାବୁ ରୁଷିକର ଦେଣୁ ବାବୁଙ୍କୁ ସଙ୍ଗରେ ନେଇ ଗୃର ଦିନ ହେବ କୁଅଡ଼େ ପଳେଇଛନ୍ତି । ବୁଡ଼ାଙ୍କ ମନରେ ସୁଖ ନାହିଁ । ଯୋଉଠି ବସ୍ୱଛନ୍ତି, ବକାଙ୍କ ପରି ହେଉଛନ୍ତି । ମୁଁ ତାଙ୍କୁ ଛାଡ଼ି ରହି ପାରିବି ନାହିଁ ।"

ଭଗୀ ଜେନା ବିରକ୍ତ ହୋଇ କହିଲା, "ବାଉସି ଟୋକା ତ ଭାରି ମଗଗ୍ । କଥା କହିଲେ ପାସଙ୍ଗରେ ପକାଉ ନାହିଁ । ଧର ରେ, ଅଗ ତାକୁ ଗୋଟାକେତେ ଥୋଇବା । ଯାଉ, କୋଉ ବାପଠି ଗୁହାରି କରିବ...।"

ବୁରୁନ୍ଦା କେଉଟ କହିଲା, "ବାଉସି ଟୋକା ଆମ ଅଗରେ ଭାଗବତ ପଢୁଛୁ ରେ । ଦଇବ ଛାଡ଼ିଲାଣି, ସେ କଣ କରିବ ? ପଧାନଙ୍କ ସାଙ୍ଗରେ ସେ ବି ମଶାଣିକି ଯିବ ଦେଖୁଛୁ । ଅରେ ଅନେଇ ବସିଲ କାହିଁକି ? ଏମିତି ମରିବା, ନୋହିଲେ ସେମିତି ମରିବା । ଦାରୋଗା ଆସିବ, ପିଆଦା ମଳିକ ଆସିବେ, ଗାଁରେ ପାଁଶ ଲୋକ, କାହାକୁ ଧରିବେ ଧରନ୍ତୁ—।"

ଗୋବିନ୍ଦ ସାହୁ କହିଲେ, "ମୁଁ ଗୋଟିଏ କଥା ପାଞ୍ଚିଛି । ଶୁଣ ବଇ, ତୁ କାଲି ପଧାନ ଘରୁ ଚୂକସି ଛାଡ଼ି ଚାଲି ଯା । ତା ହେଲେ ତ ନେଣ୍ଟା ତୁଟିଯିବ । ତେଣିକି ଆମର କାମ ଅମେ କରିବୁ ।"

ମଧୁ ସ୍ୱାଇଁ, "ଆମର ଏଇ ଶେଷ କଥା ଯାହା ବିଚାରିଛୁ କଟେଷ୍ଟ କରିବୁଁ । ତୁ ନା ତୋର ବାପା ଆସିଲେ ବି ଅମକୁ ହଟାଇ ପାରିବେ ନାହିଁ ।"

ବଇଆ ଭାବିବାକୁ ଲାଗିଲା, ପଧାନେ ଶୁଣିଲେ ତାଙ୍କ, ଭାଙ୍ଗିବେ ପଛେ ନଇଁବେ ନାହିଁ । ଲୋକଙ୍କର କଥା ରଖି, ଯଦି ଗୋଟିଏ ମରେଇ ଖାଙ୍କି ଗାଁ ଲୋକଙ୍କୁ କିଛି କିଛି ଦେଇଥାନ୍ତେ, ଲୋକେ ବି ଥାଇତ ହୋଇଯାନ୍ତେ, ତାଙ୍କର କିଛି ଅନିଷ୍ଟ ହୁଅନ୍ତା ନାହିଁ । ବରଂ ତାଙ୍କର ନାଁ ଡ଼ାକ ଯଶଯାନ୍ତା, ଧର୍ମ ହୁଅନ୍ତା, ଲୋକେ କଲ୍ୟାଣ କରନ୍ତେ, ଆହୁରି ବି ବଢ଼ନ୍ତ

ହଅନ୍ତା । ଯେତେ କହିଲେ ଶୁଣିବେ ନାହିଁ । ଓଲଟି ମାରିବାକୁ ଧାଇଁବେ । ଏଣେ ବ ଖାଇବା ବନା ଲୋକେ ହାଁ ହାଁ ହେଉଛନ୍ତି । ଧର୍ମ ଅଧର୍ମ ଭଲ ମନ୍ଦ ବୁଝିବାକୁ ତାଙ୍କର ବେଳ ନାହିଁ । ପେଟ ପାଇଁ ସେମାନେ ଯାହା ବସ୍ତୁର-ଛନ୍ତି ନଷ୍ଟେ କରିବେ । ଜୀବନ ଉପରେ ପଡ଼ିଲେ ଲୋକ ସବୁ କରିପାରେ । ଲୋକଙ୍କର କଥା ନ ମାନିବା ମାନେ ନିଜର ସର୍ବନାଶ କରିବା । ସତ କଥା; କାରଣହ ବଡ଼େଇରେ ଦାଏ ନା ପୁଅରେ ଦାଏ । ଭଲରେ ଭଲରେ ପଧାନେ ଶୁଣୁ ନାହାନ୍ତି । ଏକୁଟିଆ ଲୋକ; ତଥାପି ମନରେ ଭୟ ନାହିଁ । ବଇଆ ସିନା କହିବ । ନ ଶୁଣିଲେ, ଗାଁ ଲୋକଙ୍କୁ ଛାଡ଼ି ଇଣେ ଲୋକଙ୍କୁ ଗୃହିଁବ ନାହିଁ ତ । ଗାଁଲୋକେ ରଗିଲେ ତାର ବ ପତ୍ତା ରହିବ ନାହିଁ ।

ବଇଆ କହିଲା, "ଆପଣମାନେ ରଗୁଛନ୍ତି କାହିଁକି ? ମୁଁ ଯାହା କହୁଛି ଶୁଣନ୍ତୁ । ଧୈର୍ଯ୍ୟ ଧରନ୍ତୁ । କାଲି ସକାଳେ ମୁଁ ଯାଇ ଖାମିନ୍ଦଙ୍କୁ ବୁଝାଇ କହେ । ଅନ୍ତତଃ ଗୋଟାଏ ମରେଇ ଭାଙ୍ଗି ଗାଁ ଲୋକଙ୍କୁ ଦଅନ୍ତୁ । ସେ କଣ କହୁଛନ୍ତି ଦେଖା ଯାଉ । ଖୁବ୍ କରି କହିବ,ଖୋସାମତ କରିବ,ଡ଼ର ଦେଖା-ଇବ । ଶେଷକୁ ନାହାଁତ ଯଦି ସେ ନ ମାନନ୍ତି, ବୁଝିବ ବୁଢ଼ାକୁ ଧର୍ମ ଛାଡ଼ିଲା । ତେଣିକି ଯାହା ବୁଦ୍ଧି ଦଶିବ କରିବା । ଆଖି ଆଗରେ ହାତ ପାହାଣିରେ ଖାଦ୍ୟ ଥାଉ ଥାଉ ଗାଁଲୋକେ କଣ ଛତର ଉଣ୍ଡି ବୁଲିବା ?"

ଭଗୀ ଜେନା ଖୁସି ହୋଇ କହିଲା, "ଆରେ ସାବାସ୍ ବଇଷିମ ! ପିଲ-ଟାଏ ତ—!"

ଗୋବିନ୍ଦ କହିଲା, "ସେ ବୁଦ୍ଧିଆ ପିଲା । କହିଦେଲେ ବୁଝିଯାଏ ।"

ସ୍ରମ ଭୋଇ, "କାଉସି ସାହାର ଟୋକ ସେ । ଖଡକୁଡ଼ରେ ମାଣିକ । ତାର ଗୃହଅଡ଼େ ନଜର ।"

ବଇଆ ନିଜକୁ ଗୌରବାନ୍ୱିତ ମନେ କରି ପ୍ରଶଂସାରେ ଖୁସି ହୋଇ କହିଲା,"ରାତ ବେଶି ହେଲାଣି, ଆପଣମାନେ ଯାଉନ୍ତୁ । କାଲି ଏତିକବେଳକୁ ଦେଖା ।"

ସମସ୍ତେ ଉଠି ବାହାରିଗଲେ ।

× × ×

ଗୋବିନ୍ଦ ସାହୁ ରାତି ଅଧରେ ଘରେ ପହଞ୍ଚିଲେ । ରେଣୁ ବୋଉ ଶୁହିଁ ବସିଥାନ୍ତି । ସ୍ୱାମୀଙ୍କୁ ଦେଖି ସେ ରଗିଯାଇ କହିଲେ, "ରାତ ଅଧ ଯାଏ

କେଉଁଠି ଯାଇ କଚେଶ୍ କରୁଥାଅ । ମାଇପୀ ଘର,ଅଜା,ଭଲ ଅଛ୍ଛ ମନ୍ଦ ଅଛ୍ଛ । ଝିଙ୍କଏ ସହଳ ସହଳ ଆସିବାକୁ ବଧାଡା କହେ ନାହିଁ ? ଘରେ କଣ ଅଉ କାହାକୁ ଛାଡ଼ିଯାଇଥିଲ ?"

ଗୋବନ୍ଦ ସାହୁ ନରମ ହୋଇ କହଲେ,"କାମରେ ଯାଇଥିଲି,ସରଲେ ତ ଫେରବ । ଉମା କାହିଁ ?"

"କେଜାଣି କେଉଁ ଚୁଲିକୁ ଗଲା ନିଅଁ ଲଗାର ମୁହିଁ ଦନ ଦନ ବଢ଼ି-ଗଲଣି । ଚଷା ଟୋକା କଗୁଆର ମୁହିଁ ପାଇ ସେ ପରା ଇନ୍ଦ୍ରଚନ୍ଦ୍ର ମାନ୍ ନାହିଁ । ମୁହେଁ ମୁହେଁ ଜବାବ । ଅଜ ତା ମୁହିଁ ଭାଙ୍ଗିଛି । ଯାଉ ଯୁଆଡେ ଇଚ୍ଛା ।"

ଗୋବନ୍ଦ ସାହୁର ମୁହଁରୁ ପଦେ କଥା ବାହାରିଲା, "ଅଃ…!"

ରେଣୁ ବୋଉ କବାଟ କଲଲେ ।

## —ଅଠର—

ଯେଉଁ ଦନ ଜଗୁ ରେଣୁ ବୋଉଙ୍କ ସଙ୍ଗେ ଉମା ବଷୟରେ କଥା କର ସ୍ୱଇଚ୍ଛାରେ ଉମାର ସବୁ ଭାର ବହନ କରବ ବୋଲି କହି-ଅସିଲା, ସେହ ଦ୍ୱଢରେ ଗୋବନ୍ଦ ସାହୁ ଘରେ ସତେ କ ଆନନ୍ଦର ଢେଉ ଖେଳିଗଲା । କେତେ ଦନର ଉପାସ ଅଧଉପାସ ପରେ, ଉମା ପେଟ ପୂରାଇ ଶାନ୍ତିରେ ମୁଠିଏ ଖାଇବାକୁ ପାଇଲା । କେତେ ଯତ୍ନ, କେତେ ଆଦର, କେତେ ପ୍ରଶଂସା ତାକୁ । ତାର ଗୋଡ଼ରୁ ମୁଣ୍ଡ ଯାଏ ସବୁ ସୁନ୍ଦର, ପ୍ରତ୍ୟେକ କଥା କେତେ ମିଠା, ଢଙ୍ଗଢାଙ୍ଗ ଭାର ଭଲ । ସାରା ସଂସାରରେ ଏପର ଗୋଟାଏ ଝିଅ ନାହିଁ ନ ଥିବ । ଖୁଡ଼ୀଙ୍କଠାରୁ ଏପର ବ୍ୟବହାର ସେ କେବେ ପାଇ ନ ଥିଲା । ପାଇବ ବୋଲି କେବେ ଆଶା ମଧ କର ନ ଥିଲା । ଭାଗ୍ୟ ତ ସବୁ କରାଏ । ବୋଉ ମରିଯିବା ସଙ୍ଗେ ସଙ୍ଗେ ତାର ମନ୍ଦ ଭାଗ୍ୟଟା ଓଲଟିପଡ଼ିଲା କ ଆଉ !

ଧନ୍ୟ ଆଶା ! ଆଶାର ପ୍ରଭାବରେ ପାଗଲ ଦାଦ ଖୁଡ଼ୀ ଯେପର ଖରାପରୁ ଭଲ ପାଲଟିଗଲେ, ସେହ ଆଶାର ଇଙ୍ଗିତରେ ଉମାର ମଧ ମନରେ ଦମ୍ଭ ଆସିଲା । କୁସୁମ ଚରଣରେ ପଡ଼ କଷ୍ଟରେ । ଉମା ପାଇଁ ହୁଏ ତ ଗୋବନ୍ଦ ସାହୁର ଅବସ୍ଥାଟା ବଦଳିଯିବ । ପାଞ୍ଚଟା ଦୁର୍ଭିକ୍ଷ ଆସିଲେ ବ

ବାଇଆ ଚଢ଼େଇର କି ଯାଏ; ବାଆ କଲେ ବସା ଦୋହଲୁଥାଏ ! କିନ୍ତୁ କିଏ ଜାଣେ,ଯେଉଁ ଆଶାରେ ସେ ବାହୁଙ୍ଗା ଦେହରେ ବସା ରଚିଛନ୍ତି, ପବନର ଗତିଟା ବଦଳିଗଲେ କି ବାଆର ପ୍ରକୋପ ବଢ଼ିଲେ ବାହୁଙ୍ଗା ସୁଦ୍ଧା ହିଡ଼ିପଡ଼େ ରସାତଳରେ—ବିରାଟ ଗଛଟା ବି ଭାଙ୍ଗିଯାଏ । ତଥାପି ରାତିରେ ସେ ଦିନ ଦି ପ୍ରାଣୀଙ୍କର ନିଦ ହେଲା ନାହିଁ । କେତେ ସୁଖର ଜାଗ୍ରତ ସ୍ୱପ୍ନରେ ବିଭୋର ରହି ରାତି ବିତିଲା ।

ଉମାର ଅବସ୍ଥା ମଧ୍ୟ ଠିକ୍ ସେହିପରି । ଜଗୁ ଭାଇର ଅନାଗତ ଦୟା ପାଇଁ ମନେ ମନେ ସେ କେତେ କୃତଜ୍ଞତା ଜ୍ଞାପନ କଲା । ରାତିରେ ଶୋଇ ଶୋଇ କେତେ ସୁନେଲି ସ୍ୱପ୍ନ ଦେଖିବାକୁ ଲାଗିଲା । ଗାଲରେ ସତେ କି ତାର ଲାଜ ଫୁଲ୍ ଉଠିଲା । ଜଗୁ ଭାଇ ତାକୁ ଭଲ ପାଏ ! ଆହା ! ବାଳିକାର ଚପଳ ମନ କେତେ ସୁଖରାଜ୍ୟର ଯାତ୍ରୀ ହୋଇ ନିଜର ଅବସ୍ଥା ଭୁଲି ନୂତନ କଳ୍ପିତ ଜୀବନର ସୁଖସ୍ୱପ୍ନରେ ସମୟ କାଟିଲା !

ପରଦିନ ଅଠଟା ବେଳେ ଉମା ନିତ୍ୟକର୍ମ ସାରି ମନ୍ଦାଏ ତୋରାଣି ଧରି ବସିଛି, ତେଣୁ ଗୋବିନ୍ଦ ସାହୁ ବ୍ୟଗ୍ର ହୋଇ ଆସି ଘରେ ପହଞ୍ଚି ରେଣୁ ବୋଉଙ୍କୁ ଡାକି ଛାଡ଼ିଲେ । ରେଣୁ ବୋଉ ବାଡ଼ିପଟୁ ଆସି ପ୍ରଥମେ ପଚାରିଲେ, "ଜଗୁକୁ ପାଇଲ ?"

ଗୋବିନ୍ଦ ସାହୁ ମୁହଁ ଫଣ ଫଣ କରି କହିଲେ, "ଯାଃ, ତମର ସବୁ ଭଣ୍ଡ କାରବାର ! ଏ ବଗୁଲିଆ ଛତରା ଟୋକାଙ୍କର କଥାରେ ପଡ଼ିତେ ଯାଅ କାହିଁକି ! ଆରେ ଶୁଣିଲଣି, କାଲି ଏଣୁ ଯାଇ ବୁଢ଼ା ସଙ୍ଗେ କଳିକଜିଆ କରି ରେଣୁକୁ ନେଇ କୁଆଡ଼େ ପଳାଇଛି ରାତାରାତି । ବୁଢ଼ା ବିଚରା ବଡ଼ ବ୍ୟସ୍ତ । ସେ ତ ଗଲା ଗଲା, ପିଲାଟାକୁ ଯାହା ସଙ୍ଗରେ ନେଇଗଲା !"

ରେଣୁ ବୋଉଙ୍କ ମୁଣ୍ଡରେ ସତେ କି ପାହାଡ଼ ଠଳପଡ଼ିଲା । ସେ ଥକା ହୋଇ ଠିଆ ହୋଇ ଅବାକାବା ହୋଇ ସ୍ୱାମୀଙ୍କ ମୁହଁକୁ ଚାହିଁ ପଚାରିଲେ, "ଏଁ ସତରେ, କୁଆଡ଼େ ଗଲା ?"

ଗୋବିନ୍ଦ ସାହୁ କହିଲେ,"କେହି ଜାଣନ୍ତି ନାହିଁ । ଥରେ ସେ ଯୁଆଡ଼େ ଯାଉ ସେଥିରୁ ଆମକୁ କଣ ମିଳିବ । ବୁଢ଼ା ମୋ ଉପରେ ଭାରି ଖପା ।

ଅସଭ୍ୟ ସଭ୍ୟ କର ; ଯାହା ତ ଶୋଧିବାର ଶୋଧିଲ । ମୋତେ ମାରେ ନ ମାରେ ।"

"ମଲା ମୋର, ତାହାଁକୁ ବା ?"

"କହୁଛି, ତୋର ପାଇଁ ପିଲାଟା ମୋର ଖରାପ ହୋଇଗଲା । ହିଁ ଅସ୍ପ-ଟାକୁ ଯାବତା କର ରଖୁ ନାହୁଁ । ଆକଟ ନାହୁଁ । ଯୁଆଡେ ଇଚ୍ଛା ସିଆଡେ ବୁଲିବାକୁ ଛାଡ ଦେଉଛ ।"

ଗୋବନ୍ଦ ଉମାକୁ ଗୃହୁଁଲା । ଉମା ପଖାଳ କଂସାରୁ ଗୁଣ୍ଡିଏ ଭାତ ନେଇ ପାଟିରେ ଦେବାକୁ ଯାଉଛି, ତାର ସମ୍ବନ୍ଧରେ କଥାଟା ଉଠିବାର ଶୁଣି ସେ କଣ ଭାବିଲା କେଜାଣି ଗୁଣ୍ଡାଟି କଂସାରେ ଥୋଇ ପଖାଳ ଛାଡ଼ ଧୀରେ ଧୀରେ ଶ୍ୱେଷଘର ଭିତରକୁ ଗଲା । କବାଟକୁ ସାମାନ୍ୟ ଅଉଜାଇ ସେ ବାଜୁକୁ ଅଉଜି ମନମାରି ଠିଆ ହେଲା ।

ଗୋବନ୍ଦ ସାହୁ କହିଲା, "ବୁଢ଼ା କହୁଛି—ଟଗୁଟା ଉମୀ ଉମୀ ହୋଇ ପାଗଳ ହୋଇଗଲା । ମୁଁ ବୁଆଡ଼େ ଜାଣି ଜାଣି ତାକୁ ମିଳାମିଶା କରିବାକୁ ଛାଡ଼ ଦେଉଛି । କଣ କହିବ ? ବୁଢ଼ା ଯାହା କହିଗଲା । ଛି, ଛି,.. । ମୁଁ କାନରେ ହାତ ଦେଇ କୌଣସିମତେ ଧୀରେ ଧୀରେ ଖସି ଚାଲିଆସିଲି । ସେ ଯେଉଁ ନେଟା ! ମୋ ବାପରେ, ଯାହା ବକିଲା, ସେ କଥା ଛାଡ...।"

ଆଶା ଚଢ଼େଇଟା ଉଡ଼ିଯାଉଛି ଅଉ ଧରି ଦେବ ନାହିଁ ବୁଝି ପାରି ରେଣୁ ବୋଉ ରାଗରେ ପାଚିଯାଇ କହିଲେ, "ବୁଆଡେ ଗଲା ସେ ହଟହର୍ଟୀ ନାଁ ପକେଇ ? ଯେତେ କହିଲେ ସେ କି ଶୁଣିବ । ବାହାର ପଡ଼ିଆରୁ ଜଗୁ ଭାଇ, ଜଗୁ ଭାଇ । ବଲେଇ ଆଖି ବୁଜି ଦୁଧ ପିଉଛି । ହସ ତାମସା ନବଜ ! ଯିଏ ଦେଖିବ ସେ କହିବ । ବୁଢ଼ା କଣ ମିଛରେ କହିଲେ ।"

ଗୋବନ୍ଦ ମନଦୁଃଖରେ ପଦାକୁ ବାହାରିଗଲେ; କିନ୍ତୁ ରେଣୁ ବୋଉଙ୍କର ପାଟି ବନ୍ଦ ହେଲା ନାହିଁ । ମୁହଁରେ ଯାହା ଆସିଲା କହି ଉମାକୁ ଗାଳି ଦେବାକୁ ଲଗିଲେ । କେଉଁ ଦିନ କଣ ଘଟିଥିଲା, ସେ ନିଜେ କଣ ଦେଖିଥିଲେ, କାଳକାର ଘଟଣା, ସବୁଥିରେ ସେ ନୂଆ ଅର୍ଥ ନୂଆ ଉଦ୍ଦେଶ୍ୟ ଆବିଷ୍କାର କରି ସେମାନଙ୍କ ମଧ୍ୟରେ ଯେ ଗୋଟାଏ ଭିନ୍ନ ପ୍ରକାର ସମ୍ବନ୍ଧ ଅଛି ତାହାର ପ୍ରମାଣ ଦେବାର ଚେଷ୍ଟା କଲେ—ବଡିଲା ଝିଅଟା । ଚଷା

ଟୋକାଟା ସଙ୍ଗେ ରଙ୍ଗରସ୍ ହେବ ? ଆଉ ଉଢ଼ୁଆଳ ନାହିଁ, ବୁଢ଼ୀ ଘରଣୀ ପର ଅଡ଼ାଧରେ କଥାଭୁକ୍ତା । ଲଜ୍ଜ ସରମର ମୁଣ୍ଡ ଖାଇଛୁ । ତେଣିକି ପୁଣି ଚସୁଁଠା—ଦେଣ୍ଡା ଟୋକା । ଜମୀକୁ ଗେଲ କରିବ, ତା ପିଠି ଆଉଁସିବ । ଛିଆ ଲୋ ! କେବେ ଦେଖା ନାହିଁ କି ଶୁଣା ନାହିଁ । ବେଲଲ୍ଲ କଥା । ମାଇପୀ ଝିଅ । ବଅସ ହେଲେ ଲଜ୍ଜ ସରମ କିଛେ ମନରୁ ବାହାରିବ । ଏ ସବୁ କଣ କିଏ ବତେଇଦିଏ ? ଇତ୍ୟାଦି ।

ଶେଷକୁ କହିଲେ, "ଏତେ ନିନ୍ଦା, ଏତେ ଅପମାନ, ଆମେ ତୋ ନେଇ ସହି ପାରିବୁ ନାହିଁ । ତୁ ଯା, ଯା । ତୋ ଦ ଆଖି ଯୁଆଡ଼େ ଗୃହଁୁଛି—ଯା । ତତେ ତ ଛତର ଯୋଗ ଅଛି ଲୋ, ଭଲ ଯୋଗ ନାହିଁ । ଭଲ କଥା, ହିତ ବଚନ ରୁଚିବ କାହିଁକି ? ଆମର ମାନ ମହତ୍ତ୍ୱ ଗଲା, ଉପର ମୁହଁ ତଳକୁ ହେଲା, ଆଉ କେଉଁଥିକି ଡର • ?"

କାନ୍ଦି କାନ୍ଦି ଅଖିଆ ଅପିଆ ଖଣ୍ଡେ ପୁରୁଣା ଛିଣ୍ଡା ସପ ଉପରେ ପଡ଼ି ଉମାର ତିନି ଦିନ କଟିଲା । ଖିଆପିଆ ତ ତେଣିକି କଥା, କେହି ହେଲେ ଆସି 'କାହିଁକି କାନ୍ଦୁଛୁ' ବୋଲି ପଦେ ପଚାରିଲେ ନାହିଁ । ସବୁ ସିନା ସହି ହୁଏ, ପେଟର ଜାଳା ତ ସହି ହେବ ନାହିଁ । ଆଶା କରିଥିଲା କିଏ ଫେରିବ । ସେ ଆଶା ତାର ମଉଳିଲା । ପାଣି ପିଇ ପିଇ ସେ କେତେ ଦିନ ବଞ୍ଚନ୍ତା ? କିଛି ଗୋଟାଏ ଖାଇବାକୁ ଅଣା ହାକୁଛି । ଖୁଡ଼ୀ ଯେତେବେଳେ ମନକୁ ଯାଚି କରି କିଛି ଦେଉ ନାହାନ୍ତି, ସେ କିଛି କପର ମାଗିବ ? କିନ୍ତୁ ତ ମାଗିଲେ ନ ଚଳେ । ପ୍ରାଣ ରହିବ ନାହିଁ । ଜୀବନ ଥିଲେ ତ ସବୁ ।

ତିନି ଦିନ ପରେ ଯେତେବେଳେ କବାଟ ଖୋଲି ଉମା ପଦାକୁ ଆସିଲା, ବେଳ ପ୍ରାୟ ରତି ରତି ହେଉଛି । ଦେହ ଭାରି ଦୁର୍ବଳ ବୋଧ ହେଲା । ଠିଆ ହେଲେ ମୁଣ୍ଡ ଝାଙ୍କୁଛି । କଣ କରିବ, କେତେ ଦିନ ଅଭିମାନ କରି ଉପାସ ରହିପାରନ୍ତା ? ସେ ଦ୍ୱାର ମୁହଁରେ ବସି ଖୁଡ଼ୀର ଉଦ୍ଦେଶ୍ୟରେ ଏ ପାଖ ସେ ପାଖ ଗୃହଁିଲା । ଖୁଡ଼ୀକୁ ପାଇଲା ନାହିଁ ।

ରେଣୁ ଗୋଟିଏ ଛୋଟ ଗେରୋଇରେ ପୋଷେ ହେବ ମୁଢ଼ି ଧରି ହସି ହସି ଦାଣ୍ଡଘରୁ ବାହାରିପଡ଼ିଲା । ମନଖୁସିରେ ନାଚି ନାଚି ଉମା ପାଖକୁ ଆସୁ ଆସୁ ଦୁଆର ମଝିରେ ଝୁଣ୍ଟିପଡ଼ିଲା । ମୁଢ଼ିତକ ବିଞ୍ଚିଗଲା । ପିଲାଟି ମୁହଁ

ଫଟାଇ ଗଦା ଧରି କାନ୍ଦିବାକୁ ଲାଗିଲା । ଯେତେ ହେଲେ ଉତ୍ତରଣୀ ତ । ଉମାର ଦେହ ସହୁଲା ନାହିଁ । ସେ ଦୁଆର ମୁହଁକୁ ଉଠିଆସି ରେଣୁକୁ ଝାଡ଼ିଝୁଡ଼ି ଦେଲା । ଦୁଆରେ ବଳିଯାଇଥିବା ମୁଢ଼ିତକ ଅସ୍ତେ ଅସ୍ତେ ଗୋଟାଇ ପୁଣି ତାର କ୍ରେଗେଇରେ ପୂରାଇବାକୁ ଲାଗିଲା । ତଥାପି ରେଣୁ ଚୁପ ହେଲା ନାହିଁ ।

କାହିଁ ଥିଲେ, ରେଣୁ ବୋଉ ଏତିକିବେଳକୁ ଧାଇଁ ଆସି ଉମାର ପିଠିରେ ଦି ଗୋଇଠା ମାରିଲେ । ଉମା ଫେରିପଡ଼ି ଘଟଣାଟା କଣ ଜାଣିବା ପୂର୍ବରୁ ସେ ଆଖି ଦେଖାଇ ଗର୍ଜି ଉଠିଲେ, "ଦେଖ ତ, ନିଆଁ ଲାଗୀର କେଡ଼େ ସାହସ ! ଓହୋ ! କୋଉ ଗୁଣ ନାହିଁ କି ! ଏତିକି ଗୋରଣୀ, ଏଡ଼ିକି ଓଲେଇ ଲୋ ମା ! କୁଆଁଟାଠୁଁ ମୁଢ଼ି ଗଣ୍ଡାଏ ଛଡ଼ାଇ ଖାଉଛୁ ଯେ ପିଲାଟା କାନ୍ଦି କାନ୍ଦି ଲୋଟିଗଲାଣି । ଏଡ଼ିକି ଡାଆଣୀ ଲୋ ମା—।"

ଉମା ଏ ସବୁ କଥା ଶୁଣି ଅବାକ୍ ହେଲା । ହା, ଭଗବାନ୍ ! ଶେଷରେ ଏ ଅପବାଦ ବି କପାଳରେ ରଖିଥିଲ । ଭଲରେ ଦୁନିଆ ନାହିଁ । ଭଲ ଭଲଠୁଁ ଅପବାଦ । ମଣିଷ ଦେହ, ମଣିଷ ମନ, କେତେ ସହିବ ? ଉମା ଆଖି ମଳି ମଳି କାନ୍ଦଣା ସ୍ୱରରେ ପ୍ରତିବାଦ କରି କହିଲା, "ଖୁଡ଼ୀ, ତାର ମୁଢ଼ି ବୁଣିଗଲା ଯେ।..."

ବାଧା ଦେଇ ରେଣୁ ବୋଉ କହିଲେ; "ଚୁପ୍ ଚୁପ୍, ପୁଣି ଜବାବ ଦେଇ ମୋତେ ମିଛେଇ କରୁଛୁ ? ହଇଲୋ, ତୁ ଏଡ଼ିକି ସଜାଟା । ମୁଁ ସବୁ ଦେଖିଛି ଲୋ, ସବୁ ଦେଖିଛି ।"

ଉମା ଚୁପ ହୋଇ ଭାବିବାକୁ ଲାଗିଲା, ଆଉ ଏଠାରେ ରହି ହେବ ନାହିଁ ! ଯେଉଁଠି ମିଛକୁ ସତ ଫଳେଇ ମୁହେଁ ମୁହେଁ କହି, ମିଛଟାରେ ଗୋଡ଼ ସୁଖ କରୁଛନ୍ତି, ସେଠି ଆଉ ଚଳି ହେବ ନାହିଁ । ସେ ମୁହେଁ ମୁହେଁ କହିଲା, "ଖୁଡ଼ୀ, ତମର ମନ କଥାଟା ସଫା ଖୋଲି କରି କହୁନା କାହିଁକି ? ତମମାନଙ୍କ ମନରେ କଷ୍ଟ ଦେଇ ତମର ଚକ୍ଷୁଶୂଳ ହୋଇ ମୁଁ ବଞ୍ଚି ରହିବାକୁ ଚାହେଁ ନା । ସତ କଥାଟା ଖୋଲି କରି ନ କହି ମୋତେ ଏତେ ଦନ୍ଦଗଞ୍ଜ କରୁଛ......।" ଉମା ଆଖି ପୋଛିଲା ।

ରେଣୁ ବୋଉ ପୂର୍ବପରି ରୁକ୍ଷ ସ୍ୱରରେ କହିଲେ, "ତୁ ବୁଆଡ଼େ ଯା ଲୋ ଜମୀ, ତୁ ବୁଆଡ଼େ ଯା । ତୋତେ ଘରେ ରଖି ଆମେ ଆଉ ଏତେ ହନ୍ତସନ୍ତ ହୋଇ ପାରିବୁ ନାହିଁ, ତୋ ନେଇ ପାଞ୍ଚ ମୁହଁରୁ ପାଞ୍ଚ କଥା ଶୁଣି ପାରିବୁ ନାହିଁ ।"

"କୁଆଡେ ଯିବ ଖୁଡ଼ୀ ? ତମ ଛଡ଼ା ସଂସାରରେ ମୋର ଆଉ କିଏ ଅଛି ?" ଜମା କାନ୍ଦିବାକୁ ଲାଗିଲା । ତାର କରୁଣ ସ୍ୱର ଛଟପଟ କଥା ଶୁଣି ମଧ୍ୟ ରେଣୁ ବୋଉଙ୍କର ପଥର ଛାତି ତରଳିଲା ନାହିଁ ।

ସେ କହିଲେ, "କୁଆଡ଼େ ଯିବୁ, ସେ କଥା କଣ ବତେଇଦେବି ମୁଁ......?"

ଜମା ଖୁଡ଼ୀଙ୍କର ଗୋଡ଼ ଧରି କହିଲା, "ତମର ଗୋଡ଼ ତଳେ ପଡି ରହିବା ଛଡ଼ା ମୋର ଆଉ ଅନ୍ୟ ଗତି ନାହିଁ ।"

ରେଣୁ ବୋଉ ଘୁଞ୍ଚି ଆସି କହିଲେ, "ଏ ବୁଦ୍ଧି ଯଦି ତୋତେ ଆଗରୁ ଦିଶିଥାନ୍ତା ଲୋ ଜମୀ, ତୁ ଆଜି ଏପରି ହୋଇଥାନ୍ତୁ କାହିଁକି ? ଟଙ୍କା ଟୋକା ତ ତୋତେ ଭେଳକି ଲଗାଇଲା, କାହାର ଦୋଷ ? ନିଜ କର୍ମ ନିଜେ ଭୁଞ୍ଜ । ଯା ସେଇ ଢଗୁଆ ପଛେ ପଛେ ଯା । ମୁଁ ଆଉ ତୋର ଦାୟିତ୍ୱ ନେଇ ପାରିବି ନାହିଁ କି ତୋ ନେଇ ବାର ଅପବାଦ ଶୁଣି ପାରିବି ନାହିଁ ।"

ଜମା ଉଠି ପୁଣି କହିଲା, "ଖୁଡ଼ୀ ତମର ମନ କଥା ମୁଁ ବୁଝିଲି । ତଡ଼ି ଦେବ ତ, କଥାଗୁଡ଼ା ଏମିତି ବୁଲେଇ କରି କହୁଛ କାହିଁକି ? ମୋର ବାପା ବୋଉ ଯଦି ଆଜି ବଞ୍ଚିଥାନ୍ତେ ଖୁଡ଼ୀ, ମୋ ନାମରେ ତମେ ଏତେ କଥା ଉଠାଇବାକୁ ସାହସ କରି ନ ଥାନ୍ତ । କପାଳ ଲେଖା... ।"

ରେଣୁ ବୋଉ ବିଦ୍ରୂପ କରି ହସିଉଠିଲେ । ଦେହକୁ ଦୁଆଇଁ ଜମାର ମୁହଁ ପାଖରେ ହାତ ଦେଖାଇ ନର୍ତ୍ତକୀର ଭଙ୍ଗୀରେ କହିଲେ, "ଯା ଲୋ ଯା, ତୋ ବୋପା ମା ଆଗରେ ମୋ ନାଁରେ ଗୁହାରି କରିବୁ ।" ଢଗ ମେଲିଲେ, "କଣ କରିବଟି, ହାଣ୍ଡିଟା ଭିତରେ ପିହାଣଟାଏ ମୁଁ ଟମକି ପକାଇବଟି— ।"

ଉମା ତାର ଖୁଡ଼ୀ ମୁହଁକୁ ଚାହିଁ କହିଲା, "ଖୁଡ଼ୀ, କେତେ କେତେ ଲୋକ ଛତରରେ ପଶିଲେ । ମୁଁ ବି ଯାଇଁ ଛତର ଖୋଜିବି, ମୋର ସେଥିକି ଲାଜ ନାହିଁ । ଶହ ଶହ ଲୋକ ମରି ମଶାଣି ଭୂଇଁରେ ଶୋଇଛନ୍ତି । କଟକରେ ଥିଲେ ମୋର ବି ସେହି ଦଶା ହେବ । ସେଥିକି ମୋର ଦୁଃଖ ନାହିଁ । ମୁଁ ମଲେ ମୋ ପାଇଁ କେହି କାନ୍ଦିବେ ନାହିଁ ।"

ଅଶ୍ରୁ ଭରି ରେଣୁ ବୋଉ କହିଲେ, "କାହିଁକି ? ଜଗୁଆ ଅଛି କାନ୍ଦିବ ।"

ଆଖିର ଲୁହ ପୋଛି ଉମା କହିଲା, "ସତ କଥା । ଜଗୁ ଭାଇ ଯଦି ଖବର ପାଏ, ଏକା ସେହି ଟିକିଏ ମୋ ପାଇଁ ଦୁଃଖ କରିବ । ଖୁଡ଼ୀ, ତମ ପାଇଁ ଉପରେ ଧର୍ମ ଅଛି, ମୋତେ ଘରୁ ତଡ଼ିଲେ ତମର ଦଣ୍ଡ ହେବ ?"

ଏତିକି କହି ଉମା ରେଣୁକୁ ନିଜ କୋଳକୁ ଟାଣିଆଣିଲା । ଆଖିରେ ଲୁହ ଭରି ତାର ମୁଖ ଚୁମ୍ବନ କରି କହିଲା, "ଯାଉଛି ରେଣୁ, ଆଖି ଯୁଆଡ଼େ ନେବ ଯିବି । ସଞ୍ଜବୁଡ଼ର ଅନ୍ଧାରଟା ଏଇ ଘୋଟି ଆସୁଛି । ସମସ୍ତେ ତାରି ଭିତରେ ବୁଡ଼ିଯିବେ; ମୁଁ ବି ବୁଡ଼ିଯିବି । ସେଥିକି ମୋର ଦୁଃଖ ନାହିଁ ।"

ଉମା ରେଣୁକୁ କୋଳରୁ ଓହ୍ଲାଇ ବାଡିକବାଟ ବାଟେ ପଦାକୁ ବାହାରିଗଲା । ରେଣୁ ବୋଉ କବାଟ ପାଖେ ଯାଇ ଉମାର ଗଲାବାଟକୁ ଚାହିଁ ରହିଲେ । ଉମାର ଦେହଟି ଅନ୍ଧାର ଭିତରେ ଗଛ ବୁଦାଡ଼ରେ ଲୁଚିଗଲା । ରେଣୁ ବୋଉ ଦୀର୍ଘଶ୍ୱାସ ଛାଡି କବାଟ କିଳିଲେ ।

କବାଟ କିଳିଲେ; କବାଟ ପାଖରୁ ଫେରି ଆସିବାକୁ ଗୋଡ଼ ଚଳିଲା ନାହିଁ । ସତେ କି ତାଙ୍କର ପେଟ ଭିତରେ ନିଆଁ ହୁଳା ଜଳିଉଠିଲା । ମୁଣ୍ଡ ବୁଲାଇବାକୁ ଲାଗିଲା । ସେ ଭାବିଲେ,—ଆହା, ସତେ କଣ ଛେଉଣ୍ଡ ପିଲାଟା ଘର ଛାଡ଼ି ଛତର ଭିତରକୁ, ଦାଣ୍ଡକୁ ଡେଇଁ ପଡ଼ିଲା, ତାଙ୍କରି ପାଇଁ ? କି ଦୋଷ କରିଥିଲା ସେ ? ନିର୍ଦ୍ଦୋଷ, ନିର୍ଦ୍ଦୋଷ । ଉମା ବଡ଼ ନିରୀହ, ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ! ସତୀ ସୁଲକ୍ଷଣୀ ଉମା ଘରୁ ଗୋଡ଼ କାଢ଼ିଲା ! କେତେ କାନ୍ଦିଛି, କେତେ ସହିଛି, କେତେ ନେହୁରା ହୋଇଛି; ଧର୍ମ ସହିବନି ! କେଜାଣି କିପରି ତାଙ୍କର ଆଖିରେ ଲୁହ ଆସିଲା । ସେ ବଡ଼ ଅସ୍ଥିର ହୋଇପଡ଼ିଲେ । ନା, ଉମା ଫେରିଆସୁ, ଘର ଝିଅ ଘରକୁ

ଫେରିଅସୁ । ସେ କବାଟ କଳଣାରେ ହାତ ରଖିଲେ । ହାତ ଚଳିଲା ନାହିଁ । ଥାଉ, ସେ ଯାଉ, ଅଗେ ଯାଉ । ସମସ୍ତଙ୍କୁ ତ ଯିବାକୁ ହେବ ଦିନେ ତାବି ପଛେ ପଛେ—ତାର ବାଟ ଉଣ୍ଡି—ସ୍ପର୍ଶ ଦୁର୍ଭିକ୍ଷ—ତାଷାରକ୍ଷଣ ନାହିଁ ।

## —ଉନ୍‌ଚାଳିଶ—

"ମା ଅଜ୍ କାନ୍ଦିଲେ ହେବ କଣ ? କପାଳରେ ଷଠୀ ଯାହା ଲେଖିଛୁ କାହୁଁ କାହୁଁ ଆସି ଘଟିବ । ସେଥିକି ଦୁଃଖ କଣ ?" କହୁ କହୁ ମୋଟି ମା ନିଜେ କାନ୍ଦିପକାଇଲା । ନିଜ ହାତରେ ଜମା ଅଖିର ଲୁହ ପୋଛୁ କହିଲା—"ଖାଇଦେ ଭୁଜା ଦିଓଟି । ଛନ ଦିନ ହେଲା ପେଟରେ ତୋର ଦାନା ପଡ଼ି ନାହିଁ ପରା !" ବୁଢ଼ୀ ନିଜ ହାତରେ ମୁଠିଏ ଭୁଜା ନେଇ ଜମା ପାଟିରେ ଦେଲା ।

ଜମା ସେତକ ଗ୍ରୋବାଇ ଢୋକ ଦେଇ କହିଲା—"ମୋର ଗତି କଣ ହେବ ମୋଟି ମା ! ବାଧ ହୋଇ ସିନା ଖୁର୍ଦ୍ଦୀର ଅଗରେ ଘର ଛାଡ଼ ଗୁଲି ଆସିଲି, ମୋର ମୋଟେ ଇଚ୍ଛା ନ ଥିଲା । ଖାଇବା ବିନା ପଛେ ସେହି ଘରେ ପଡ଼ ମରିଥାନ୍ତି, ହେଲେ ସେ କଣ ମୋତେ ଶାନ୍ତିରେ ମରିବାକୁ ଛାଡ଼ ଦେଇଥାନ୍ତେ କି ! ଯେଉଁ ଗଞ୍ଜଣା !"

"ଭଲ କଲୁ ଲେ ଗୁଲିଆସିଲୁ ! ସଂସାରଟା ତ ଆମ ଆଗରେ ଖୋଲା ପଡ଼ିଛି; ଜୀବନ ରକ୍ଷାର ଚେଷ୍ଟା କରିବା, ରହିଲେ ରହିଲା, ନୋହିଲେ ଏଇ ଖୋଲା ଆକାଶ ତଳେ ବିଶାଳ ଧରିତ୍ରୀ କଅଁଳ ବାଲି ଶେଯ ଉପରେ ଅବଶ ଦେହ ବିଛାଇ ଦେଇ ଶାନ୍ତିରେ ଆଖି ବୁଜିଦେବା ଚିର ଦିନକୁ !"

"ସେଥିକି ମୋର ଡ଼ର ନାହିଁ । ତେବେ ଗାଁ ଛାଡ଼ ଆମେ ଯିବା କୁଆଡ଼େ ? କାହା ଓଳିତଳେ ଅଶ୍ରା ନେବା, ପେଟ ପାଇଁ କାହାର ମୁହଁରେ କାହା ପାଖରେ ହାତ ପାତିବା ମୋଟି ମା ? ମଣିଷ ଜନ୍ମ ପାଇ ଆମର ଏ ରକ୍ତମାଂସ ଦେହ ସହିବଟି ?"

ମୋଟି ମା ଉଚ୍ଚସ୍ୱରରେ ହସି କହିଲା—"ଭଲ କଥା ପଚାରିଛୁ ଜମୀ ମୋର ତୁଣ୍ଡରୁ ସବୁ ଶୁଣ ।" ମୋଟି ମା ଟିକଏ ରହି କହିଲା—"ଗୁହା ଦେଖି

ଉପରକୁ ଉମୀ ! ଉଃ, କେତେ ଅନ୍ଧାର ଘଡିଚା ! ଶୁଣୁଛୁ କଣ କେମିତି ଗର୍ଜୁଛି ? ଏ କନ୍ଥକିଆ ଘଡି ଅଧରେ ଏଇ ଗାଁ ବରଗଛ ମୂଳରେ ଅମେ କଣ ଏକୁଟିଆ ଅନ୍ଧାରରେ ବସିଛୁ ? ନାଇଁ ଲୋ ଗୃହାଁ ଥରେ ଉପରକୁ । ଦେଖ ତ ଆମ ପାଇଁ କଏ କେତେ ଅଲୁଅ ଜାଳି ରଖିଛି । ଅଲୁଅ ପାଇଁ ଭାବନା ! ଶାଳ ମହିରୁ ବଲୁଆ ପଲ ଭେଡ଼ି ଛଡଉଛନ୍ତି । ଅଲେ ସେହି ତ ଅମର ସାଥୀ ସାହାଭରସା । ଯେତେବେଳେ ସାରା ସଂସାର ଅମକୁ ଘୃଣା କରି ଫିଙ୍ଗି-ଦେଇ ଅସିବେ, ସେତେବେଳେ ଏହିମାନେହିଁ ଅମକୁ ଆଦର କରି କୋଳକୁ ନେବେ । ତେବେ ଅଉ ଭାବନା କଣ ? କାହା ଓଳତଳେ ଆମେ ଅଶ୍ରା ନେଉବା କାହିଁକି ? ଯାହା ଓଳତଳେ ଆମେ ଅଛି ଅଶ୍ରା ନେଇଛୁ, ସେମିତି କେତେ ଅଶ୍ରା ଅମକୁ ମିଳିଯିବ ।

"ମୁଠିଏ ଭାତ ପାଇଁ ପର ଆଗରେ ହାତ ପତାଇ ଦାନ୍ତ ନକୁଟି ଭିକ ମାଗିବା ? ବେଶ ତ, ସେଥିକି ଆମର ଲାଜ ନାହିଁ । ଅମେ ମଣିଷ । ଯାହା ପାଖରେ ଗୋଡ଼ ଭାଙ୍ଗି ହାତ ପତାଇବା ସେ ବି ମଣିଷ । ଆଜି ଆମେ ତଳ ହାତରେ ମାଗୁଛୁ ସେ ଦେଉଛି । ସେ ଯଦି ଅମ ପରି ହୋଇଥାନ୍ତା ସେ ମାଗନ୍ତା ଅମେ ଦଅନ୍ତୁ । ଯିଏ ଦିଏ ସେ ବି ଶେଷରେ ଧୂଳିରେ ଲୋଟେ ଅମେ ବି ହେଲୁ ଟିକେ ସହଳ ସହଳ ଶୋଇବା, ଏଇ ତ ! ଅମ ପରି, ଅମଠୁଁ ବଳି ଶହ ଶହ ଲୋକ ତ ଆଜି ବାଟର ଭିକାରି ଲୋ ମା; ଅମେ ବା କେଉଁ ମଣିଷରେ ଲେଖା ।

"ରକ୍ତମାଂସ ଦେହ ସବୁ ସହେ, ସବୁ ସହିପାରେ, ଅମେ ବି ସହିବା । କଷ୍ଟ କାହାକୁ କହୁଛୁ ? ଜୀବନ ଧରି ରହିବାକୁ ଯେଉଁ ଯନ୍ତ୍ରଣା, ଯେଉଁ କଷ୍ଟ, ଯେଉଁ ଚେଷ୍ଟା, ତାକୁହିଁ ତ ମଣିଷ ଅନନ୍ଦ କହେ, ନୋହିଲେ ମଣିଷ କଷ୍ଟ ସହି ବଞ୍ଚି ରହିବାକୁ ଇଚ୍ଛା କରେ କାହିଁକି ? ପଦେ ପଦେ ଯନ୍ତ୍ରଣାର ତତଲ କରେଇରେ ସନ୍ତୁଳି ହୋଇ ଯେତିକି ଆଗକୁ ଅଗକୁ ଗୁଲୁଥିବା ଉମା, ଜୀବନର ପ୍ରକୃତ ମୂଲ୍ୟ ଅମେ ସେତିକି ଭଲ କରି ବୁଝିପାରୁଥିବା । ବଞ୍ଚିବାକୁ ମମତା ସେତିକି ବଢି ବଢ଼ି ଯାଉଥିବ । ଯେ ମରେ ସେ ପହିଲୁ ମରେ । ଯେ ନ ମରେ ସେ ଅଉ ମରିପାରେ ନାହିଁ, ମରିବାକୁ ତାର ଇଚ୍ଛା ହୁଏ ନାହିଁ । ବଞ୍ଚିବାକୁ ସେ ଆତୁର ହୁଏ । ସବୁ ସହେ, ଲାଜସରମ,

ଲୋକ ଦେଖଣା କଥା । ବେଶି ଦିନ ରହିବେ ନାହିଁ ଲୋ ଉମା ! କାହିଁକି ରହିବ ? କଷ୍ଟ ପାଇଲେ, ସହିଲେ ଯିନା ମଣିଷ ବୁଝିବ, ସେ କଣ ? ଥରେ ବୁଝିଲେ, ଆଉ ତାର ଲାଜ କଣ ? ସମସ୍ତେ ତ ଏକା ପରି ।”

ବରଗଛ ତଳ ଧୂଳି ଉପରେ ବସି ଉମା ସ୍ଥିର ହୋଇ ମୋଡ଼ା ମାର ସବୁ କଥା ଶୁଣିଗଲା । ମନକୁ ମନ କେତେ କଣ ଭାବି ସେ କହିଲା, କୁଆଡ଼େ ଯିବାକୁ କହୁଛୁ ମୋଡ଼ ମା ! ଏ ଗାଁରେ ଆଉ ଦଣ୍ଡେ ରହିବାକୁ ମୋର ଇଚ୍ଛା ନାହିଁ ।” ଉମା ପୁଣି ଭାବିଲା—ଜଗୁ ଭାଇ ଯଦି ଫେରିଆସି ତାକୁ ଖୋଜେ ? ସେ ନିଶ୍ଚୟ ଫେରି ଆସିବ । ସେ ନିଶ୍ଚୟ ତାକୁ ଖୋଜିବ । ଆହା ! ସବୁ ଆଶା ପଛରେ ପକାଇ ସତରେ କଣ ସେ ଗାଁ ଛାଡ଼ି ଚାଲିଯିବ ! ନରିପୁର ପ୍ରତି ଧୂଳିକଣା ଉମା ନିକଟରେ କେତେ ଅଦରର ଶଚ କେତେ ଆପଣାର !

ନା, ସବୁ ଭୁଲ ସେ କରିଛି । ସେ କାହିଁକି ତାର ଖୁଡ଼ୀର ଗୋଡ଼ ଧରି କ୍ଷମା ଭିକ୍ଷା ନ କଲା । ଖୁଡ଼ୀ ତାକୁ ମାରିବେ,ଗାଳି ଦେବେ, କଷ୍ଟ ଦେବେ, ନଦୀରୁ ପାଣି ବୁହାଇବେ, ସବୁ ପ୍ରକାର ଦହଗଞ୍ଜ କରିବେ । ହଉ— ଯାହା ଇଚ୍ଛା ତାହା କରନ୍ତୁ, ତଥାପି ସେ ତାଙ୍କର ଝିଅ । ଅବଶ୍ୟ ତାଙ୍କର ମନ ତରଳିବ; କିନ୍ତୁ ଦାଣ୍ଡରେ କିଏ କାହିଁକି ତାକୁ ଗୃହିଁବ । ତା ପାଇଁ କାହାରି ମନ ତ ତଟିବ ନାହିଁ । ନା, ସେ ଛତରକୁ ଯିବ ନାହିଁ । ଫେରି ଯିବ, ଖୁଡ଼ୀଦାଦାଙ୍କର ଗୋଡ଼ ଧରି ଦୋଷ ମାଗି ନେବ ।

ଓଃ, ବାହାରଟା କି ଭୀଷଣ ଅନ୍ଧାର । ଅହୁରି ଅନ୍ଧାର ତାର ଅଦୂର ଭବିଷ୍ୟତଟା ! ସେ କିପରି ଏହି ଅନ୍ଧାର ଭିତରେ ବାଟ ଅଣ୍ଡାଳି ଆଗକୁ ଚାଲିବ ? ଉମାର ପେଟ ଭିତରେ କୋହ ଉଠିଲା । ମନଟା ଅହୁରି ଅସ୍ଥିର ହେଲା ।

ମୋଡ଼ ମା କହିଲା, “ପୁଆଡ଼କୁ ଚାହିଁଲେ ବାଟ ପଡ଼ିଛି । ବାଟ ଖୋଜିବାକୁ ପଡ଼ିବ ନାହିଁ । ତୁ ଆଉ ଏଣୁତେଣୁ ଭାବ ନା ଉମା ! ମୋ କୋଳକୁ ଆଉଜି ଟିକିଏ ଶୋଇପଡ଼ । ରାତି ପାହାନ୍ତାରୁ କେହି ନ ଉଠୁଣୁ ଗାଁ ଛାଡ଼ି ଯିବା ପରା ! ଏ ଗାଁରେ ରହି ଆଉ ଚଳି ହେବ ନାହିଁ !”

ଉମା କଣ ଭାବି ଡ଼ରି ଡ଼ରି ଧୀରେ ଧୀରେ କହିଲା,“ମୁଁ ଘରକୁ ଯାଉଛି ମୋଡ଼ ମା···!”

ମୋଢ ମା ଅବାକ୍ ହେଲା । କେତେ କଣ ଭାବି ଅନ୍ଧାରରେ ହାତ ଅଣ୍ଡି ଜମାର ଓଠ ଧରି ଗେଲ କରି କହିଲା, "ସୁନା ଝିଅ ମୋର, ସେଇଆ କର । ମୁଁ ତ ପହିଲୁ ତୋତେ ସେହି କଥା କହୁଥିଲି । ଯା, ତୁ ଫେରି ଯା, ମହିବାକୁ ସାହସ କରି ଖୁଣ୍ଡୀର ଗୋଡ଼ ଧରି ଦୋଷ ମାଗିନେବୁ ।"

କିନ୍ତୁ ଜମା ଉଠିଲା ନାହିଁ । ପୁଣି କଣ ଭାବିବାକୁ ଲାଗିଲା ।

ମୋଢ଼ିମା କହିଲା, "ଫେରିପିବାର କଥା ତ ଯା ମା, ସହଳ ଫେରି ଯା । ରାତି ବଳେଇପଡ଼ୁଛି—ଖୁଣ୍ଡୀ ତୋର କେତେ କଥା ଭାବିବ । ଯଦି ସେ ତୋତେ ଗୋଡରେ ଠେଲି ଦେଇ ବିଦା କରେ, ମୋର ତୋଳକୁ ଫେରିଆସିବୁ । ତେଣିକି ତୋ କପାଳ ।"

ଜମା ଫେରିଗଲା ।

ଅନ୍ଧାର ରାତି । କାହାରି ସ୍ୱର ଶବ୍ଦ ନାହିଁ । ସେ ଦାଣ୍ଡ କବାଟରେ ହାତ ମାରିଲା, କବାଟ ବନ୍ଦ ଅଛି । କଣ କରିବ ? ଇଚ୍ଛା ହେଲା ଖୁଣ୍ଡୀ ଖୁଣ୍ଡୀ ବୋଲି ଡାକିବାକୁ । ପୁଣି କଣ ଭାବି ବାଡ଼ ପଟେ ବୁଲିଯାଇ ବାଡ କବାଟରେ ହାତ ଦେଲା । ଆହା, ସେଠା ବି ବନ୍ଦ ! ସେ ଦୀର୍ଘଶ୍ୱାସ ଛାଡ଼ି ଦାଣ୍ଡ ଝରକା ପାଖକୁ ବୁଲିଗଲା ସେ ଜାଣେ ଦାଣ୍ଡ ପାଖରେ ତାର ଖୁଡ଼ୀ ଖଟ ଉପରେ ଟେରଣୁକୁ ଧରି ଶୁଏ । ସେ କାନ ପାରିଲା । ଅହା, ତାକୁ ଘରୁ ବିଦା କରି ଦାଦଖୁଡ଼ୀ ତାର କେଡ଼େ ନିଶ୍ଚିନ୍ତରେ ଶୋଇ ପଡଛନ୍ତି । ଜାଣି ଜାଣି ସେ କାହିଁକି ତାଙ୍କର ସୁଖନିଦ୍ରାରେ ବ୍ୟାଘାତ ଆଣିବ ?

ଜମା ସେହି ଝରକା ତଳେ କାନ୍ଥକୁ ଆଉଜି ବସି କେତେ ଭାବିଲା— ତାର ହେତୁ ପାଇବା ଦିନରୁ ଅଙ୍କଯାଏ ଗୋଟି ଗୋଟି କରି ସବୁ ଘଟଣା ତାର ମନେପଡ଼ିଲା । ସେ କେତେ କାନ୍ଦିଲା । ଶେଷକୁ କେଜାଣି କଣ ଭାବି ଧୀରେ ଧୀରେ ଦାଣ୍ଡ ପିଣ୍ଡାରୁ ଓହ୍ଲାଇ ଆସିଲା । ଗାଁ ଗୋହିରୀ ପାରି ହୋଇ ସେ ପଧାନଙ୍କ ଘର ମୁହାଁ ହୋଇ ଚାଲିଲା ।

ପଧାନଙ୍କର ସଦର ଦରଜା ବନ୍ଦ । ତାର ସବୁ ଆଶା ବିଫଳ ହେଲା । କାଳେ ଜଗୁ ଭାଇ ଫେରି ଆସିଥିବ । ଜଗୁ ଭାଇଙ୍କୁ ଖବର ନ ଦେଇ ସେ ଗାଁ ଛାଡ଼ି ଛତରରେ ପଶିବ କପରି ? କିନ୍ତୁ ଜଗୁ ଯେ ଫେରି ନାହିଁ, ସେ ଜାଣିବ କପରି ? ରାତି ଅଧରେ କାହାକୁ ଡାକି ପଚାରିବ ? ଛିଃ, ଲୋକେ ଭାବିବେ

କଣ ? ଭୁଚ୍ଛାଟାରେ ତ ଅପବାଦର ବୋଝ ମୁଣ୍ଡରେ ଲଦ ଦେଇଛନ୍ତି । ସେହି ଅସ ଧର ଖ୍ଡ଼ୀ ତାକୁ ଘରୁ ଗୃଲଯିବାକୁ କହୁଛନ୍ତି । ସେ ପୁଣି କପର ନେତାକୁ ତାଙ୍କ ସ୍ୱତ ଅଧଃାରେ ଜଗୁ କଥା ପଗ୍ଭରବ ? ସେହି ନେତା ପାଇଁ ପୁଣି ତା ନାମରେ ଅପବାଦ ନାଗସ୍ୱ ଗାଁ ସାସ୍ୱ ଭବ ଡ୍ବ ହୋଇ ବାଛଲା ।

ତଥାପି ଜମା ଫେରଅସି ପାରଲା ନାହିଁ । ଫାଟକକୁ ଆଉଜ ସେ କେତେ ଲୁହ ଗଡ଼ାଇ କାନ୍ଦଲା । ପ୍ରତି ମୁହୂର୍ତ୍ତିରେ ବର ମୂଳକୁ ଫେରଆସି ମୋତମାର ଶରଣାପନ୍ନ ହେବାକୁ ଇଚ୍ଛା ହେଉଥାଏ, ପୁଣି ପ୍ରତିକ୍ଷଣରେ ଆଶା ହେଉଥାଏ—କାଲେ ଜଗୁ ଭାଇ ଫେରଥିବ । କାଲେ ସେ କୌଣସି କାରଣରୁ ପଦାକୁ ବାହାରବ । ଥରେ ଦେଖା ହେଲେ ଜମା ହୃଦୟ ଖୋଲି ତା ମନର ସବୁ ବେଦନା କଗାଡ଼ ଦେବ ତାର ଗୋଡ଼ତଳେ । ତେଣିକି ସେ ଯାହା ପ୍ରତିକାର କରୁ । ତାକୁ ତାର ଏହି ଅଧମ ପାହାପଥରୁ ହାହ କରୁ ନୋହିଲେ ଆହୁର ଭିତରକୁ ଠେଲିଦେଉ ।

ଗୃହିଁ ଗୃହିଁ ସବୁ ଆଶା ତାର ମଉଳଲା । ନା, ଜଗୁ ଭାଇ ଅସି ନାହିଁ ପସ୍ୱ । କୁଅ ତସ୍ୱ ଉଠିଲାଣି । ସ୍ୱତ ଦେଖି ଦେଖି ପାହୁଯିବ । ଆଉ କେତେବେଳଯାଏ ଅପେକ୍ଷା କରବ ସେ ? ମୋତ ମା ହୁଏ ତ ତାକୁ ଖୋଜି କୁଆଡ଼େ ଗୃଲଯିବଣି । ଅହା । ବଦାୟ ପୂର୍ବରୁ ଥରେ ହେଲେ ଦେଖା ହୋଇପାରଲା ନାହିଁ--ଜୀବନରେ ହେବ କ ନାହିଁ କ ଠିକ୍ ? ହେଉ—ଭଗବାନଙ୍କର ଇଚ୍ଛା ।

ଜମା ଅଖିରୁ ଲୁହ ପୋଛି ପୁଣି ଗଛମୂଳକୁ ଫେର ଅସିଲା ।

## —କୋଡିଏ—

ବେଣୁ ବୋଉ ଜଗୁକୁ ଏକୁଟିଅ ଦେଖି କହିଲେ, "ବାବୁ, ତମେ ଆଉ ଏଠି ଏପର ବସିରହିଲେ ହେବ ନାହିଁ । ଦନ ଦନ କଣ ଲୋକ ! ବସି ଖାଇଲେ ଚଳବ କପର ? ଏଠାକାର ଅବସ୍ଥା ତ ଦେଖୁଛ । ଭାଇ ସିନା ମୋହବଣ୍ଡରେ କଛି କହୁନାହାନ୍ତି; ମନେ ମନେ କଣ ସେ କହୁ ନ ଥିବେ ! କାଲି ସଞ୍ଜବେଳେ ଭାଉଜବୋହୁ ମୋତେ ଶୁଣାଇ ଶୁଣାଇ କାହାକୁ କେଜାଣି

କହୁଥିଲେ—ଧାନ ଗୃଡ଼ଳ ଯାହା ଥିଲା ସବୁ ଅସିଲାଣି । ତନ ତନ ଜଣ ଉପରେ ମଣିଷ ଘରେ ପୋଷି ହେଉଛନ୍ତି । ସେ କଥା କହିଲେ ଭାଇ ବୁଅଙ୍କେ ରଙ୍ଗ ଆଖି ଦେଖାଉଛନ୍ତି । ଇତ୍ୟାଦ ।”

ଜଗୁ ପଚାରିଲା, “କଣ କରିବାକୁ କହୁଛ ଭାଉଜବୋହୂ ?”

“ତମେ ଘରକୁ ଫେରିଯାଅ ।”

“ମୁଁ ଯିବ ନାହିଁ ।”

“କାହିଁକି ?”

“କାହିଁକି, ତମେ ଜଣ ଏ କଥା ବୁଝି ପାରୁ ନା ? ବାପା ଆମକୁ ପରିତ୍ୟାଗ କରିଛନ୍ତି । ମୁଁ ବି ବେଣୁକୁ ନେଇ ଉପାସ ଭୋକରେ ଗୃଲି ଆସିଛୁ । ଆମର ଆଶା ବି ଛାଡ଼ିବାକୁ କହି ଆସିଛୁ । ବିପଦରେ ପଡ଼ି ଗୋଟିଏ ଗ୍ରଡ ପଠାଣଘରେ ଆଶ୍ରା ନେଇଥିଲି ବୋଲି ତମର ଜାତି ପଳାଇଲା ବିନା ଦୋଷରେ ବି ତମକୁ ସେ ଘରେ ପୂରାଇବେ ନାହିଁ କହିଲେ । ଅମେ ଜହେଁ ତମକୁ ଖୋଜି ଖୋଜି ମିଆଁଙ୍କ ଘରେ ଗ୍ରଡ ଅଧରେ ହେଇଥିଲୁ । ତାଙ୍କ ଘରେ ଖିଅପିଅ କରି ଗ୍ରଡ କାଟିଲୁ । ଆମର ବି ଜାତ ଗଲା । ତା ହେଲେ, ଅମକୁ ସେ ଘରେ ପୂରାଇବେ କିପରି ?”

“ଅଃ, ବୁଢ଼ା ଲୋକ । ମତିଭ୍ରମ ହେଲାଣି । ରାଗରେ କଣ କେତେ-ବେଳେ କହି ଦେଲେ । ସେଥିକି ଛଳ କରି ଅଡ଼ି ବସିଲେ ଭଲ ହେବ ନାହିଁ । ବାପା ସେ, ତାଙ୍କର କଥା ଆମେ ନ ସହିବା ତ ସହିବ ଆଉ କିଏ ? ବାଇଆ ବୁଦ୍ଧି ଛାଡ଼ । ଯାଅ ଘରକୁ ଫେରି ଯାଅ । ଏ କେଇ ଦନ ବେଣୁକୁ ନ ଦେଖି ସେ ବଡ଼ ବ୍ୟସ୍ତ ହେଉ ଥିବେ ।”

ମୁଣ୍ଡ ହଲାଇ ଜଗୁ କହିଲା,“ରାମ୍ ବୋଲ । ତା ଯଦି ହୋଇଥାନ୍ତା ସେ ଆମ ପଛେ ପଛେ ଲୋକ ପଠାଇଥାନ୍ତେ । ମୁଁ କହୁଛି, ନେଡା ଥିବା ଯାକେ ମୁଁ ଅଉ ଘର ମୁହଁ ଦେଖିବ ନାହିଁ ।”

ସାମାନ୍ୟ ହସି ବେଣୁ ବୋଉ କହିଲେ, “ହଁ, ନେଡା—ପୋଇଲା ଥୋଇଲା ଲୋକ । ଅଜ ଅଛ, କାଲ ନାହିଁ । ତାକୁ ଡ଼ରି ଘର ଛାଡ଼ିବ ? ସେ ପାଗଳ ବୁଦ୍ଧି ଛାଡ଼ ! ମୋର ସୁନା ଭାଇଟି, ସାନ କୁହା ମାନି ଘରକୁ ଯାଅ । ଅମେ ଆଉ ବେଶି ଦନ ଏଠି ରହିବା ନାହିଁ । ତମେ ଗାଡ଼ି ବଳଦ

ସମ୍ବଳ କରି ଦିନେ ଦି ଦିନ ପରେ ଆସିଲେ, ମୁଁ ବେଣୁକୁ ନେଇ ତମ ସଙ୍ଗେ ଚାଲିଯିବି । ଦେଖିବା, ବୁଢ଼ା କଣ କରିବେ, ନେତା କଣ କରିବ !"

"ବାପା ଯଦି ତମକୁ ଘରେ ନ ପୂରାନ୍ତି··· ?"

"ଆଜି ଯାଏ ତମର ବୁଦ୍ଧି ହେଲା ନାହିଁ । ମୁଁ କଣ ବାପାଙ୍କ ଗୋଡ଼ରେ ଚାଲିବି ଜଗୁ ? ଠାକୁରେ ଗୋଡ଼ ଦେଇଛନ୍ତି । ଗାଡିରୁ ଓହ୍ଲାଇ ବେଣୁର ହାତ ଧରି ମୁଁ ଠୁଙ୍ଗ୍ ଠୁଙ୍ଗ୍ ଘର ଭିତରକୁ ଯିବି । ଦେଖିବା, ସେ କଣ କରିବେ ।"

"ଭାରି ଚିଡ଼ିବେ ।"

"ଚିଡିବା ତାଙ୍କର ପ୍ରକୃତି । ଚିଡିବେ, ଗାଳିଦେବେ, ପଠାଣ ଆସି ଘରେ ପଶିଲା ବୋଲି ନ ଖାଇବେ । କେତେ ଦିନ ? ମୋଟେ ଦୁଇ ଦିନ ! ତେଣିକି ବଳେ ଅରେଇ ଯିବ । ବେଣୁ ସବୁ କଳିଆ ମେଣ୍ଟାଇଦେବ ।"

"ଜାତିଭାଇ··· ?"

"କଣ କରିବେ ? ଏକଘରିଆ କରିବେ । ଅମର କାହିଁର ଅଭାବ ଅଛି ଯେ ଡ଼ରି ହରି ତାଙ୍କର ଶରଣ ପଶିବା ? ଆମକୁ ଯଦି ଜାତିରେ ନ ନିଅନ୍ତି, ଅମେ କଣ ଚଳି ପାରିବା ନାହିଁ ! ତାଙ୍କ ସମାଜରେ ନ ପୂରାଇଲେ, ଆମେ ଅମର ନୂଆ ସମାଜ ଗଢିବା । ସମସ୍ତେ ମଣିଷ । ସଭିଙ୍କର ସୁଖଦୁଃଖ ଅଛି । ନିଜ ସମାଜ ନିଜକୁ ବଡ଼ ।"

"ଭାରି ସାହସରେ କଥା କହୁଛ, ଭାଉଜବୋହୂ... ।"

"ତମ ପରି ଡ଼ରୁଆ ମୁଁ ନୁହେ ଜଗୁ ! ମୁଁ ଯାହା କହୁଛି ତାହାହିଁ ହେବ । ଅମର ଅଧିକାରରେ ଆମକୁ କେହି ବାଧା ଦେବାକୁ ସାହସ କରିବେ ନାହିଁ । ମୋ କଥା ମାନ, ତମେ ଫେରି ଯା ।"

ଜଗୁ ତଳକୁ ମୁହଁ ଭାଳିବାକୁ ଲାଗିଲା । କିଛିକ୍ଷଣ ପରେ ଉତ୍ତର ଦେଲା, "ଯିବାକୁ ମୋର ମୋଟେ ମନ ଡ଼ାକୁ ନାହିଁ, ବିଶେଷତଃ ବେଣୁକୁ ଛାଡ଼ି ।"

"କର୍ତ୍ତବ୍ୟ ଅନୁରୋଧରେ ତମକୁ ଯିବାକୁ ହେବ । ନାହିଁ କଲେ ଚଳିବ ନାହିଁ । ଆଜି ବେଳ ବଳେଇପଡ଼ିଲାଣି । କାଲି ସକାଳୁ ଉଠି ବାହାରିଯାଅ ।"

"ନିତାନ୍ତ ଜିଦ କରୁଛ ଯେତେବେଳେ, ବାଧ୍ୟ ହୋଇ ଯିବାକୁ ହେବ ଦେଖୁଛି । କିନ୍ତୁ, ମନ ଡାକୁ ନାହିଁ ମୋଟେ ।"

"ଆଉରି ଗୋଟାଏ କଥା ଅଛି ଜଗୁ । ତମେ ଆମକୁ ନେବାକୁ ଯେଉଁ ଗାଡ଼ି ନେଇ ଆସିବ, ସେଥିରେ ଦଶକୁ ବସ୍ତା ଧାନ କି ଚୂଡ଼ଲ ପକାଇ ଆଣିଥିବ । ଏମାନଙ୍କର ଧାନ ଚୂଡ଼ଲ ପ୍ରାୟ ଆସି ସରିବା ଉପରେ । ଖାସ୍ ଆମରି ପାଇଁ । ଅସମୟରେ ଏମାନଙ୍କୁ କିଛି ସାହାଯ୍ୟ ନ ଦେଲେ, ବଡ଼ କଷ୍ଟ ପାଇବେ । ଆମର ମଣିଷପଣିଆଁ ରହିବ ନାହିଁ । କେବଳ ଅବଶ୍ୟ ଏ ବିଷୟରେ ମୋତେ କିଛି କହି ନାହାନ୍ତି, ତଥାପି... ।"

"ବାପା ମଙ୍ଗିବେ ନାହିଁ ।"

"ତାଙ୍କର ମଙ୍ଗ ଅମଙ୍ଗରେ କଣ ଅଛି ? ସେ ତ କିଛି ତମ ହାତରେ କୋଲପ ପକାଇବେ ନାହିଁ ! ମୁହଁରେ କହିବେ, ଗାଳି ଦେବେ, ସହିଯିବ ।"

ଜଗୁ ଟିକିଏ ଭାବି, କହିଲା, "ଦେଖାଯାଉ... ।" ତା ପରେ ସେ ଭାବିବାକୁ ଲାଗିଲା—କିପରି ସେ ଧାନ ପଠାଇବ ବୋଲି ମାମୁଘରେ କହି ଆସିଛି, ଜମାରି ଭରି ସ୍ୱଇଚ୍ଛାରେ ନଜେ ବୋହିବ ବୋଲି ପ୍ରତିଜ୍ଞା କରି ଆସିଛି । କାହିଁ, ଆଜଯାଏ ସେ ତାର କହିଲା କଥା ପାଳି ପାରି ନାହିଁ । ମାମୁ ତେଣେ ଚାହିଁ ବସିଥିବେ । ଅହା ! ଗରିବ ଜମାଟି ଉପରେ ପୁଣି ପାଶବିକ ଅତ୍ୟାଚାର ଆରମ୍ଭ ହେବଣି । କାରୁପାୟ ! ତା ଭାଗ୍ୟ !

ଶେଷକୁ ସେ ଫେରିଯିବାକୁ ମଙ୍ଗିଲା । ପରଦିନ ଭୋରରୁ ଉଠି ସମସ୍ତଙ୍କଠାରୁ ବିଦାୟ ନେଇ ସେ ନଇପୁର ଫେରିଲା ।

ବାଟରେ କେତେ କେତେ ବିଷୟ ତାକୁ ଭାବିବାକୁ ପଡ଼ିଲା । ଏତେ ପ୍ରତିଜ୍ଞା କରି ଘରୁ ବାହାରି ଆସିଥିଲା । ପୁଣି କେଉଁ ମୁହଁରେ ସେ ଫେରିଯାଇ ବାପାଙ୍କର କ୍ଷମା ଭିକ୍ଷା କରିବ ? ଦାଣ୍ଡବାଟେ ଯିବ କି ବାଡ଼ିବାଟେ ଯିବ । କାଳେ ଅଗ ନେଉଟିରେ ହାବୁଡ଼ରେ ପଡ଼େ । ସେ ଯଦି ଥଟ୍ଟା କରି ହସେ !... ହସୁ, ଏଇଥର ତାର ଆଉ ମୁକ୍ତି ନାହିଁ । ଜଗୁ ନିଷ୍ଟୟ ତାର ଦୁଇ ପାଟି ଦାନ୍ତ ଭାଙ୍ଗି ଚୂନା କରିବ । ଅଛି, ବାପା ଯଦି ତାକୁ ଘରେ ନ ପୂରାଇ ଅଗାଡ଼ି ବୋଲି ବାହାର କରିଦିଅନ୍ତି ? ତାର ଫଳ ସେ ପାଇବେ । ଜଗୁର ହାତ ନିଆଁରେ ଯେତେବେଳେ ତାଙ୍କର ଘର ଅମାର ସବୁ ଜଳି ପାଉଁଶ ହେବ, ସେତିକବେଳେ ସେ କୁଳାଙ୍ଗାର ପୁଅର ଲଙ୍କାକାଣ୍ଡ ଦେଖିବେ । ନା, ନା;

ବୋଧହୁଏ ସେ ଏଡ଼େ ନିଷ୍ଠୁର ହେବେ ନାହିଁ । ତା ହୋଇଥିଲେ ସେ ଜଗୁକୁ ସେଦିନ ପଛରୁ ଡ଼ାକିଥାନ୍ତେ କାହିଁକି ?

ଉମାର ଅବସ୍ଥା କଣ ହୋଇଥିବ ? ନା, ବୋଧହୁଏ ଧାନ ଗୃଣ୍ଡଲ ଆଶାରେ ଗୋବିନ୍ଦ ସାହୁ କି ତାର ଘରଣୀ ଆଉ ଉମା ଉପରେ ଅତ୍ୟାଚାର କରୁ ନ ଥିବେ । କିନ୍ତୁ ତାଙ୍କୁ ଧାନ ଗୃଣ୍ଡଲ ଦେବାର ଉପାୟ କଣ ? ଉମା ବିଷୟ ପଡ଼ିଲେ ବୁଢ଼ା ପଧାନେ ରାଗରେ ନାଚିଉଠନ୍ତି । ନେଡାର ସବୁକଥା ବିଶ୍ୱାସ କରି ତାର ଓ ଉମାର ସ୍ୱଭାବ ଚରିତ୍ରକୁ ସେ ବିଶ୍ୱାସ କରନ୍ତି ନାହିଁ । ନେଡା ହେଉଛି ନାଠର ଗୋବର୍ଦ୍ଧନ । ଜଗୁ ହାତରୁ ସେ ଦିନେ କେଉଁଆଡ଼େ ଯାଇବ । ବହୁଆଡା ଗଳିରେ ଛାଣି ଛାଣି ଲାଗୁଛି ।

ଉମା ନେଇ ଲୋକେ ଯେପରି ତା ନାମରେ ବାର ଦୁର୍ନାମ ଉଠାଇ-ଲେଣି, ସେ ଆଉ ତା ସଙ୍ଗେ କଥାଭାଷା ହୋଇ ପାରିବ ନାହିଁ ଭଲରେ । ମିଛଠାରେ ତ ଲୋକେ ସନ୍ଦେହ କରୁଛନ୍ତି । କିନ୍ତୁ ଲୋକହସାକୁ ସେ ଡ଼ରିବ ନାହିଁ । ଉମା ତାକୁ ଭଲ ପାଏ, ସେ ଉମାକୁ ଭଲ ପାଏ । ଜାତିର ବନ୍ଧନ କିଛି ନୁହେଁ । ଉମା ତାଙ୍କ ଘରକୁ ଅସି ରହିବ । ନୂଆ ସମାଜ ଗଢ଼ିବେ । ପଧାନେ ରାଗିବେ । ରାଗନ୍ତୁ । ବୁଢା ଲୋକ । ପାଚିଲା ପତ୍ର । କେତେ ଦିନ ?

## —ଏକୋଇଶ—

ଦିନ ପ୍ରାୟ ଦଶଟା ।

ଘର ଅଗକୁ ଅସି ଜଗୁ ଯାହା ଦେଖିଲା, କ୍ଷଣକରେ ତାର ସବୁ ସୁଖସ୍ୱପ୍ନ ଭାଙ୍ଗିଗଲା, ଆଶାର ଦେଉଳଟି ଝଳି ପଡ଼ିଲା କେଉଁ ରସାତଳରେ । ସେ ଘର ଅଗରେ ଠିଆ ହୋଇ ଘଡ଼ିଏ କାଳ ଅବାକ୍ ହୋଇ ଚାହିଁରହିଲା । ଏ କଣ ! ଗାଁ ଯାକରେ ଗୋଟାଏ ଘର ପଧାନ ଘର, ହାଣ୍ଟାଶାଳଟି ବଳି । ଅହା, ଆଜି ତାର ଏକି ଦୁରବସ୍ଥା ! ସବୁ ଅଛି ପାଉଁଶ ଗଦାରେ ପରିଣତ ହୋଇଛି । ନଡଆ ଗଛ ପତ୍ର ଧାନମରେଇଗୁଡା । ତାର ଚିହ୍ନବର୍ଣ୍ଣ ନାହିଁ । ଖୋଲା କାନ୍ଥଗୁଡା ଆକାଶକୁ ମୁଣ୍ଡ ଟେକି ଠିଆ ହୋଇଛନ୍ତି । ଘର ଭିତରୁ ଗୋଟିଏ କ୍ଷୀଣ ଧୂଆଁର ସୂଅ ଧୀରେ ଧୀରେ ହଲି ହଲି ଉପରକୁ ଉଠୁଛି ।

ଜଗୁ ଅଧୀର ହୋଇଉଠିଲା । ବାପା କାହାନ୍ତି ? ନେଟା କାହିଁ ? ଏତେ ବଡ଼ ଭୀଷଣ କାଣ୍ଡ କିଏ କଲା । ସେ ବୁଝି ପାରିଲା ନାହିଁ, ଅନୁମାନ କରି ପାରିଲା ନାହିଁ । ସେ ଧୀରେ ଧୀରେ ବାଡ଼ିକବାଟ ଖୋଲି ପାଉଁଶ ଭିତରେ ପଶି ଅମାର ଖଞ୍ଜା ଭିତରକୁ ଗଲା । କେହି କୁଆଡେ ନାହାନ୍ତି । ଜନିଷପତ୍ରର ଦେଖା ନାହିଁ । ସବୁ ଜଳି ଅଙ୍ଗାର ହୋଇଛି ପରା । କେବେ ନିଆଁ ଲାଗିଲା ବୁଝି ହେଉ ନାହିଁ । ସେ ଉପର ଖଞ୍ଜାକୁ ଯାଇ ଦେଖିଲା, କାଠ ଉପର ଶେଷଟା ଚଉମାନ ସୁଧା ଜଳି ପାଉଁଶ ହୋଇ ନାହିଁ । ତାର ଦେହରୁ ଧୂଆଁ ଉଠୁଛି ।

ଜଗୁର ଛାତି ଭିତରଟା ଥରି ଉଠିଲା । ଗୋଟାଏ ଅଜଣା ଭୟରେ ତାର ପ୍ରାଣ ସତେ କି କାନ୍ଦି ଉଠିଲା । ପଧାନେ କାହାନ୍ତି ? ତାକୁ ଏ ଖବର କିଏ ଦେବ ? ଜଗୁ ଅସ୍ଥିର ହୋଇ ବାଡ଼ିକୁ ଗଲା । ଧାନ ମରେଇର ଚିହ୍ନ ନାହିଁ । କେବଳ ଠାଏ ଠାଏ କେଉଁଏ କେଉଁଏ କୁଟା ଓ ଧାନ ଚୂର୍ଣ ହୋଇ ପଡ଼ିଛି । ନିଆଁ ଲାଗିଲା ପରି ଜଣାଯାଉ ନାହିଁ । କିଏ ନେଲା, କାହିଁ ଗଲା, ସେ ପ୍ରଥମେ ଠିକ୍ କରି ପାରିଲା ନାହିଁ । ଗୋଟିଏ ଘଟଣା ତାର ମନେ ପଡ଼ିଲା—ସେ ଦିନ ଗୋବିନ୍ଦ ସାହୁ ଘରୁ ଫେରିଲା ବେଳେ ବର-ମୂଳରେ କେତେ ଜଣ ଗ୍ରାମବାସୀ ବସି କଣ କଥାଭାଷା ହେଉଥିଲେ । ତାକୁ ଦେଖି ଯିଏ ଯୁଆଡ଼େ ଭୟରେ ପଳାଇଲେ । ଅଛା, ଏ ଘଟନା ସଙ୍ଗେ ସେ ଦିନର ସେହି ଦୃଶ୍ୟର କିଛି ସମ୍ବନ୍ଧ ଅଛି କି ?

ନିଶ୍ଚୟ ଅଛି । ଧାନ ପାଇଁ ଗାଁଲୋକେ ବାରମ୍ବାର ପଧାନଙ୍କ ପାଖକୁ ଆସି ବିଫଳ ହୋଇ ଫେରିଛନ୍ତି । ପଧାନଙ୍କ ଉପରେ ସମସ୍ତଙ୍କର ଅହନ୍ତା । ହୁଏ ତ ଗାଁଲୋକେ ସଙ୍ଗହୋଇ, ମେଳି ହୋଇ, ତାର ଅନୁପସ୍ଥିତିର ସୁବିଧା ପାଇ ଘରେ ନିଆଁ ଲଗାଇଛନ୍ତି । ପଧାନ ଓ ନେଟାକୁ ଜଳନ୍ତା ନିଆଁରେ ପୋଡ଼ି ମାରି ଧାନ ଯାକ ବୋହି ନେଇଛନ୍ତି ।

ଏତେ ସାହସ ଲୋକଙ୍କର ! ଯଦି ସତରେ ସେମାନେ ଏପରି କରି-ଥାନ୍ତି, ଜଗୁ ତାର ପ୍ରତିହିଂସା ନେବ । ଗାଁର ସବୁଘରେ ନିଆଁ ଲଗାଇ ନରପୁରକୁ ଧ୍ୱଂସ କରିବ । ତେବେ ଯାଇ ତାର ମନରେ ଶାନ୍ତି । କିନ୍ତୁ ସତ ମିଛ କହିବ କିଏ ? କାହାଠାରୁ ସେ ବୁଝିବ ।

ଜଗୁର ମୁଣ୍ଡ ଘୂରିବାକୁ ଲାଗିଲା । କଚଟ ଖରା । ମୁଣ୍ଡ ଗରମ ହୋଇ ଯାଉଛି । ଆଖି ଆଗରେ ଶହ ଶହ ଜୁଳୁ ଜୁଳିଆ ପୋକ ଭୁସିଯାଉଛନ୍ତି । ଓହୋ ! ଭୀଷଣ ଡ଼କାୟତ ! ଏହାର ପ୍ରତିକାର କରିବାର ତ ଉପାୟ ନାହିଁ, ପ୍ରତିହିଂସା ନେବାର ବେଳ ଗଡ଼ି ଯାଇ ନାହିଁ ।

ଜଗୁ ପାଗଳ ପରି ବାଡ଼ ଭିତରୁ ପଦାକୁ ଆସିଲା । କେଜାଣି କଣ ମନରେ ଭାବି ପୁଣି ଫେରିଯାଇ ଖଣ୍ଡେ ଦରପୋଡ଼ା ବାଉଁଶ ପାଉଁଶଗଦା ଭିତରୁ ଓଟାରି ଆଣିଲା । ଦେହ ଲୁଗାପଟା ତାର ଅଙ୍ଗାର ଲାଗି କଳା ହୋଇଥାଏ । ସେ ଦରପୋଡ଼ା ବାଉଁଶ ତଡ଼ଟା କାନ୍ଧରେ ପକାଇ ଗାଁ ଦାଣ୍ଡକୁ ବାହାରି-ଚାଲିଲା । ସେ ଯାହାକୁ ଦେଖିବ, ଘଟଣାର କାରଣ ପଚାରିବ । ଯେ ଭଲରେ ଭଲରେ କହିଲା, ରକ୍ଷା; ନୋହିଲେ, ସେ ଅଜା ଦେଖିବ ।

ଗାଁ ଦାଣ୍ଡଟା ଅତି ଶୂନଶାନ । ଦିନ ଦିପହରେ ଜଣେ ହୋଇ କାହାର ଦେଖାଦର୍ଶନ ମିଳୁ ନାହିଁ । ଯେଉଁମାନେ ଅତି ଦୂରରେ ଯା ଆସ କରୁଛନ୍ତି, ଡ଼କା ପାଡ଼ିଲେ ସେମାନେ ବି ମୁହଁ ଫେରାଇ ଚାହୁଁ ନାହାନ୍ତି । କଥା କଣ ? କାହା ଘରକୁ ଯିବ ? କାହାକୁ ପଚାରିବ ? କିଏ ତାକୁ ସତ କଥା କହି ତାର ମନର ସନ୍ଦେହ ଦୂର କରି ପାରିବ ? ଉମା, ଏକା ଉମା ତାକୁ ସବୁ କହିବ । ସେ କିଛି ଲୁଚାଇ ପାରିବ ନାହିଁ ।

ଜଗୁ ଏକମୁହାଁ ହୋଇ ଗୋବିନ୍ଦ ସାହୁର ଘରକୁ ଧାଇଁଲା । ଗାଁ ଗୋହିରିରେ ସେ ଯାହାକୁ ଦେଖିଲା କାହାରିକୁ କିଛି ପଚାରିଲା ନାହିଁ— ରାଗରେ, ଅଭିମାନରେ । ତାର ରୂପ, ଉତ୍ତେଜିତ ଢଙ୍ଗ ଦେଖି, ଦେଖଣା-ହାରୀ ଭୟରେ ଘର ଭିତରକୁ ପଶି କବାଟ କିଳିଲେ । ଜଗୁ ହଣ୍ଡା, ପାଗଳ ହୋଇଛି । ଯିଏ ହାବୁଡ଼େ ପଡ଼ିବ ତାକୁ ଅଳ୍ପ ଝୁଣି ପକାଇବ ।

ଗୋବିନ୍ଦ ସାହୁର ଦାଣ୍ଡକବାଟ ବନ୍ଦ । ଜଗୁ ବାଡପଟେ ବୁଲିଗଲା । ବାଡ଼ିକବାଟ ବି ବନ୍ଦ ଅଛି । ଭିତରୁ କାହାର ସ୍ୱର ଶବ୍ଦ ଶୁଭୁ ନାହିଁ । ସେ କବାଟରେ ତିନୋଟି ମାରି ଉଚ୍ଚସ୍ୱରରେ ଉମାର ନାଁ ଧରି ଡାକ ଛାଡିଲା । କେତେବେଳକୁ ରେଣ୍ଟୁ ବୋଉ ଜବାବ ଦେଲେ—"କିଏ ସେ···?"

"ମୁଁ ଜଗୁ,···କବାଟ ଖୋଲ ତ ।"

ରେଣୁ ବୋଉ କବାଟ ଖୋଲିଲେ । ଜଗୁର ଚେହେରା ଦେଖି ସେ ଭୟରେ ପଛକୁ ଘୁଞ୍ଚିଆସିଲେ । ଜଗୁ ଭିତରକୁ ଆସି ପଚାରିଲା, "ଜେମା କାହିଁ ?"

ରେଣୁ ବୋଉ ଜଗୁର ହାତ ଧରି କହିଲେ, "ଅଜି ଯାଏ କୁଆଡ଼େ ଥିଲୁ ବାପ ! ସବୁ ସରିଗଲା ପରେ ଏତେବେଳକୁ ଆସି ପହଞ୍ଚୁଛୁ ?"

ଜଗୁ ଆସି ପିଣ୍ଡାରେ ବସିଲା । ରେଣୁ ବୋଉ ଦୂରେଇ ହୋଇ ଠିଆ ହେଲେ । ଜଗୁ ଉଦ୍‌ବିଗ୍ନ ହୋଇ ପଚାରିଲା, "ଆମ ଘର କିଏ ପୋଡ଼ି ଧାନ ଚାଉଳ ସବୁ ବୋହି ନେଇଛନ୍ତି । ତମେ ସବୁ ଜାଣ ମାଉସୀ ?"

"ହଁ, ବାବୁ, ମୁଁ ସବୁ ଶୁଣିଛି । ତୁ ଟିକିଏ ଦମ୍ ନେଇ ବସ, ମୁଁ ସବୁ କହିବି ।"

"ବାପା କାହାନ୍ତି ?"

"ପଧାନେ ବଇଆ ବାଉଶ ଘରେ ଅଛନ୍ତି । ନେତା ବି ସେଇଠି । ବୁଢ଼ାଙ୍କର ଦେହ ହାତ ସବୁ ପୋଡ଼ିଯାଇଛି । ଭାରି କଷ୍ଟ ପାଉଛନ୍ତି ।" ରେଣୁ ବୋଉ ଆଖି ପୋଛିଲେ । "ଏ ସବୁ କାଣ୍ଡ କିଏ କରିଛି ଜାଣୁ ? ଏଇ ଗାଁଲୋକେ ! ଘରେ ନିଆଁ ଲଗାଇ ଦେଇ ସେମାନେ ଧାନ ଚାଉଳ ସବୁ ବୋହି ନେଇଛନ୍ତି । ଦୁଇ ଦିନ ହେଲା, ସବୁ ଅଧପୋଡ଼ା, ନିଆଁ ଧୂ ଧୂ ଜଳି ଉଠିଲା, ଉଃ...।"

ଜଗୁର ମନର ସନ୍ଦେହ ଭାଙ୍ଗିଲା । ସେ ଚମକି କହିଉଠିଲା, "ଏହି ଗାଁ-ଲୋକେ ? ଏତେ ସାହସ ତାଙ୍କର ! କିଏ କିଏ କହି ପାରିବ ମାଉସୀ ?"

"ନାହିଁ ବାପ, ସେ କଥା ମୁଁ ଶୁଣି ନାହିଁ । ଅନ୍ଧାର ରାତି କାହାକୁ କିଏ ଚିହ୍ନୁଛି ?" ଜଗୁ ଚିନ୍ତିତ ଜଣାଗଲା । ମୁଣ୍ଡର ବାଳକୁ ବାଁ ହାତରେ ଓଟାରୁ ଓଟାରୁ ପଚାରିଲା, "ମଉସା ?"

"କୁଆଡ଼େ ଯାଇଛନ୍ତି । ଦିନ ଓଳି ହେଲା ଆମର ଚୁଲି ଜଳି ନାହିଁ । ଉପାସ ଭୋକରେ କେଉଁଠିକି ଚାଉଳ ମାଣେ କି କୁଡ଼ିଏ ଧାର ପାଇଁ ଯାଇଛନ୍ତି ।" ଟିକିଏ ତୁନି ରହି ପୁଣି କହିଲେ, "ତତେ ବଡ଼ ଆଶା କରି ବସିଥିଲୁ ବାବୁ । ମଣିଷର ଆଶା କି ଦଇବ ସହେ । ଅମେ ତ ଜାଣି କରି ବାଟର ଅନାଥ ଫକୀର । ତୋତେ ବି ଠାକୁର ଆଣି ଆମର ଦଶାରେ ପକାଇଲେଣି । ପୋଡ଼ା କପାଳ... ।"

ଜଗୁ ରେଣୁ ବୋଉଙ୍କର ବରସ ମୁହଁକୁ ଗୁହିଁ ରହିଲା ଘଡ଼ିଏ । ଖଞ୍ଜାଟିର ଏଣେ ତେଣେ ଆଖି ପକାଇ ପଗ୍ଭରିଲା, "ଉମାକୁ ଦେଖୁ ନାହିଁ ଯେ... ?"

"ଉମା ?" ରେଣୁ ବୋଉଙ୍କର ଆଖିରୁ ଲୁହ ଝରିଲା ପଗ୍ଭ । ସେ ଆଖି ପୋଛିବାରେ ଲାଗିଲେ । ଏବେ ତ ଜଗୁ ତାର ଘରର ଅବସ୍ଥା ଦେଖି ଉତ୍ତ୍ୟକ୍ତ । ତହିଁରେ ପୁଣି ବାପାଙ୍କର ଶୋଚନୀୟ ଅବସ୍ଥା କଥା ଶୁଣି ସେ ପାଗଳ ହୋଇଛି । ଏପରି ବେଳରେ ଯଦି ସେ ଶୁଣେ ଯେ ଉମାକୁ ସେ ଘରୁ ବାହାର କରି ଦେଇଛନ୍ତି, ଉମା କାହା ସଙ୍ଗରେ କୁଆଡ଼େ ପଳାଇଛି ତାଙ୍କୁ ଜଣା ନାହିଁ, ତେବେ ସେ ଗୋଟାଏ କିଛି ଭୀଷଣ କାଣ୍ଡ କରି ବସିବ । କିପରି ସେ କଥାଟାକୁ ବାଗେଇ ବୁଲାଇ କରି କହିବେ, ସେହି ଚିନ୍ତା କରିବାରେ ଲାଗିଲେ ।

ଜଗୁ ଉଦ୍ବିଗ୍ନ ହୋଇ ପଗ୍ଭରିଲା, "କହୁ ନା କାହିଁକି ? ଉମା କଣ...।"

ରେଣୁ ବୋଉ ଆଖି ମଳି ମଳି କହିଲେ, "ଉମା ତତେ ଖୋଜିବାକୁ ଯାଇଛି ଜଗୁ । ସେହି ଦିନରୁ ଉମା ଆଉ ଫେରି ନାହିଁ ।"

"ମତେ ଖୋଜିବାକୁ ଯାଇଛି—ଉମା !" ଜଗୁ ବିସ୍ମିତ ହେଲା ।

"ହଁରେ ପୁଅ ହଁ । ଯେଉଁ ଦିନ ସେ ଶୁଣିଲା, ତୁ ବେଣୁକୁ ନେଇ କୁଆଡ଼େ ଗୁଲିଯାଇଛୁ, ସେ କାନ୍ଦି କାନ୍ଦି ଅସ୍ଥିର ହେଲା । ଯେତେ ବୁଝାଇଲି ସେ କାହିଁକି ବୁଝନ୍ତା । ଖିଆ ପିଆ ତ ଏକାଥରେ ଛାଡିଦେଲା । ଶେଷକୁ ମୁଁ ତାକୁ ଭାରି କଡ଼ା କଥା ବି କହି ଗାଳି ଦେଲି । ତୋଠେଇଁ ତାର ଏମିତି ଗୋଟାଏ କଣ ସ୍ନେହ ଯେ, ଯେତେ ଛୁଗୁଲେଇ କହିଲେ ସେ ଛାଡ଼ିଲା ଭଳି ନାହିଁ ରେ, ଓଲଟି ଜବାବ ଦେଲା—ଜଗୁ ଭାଇ ଗୁଲି ଯାଇଛି, ମୁଁ ବି ଯିବି । ତା କଥାରେ ମୋର ଢଳେ ହୋଇ ବିଶ୍ବାସ ନ ଥିଲା । ଏମିତି କଣ ସତରେ ସେ ଗୁଲିଯିବ ?" ରେଣୁ ବୋଉ ପୁଣି ଆଖି ରଗୁଡ଼ିଲେ ।

ଜଗୁର ଆଖି ଲୁହରେ ଛଳ ଛଳ ହୋଇଉଠିଲା । "ସେଇଠୁ ?"

ରେଣୁ ବୋଉ କହିଲେ, "ପଅରିଦିନ ରାତିରେ ତ । ରାତି ଅଧରୁ ଉଠି କୁଆଡ଼େ ଗୁଲିଗଲା, କେହି ଦେଖିଲେ ନାହିଁ, କେହି ଜାଣିଲେ ନାହିଁ । ସକାଳୁ ଦେଖିଲି—ବାଡ଼ି କବାଟ ଫିଟିଲା । ଉମା ଘରେ ନାହିଁ । ସେ

ଯାଇଁ ଗାଁ ଯାକ ଖୋଜି ଆସିଲେ, ଘର ଘର ପଗ୍ଭରିଲେ । ଆଜି ଜମା କାହିଁ ?" ରେଣୁ ବୋଉ ଟିକିଏ ରହି କାନ୍ଦଣା ସ୍ୱରରେ କହିଲେ, "କାହିଁ ବୋଲାଇ ମନକୁ ବୋଧ ଦେଇ ରହିଲି—ହଉ, ଯାଉ ସେ ଆଗ ଗଲା । ଆମର ଅବସ୍ଥା ଯେମିତି, ଆମ୍ଭକୁ ବି ତା ପଛେ ପଛେ ଯିବାକୁ ପଡ଼ିବ ତ--- !"

ଜଗୁ ଆଖିର ଲୁହ ପୋଛି କହିଲା, "ଜମା ବଡ଼ ଭଲଦା ପକାଇଲ ମାଉସୀ; ଆଜି ଏ ଗୃହବଦନ ଅପେକ୍ଷା କରିବା ଉଚିତ ଥିଲା । ହଉ, ଯାଉ... ।" ଏତିକି କହି ସେ ବ୍ୟଥିତ ମନରେ ଗୋବିନ୍ଦ ସାହୁର ଘରୁ ବାହାରିଆସିଲା । ଯୁଆଡ଼େ ଗ୍ଭହିଁଲା, ସବୁଠି କି ଜମାର ସୁନ୍ଦର ପ୍ରସ୍ଫୁଟିତ ମୁହଁ, ଲହଡଭରା ଆଖି ଦିଓଟି ତାର ସାମନାରେ ଆସି ଉଭା ହୋଇ ଯାଉଛି । ତା ବିଷୟରେ ଅଧିକ ଚିନ୍ତା କରିବାକୁ ଜଗୁର ବେଳ ନ ଥିଲା ସେତେବେଳେ । ଖାଲି ରେଣୁ ବୋଉଙ୍କର କଥା କେଇ ପଦ ତାର ମନ ଭିତରେ ବାରମ୍ବାର ଆଘାତ ଦେବାକୁ ଲଗିଲା—"ଜମା ତତେ ଖୋଜି-ବାକୁ ଯାଇଛି ଜଗୁ... !"

ବାଉରୀ ସାହିକୁ ଖଣ୍ଡେ ଦୂର ଛାଡ଼ି ବୈଷ୍ଣବ ଭୋଇ ଓରଫ୍ ବଇଆ ବାଉରୀର କୁଡ଼ିଆଘର—ମୋଟେ ଦୁଇଟି ବଖୁରି । ଆଗରେ ଖଣ୍ଡେ ଗୁଳ—ତିନ ପାଖରେ ବରଡ଼ା ତାଟି, ଗୋଟିଏ ପାଖ ଖୋଲା । ଗୁଳଟା ଏଡ଼େ ଦୁଆଁ ଣିଆ ଯେ, ମୁଣ୍ଡ ନ ନୁଆଁଇ ଭିତରକୁ ଯିବା ଅସମ୍ଭବ । ଜଗୁ ଆସି ସେଇଠି ମିଳିଲା ।

ତାର ଡାକ ଶୁଣି ବଇଆ ତୋରାଣି କଂସା ଛାଡ଼ି ଆସି ଓଳଗି ହୋଇ ଟିକିଏ ଅଡ଼େଇ ଠିଆହେଲା । ଜଗୁ ପଗ୍ଭରିଲା, "ବାପା ?" ବଇଆ ପାଟି ନ ଫିଟାଇ ଗୁଳକୁ ଦେଖାଇଦେଲା । ସେ ଅଧିକ ବାକ୍ୟବ୍ୟୟ ନ କରି ଭିତରକୁ ପଶିଲା । ଦେଖିଲା, ପଧାନେ ଖଣ୍ଡେ ନଡ଼ିଆ ଗୁଣ୍ଡି ଉପରେ ଶୋଇଛନ୍ତି । ଗୋଡ଼ରୁ ମୁଣ୍ଡ ଯାଏ ଖଣ୍ଡେ ସରୁ ଚଦର ଘୋଡ଼ା ହୋଇଛି । ନେତୀ ମୁଣ୍ଡ ପାଖରେ ବସି ବାଞ୍ଛଣା କରୁଛି । ତାର ଦୁଇ ଆଖି ଲୁହରେ ପୂର୍ଣ୍ଣ ।

ଏ ଭୟଙ୍କର ଦୃଶ୍ୟ ଦେଖି ଜଗୁ କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହୋଇ ପଧାନଙ୍କର ଗୋଡ଼ରୁ ମୁଣ୍ଡଯାଏ ଗ୍ଭହିଁଗଲା । ପାଟିରୁ କଥା ବାହାରିଲା

ନାହିଁ । ନେତା କହିଲା, "ଦେଖ୍ ରେ ଦେଖ୍, ଜମିନା ଧାନ ଆଜ ଗଛା ହେବାର ନୁହେଁ ! ତୋର ପାଇଁ ପଧାନଙ୍କର ଅବସ୍ଥା ଆଜ ଏହା ହୋଇଛି ! ତୁ ଯଦି ଘର ଛାଡ଼ି ଯାଇ ନ ଥାନ୍ତୁ, ଗାଁଲୋକେ ମେଳ ହୋଇ ଏତେ କାଣ୍ଡ କରିବାକୁ ଭରସି ନ ଥାନ୍ତେ । ଓହୋ ! ଯାହା କଲେ ସେ ଦିନ ସେମାନେ ! ମଣିଷ ହୋଇ, ମୁହିଁକୁ ଗୃହଁ ଗୃହଁ ଆଖି ଆଗରେ ଏପରି ଘଟିବା କେଉଁଠି ଶୁଣା ନ ଥିଲା ।"

"ତେବେ ଗାଁ ଲୋକେ ଘୃଣା କରନ୍ତି ? କିଏ ?"

"ସମସ୍ତେ ରେ ବାବୁ ସମସ୍ତେ । କାହା ନାଁ ଏବେ କହିବି ? କିଏ ଗୋଟାଏ ସେଥିରେ ଭଲ ଲୋକ ଅଛି ? ମୁଁ ଦାଣ୍ଡରେ ଠିଆହୋଇ ଦେଖୁଥାଏ ସବୁ, କେହି ଗୋଟାଏ ବାଦ୍ ଯାଇ ନି ସେଥିରୁ..."

ନେତା ଧୀରେ ଧୀରେ ପଧାନଙ୍କ ମୁହଁରୁ ଚଦରଟି ଘୁଞ୍ଚାଇଦେଲା । ଜଗୁ ପଧାନଙ୍କର ମୁହିଁକୁ ଗୃହିଁ ଆଶ୍ଚର୍ଯ୍ୟ ହେଲା । ତାର ଆଖି ଆଗରେ ସାରା ସଂସାରଟା ଘୂରିବାକୁ ଲାଗିଲା ଯେପରି । ଓଃ ! ଅବସ୍ଥା ଏତେଦୂର ଖରାପ ! ମୁହିଁଟା ପୋଡ଼ ଚମଡ଼ା ଉଠିଯାଇଛି, ଅନାଇଲେ ଚିହ୍ନି ହେଉ ନାହିଁ । ଖାଲି ନାକ ପୁଡ଼ାରେ ନିଶ୍ୱାସ ଯା ଆସ କରୁଛି ମାତ୍ର । କମ୍ପିତ ଆଖିପତା ଖୋଲି ପାରୁ ନାହିଁ, ବେଳେ ବେଳେ ତୀବ୍ର ଯନ୍ତ୍ରଣାରେ ମୁହିଁ ବିକୃତ କରୁଛନ୍ତି, ଦେହ ସାରା ଥରି ଉଠୁଛି ।

ଜଗୁ ଥକ୍କା ହୋଇ ନେତା ପାଖରେ ବସିପଡ଼ିଲା । କଣ ଯେ କରିବ, ଭାବି ପାରିଲା ନାହିଁ । ସେ ବଡ଼ ବ୍ୟସ୍ତ ହୋଇ ପଚାରିଲା, "ବାପାଙ୍କୁ ଏଠିକି ନେଇ ଆସିଛୁ କାହିଁକି ? ବାଡ଼ଘେରା ଘରଟା, ଗାଁରେ ଏତେ ଲୋକ, ଏତେ ଘର । କେହି ଆଉ ଜାଗା ଦେଲେ ନାହିଁ ?"

ଜଗୁର କଣ୍ଠସ୍ୱର ଶୁଣି ପଧାନେ ଟିକେ ଟୁଙ୍ଗିଉଠିଲେ । ହାତ ଟେକି କଣ କହିବାକୁ ଇଚ୍ଛା କରିଥିଲେ, ହାତ ପୁଣି ତଳକୁ ଖସିପଡ଼ିଲା । ଟିକିଏ ହଲଚଲ ହେଲେ । ତାଙ୍କୁ ଭୟଙ୍କର କଷ୍ଟ ହେଉଛି, ନେତା ତାର ହାତଟି ଆସ୍ତେ ଆସ୍ତେ ପଧାନଙ୍କର ଦେହ ଉପରେ ରଖି କହିଲା, "ଗାଁ ଲୋକେ ତ ଘୃଣା କରନ୍ତି । ସେମାନେ ଘରେ ରହିବା ଦିଅନ୍ତେ କପରି ? ଆଗ ପ୍ରାଣ ରହୁ, ପରେ ଜାତି କଥା । ମୁଁ ଓ ବଇଆ ଦିହେଁ ଟେକାଟେକି କରି ତାଙ୍କୁ ଏଠିକି

ନେଇଅସିଛୁ । ବହୁ ପାଙ୍କ ତ ପୋଡ଼ିଯାଇଛୁ, ଆମେ କ ଔଷଧ ଦେଅନ୍ତୁ ?
ଖାଲି ଚୁନ ହଳଦୀ ତେଲ ଫେଣ୍ଟି ଦେବାରେ ବୋଲିଛୁ ।”

“ଏଠିକି ନ ଆଣି ଗୋବିନ୍ଦ ମଞ୍ଜୁଷା ଘରକୁ ନେଲୁ କାହିଁ ?”

“ସେଇ ଝଣ୍ଟିଆ ତ ନାଠର ଗୁରୁ । ଭିତରେ ବୁଢ଼ ପାଣି ପିଇଥାଏ—
କେହି ଜାଣିବେ ନାହିଁ, ସବୁଥିରେ ଥାଏ । ତୁ ଗଲା ପରେ ସେ ତତେ
ଖୋଜିବାକୁ ଆସିଥିଲେ । ଏ ତାକୁ ବିରକ୍ତ ହୋଇ କଣ କହୁଥିଲେ ।
ମୁଁ ଭାବୁଛି, ସେହି ରାଗରେ ଗାଁଲୋକଙ୍କୁ ମେଳେଇ ସେ ଏହା କରୁଛି ।
ଆରେ ଏଇଥିରୁ ବୁଝିନୁ ଜମାଠା ଝିଅଟା, ବାପୁ ଗୋବିନ୍ଦ ବି ଭାଇ,
ଏକା ନାହି ବି ଗଣ୍ଡ, ବିନା ଦୋଷରେ ପିଲାଟାକୁ ମାରି ଘରୁ ତଡ଼ି
ଦେଲେ…।”

“ସତ କହୁଛୁ ନେଗି ?”

“ହଁରେ ହଁ, ଗାଁ ଯାକ ରାଷ୍ଟ୍ର ହୋଇଯାଇଛି । ଶୁଣିବା କଥା---।”

“ସେ କାହିଁ ?”

“କେଜାଣି । ଲୋକେ କହୁଛନ୍ତି—କିଏ ଗୋଟାଏ କେଉଁ ଗାଁର,
ତା ସଙ୍ଗେ ସେ ଚାଲିଗଲେ ।”

“ଯାଉ; ଜନ୍ତୁ ଜାଣିଥା ନେଗି, ଆଜ ସଞ୍ଜବେଳେ ନନ୍ଦପୁରରେ ଅଗ୍ନି-
ଉତ୍ସବ ହେବ । ମୋ ବାପାକୁ ଲୋକେ ଯେମିତି କାଆଁରେ ପକାଇ ଜାଳିଦେଲେ
ଜଳ ମାରିଛନ୍ତି, ମୁଁ ବି ଗାଁଲୋକଙ୍କୁ ସେମିତି ଛଟପଟ କରି ମାରିବି ।”

ଏ କଥା ଶୁଣି ପଧାନଙ୍କର ମୁଖ ବିକୃତ ହେଲା । ସେ କ୍ଷୀଣସ୍ୱରରେ
କହିଲେ, “ଜଗୁ, ସେ ବାଇଆ ବୁଦ୍ଧି ଛାଡ଼ । ମୋ ନିଜ ଦୋଷରୁ ମୋତେ
ଠାକୁରେ ଏ ଦଣ୍ଡ ଦେଲେ । ଆଉ କାହାର ଦୋଷ ନାହିଁ । ବୋହୂ, ବେଣୁ
କାହାନ୍ତି ରେ ?

“ଭାଉଜବୋହୂ ତାଙ୍କ ବାପଘରେ । ବେଣୁ ସେଇଠି ।”

“ଆଣିଲୁ ନାହିଁ ? କୁଳର ଲକ୍ଷ୍ମୀ ସେ ମୋର: ତାଙ୍କ ପ୍ରତି ବଡ଼ ନିଷ୍ଠୁର
ହୋଇଛୁ । ଧର୍ମ ସହିବ ନାହିଁ ରେ. ତାଙ୍କ ନିଶ୍ୱାସ ପଡ଼ିଗଲା । ଆଉ ଦେଖି
ପାରିବି ନାହିଁ ।” ଟିକିଏ ରହି ପୁଣି କହିଲେ, “ଗାଁଲୋକଙ୍କୁ ବଡ଼ ହଇରାଣ
କରିଛୁ; ଜଙ୍ଗଲ ବାଜଲ କରୁଛୁ, ତାଙ୍କ ମୁହଁକୁ ଗୁହଁଲ ନାହିଁ, ସେ କାହିଁକି-

ମୋ ମୁହଁକୁ ଗୃହାଁନ୍ତେ ? ପେଟ ପାଇଁ ସେମାନେ ଏହା କରନ୍ତି । ତାଙ୍କ ଉପରେ ଆକ୍ରୋଶ କରିବାଟା ଠିକ୍ ନୁହେଁ । ତାଙ୍କର ମାଲ ସେହି ନେଲେ। ମୁଁ ଥିଲି ଜଗୁଆଳି ।"

ଜଗୁର ମୁହଁ ଶୁଖିଗଲା । ପଧାନେ କହିଲେ, "ଗାଁ ଲୋକଙ୍କ ସଙ୍ଗେ ଲଢ଼ିଗଲୁ ନାହିଁ । ସମୟ ବଡ଼ ଖରାପ । ତମର ଚଳାଚଳ ପାଇଁ ନେଟା ଜମା କିଛି ଟଙ୍କା ସୁନା ରଖିଯାଇଛି । ସେ ରଖିଛି ପିଲାପିଲି ନେଇ କୁଆଡ଼େ ଗୁଳି ଯା ଏତକ ବେଳୁ । ଦୁର୍ଭିକ୍ଷ ମାଡିଆସୁଛି, ଗୃହଁ ବସିଥିଲେ ପ୍ରାଣ ରହିବ ନାହିଁ ।"

ବୁଢ଼ା ଆଉ କିଛି କହି ପାରିଲେ ନାହିଁ ।

ସେହି ଦିନ ସନ୍ଧ୍ୟାରେ; "କେଣୁ, କେଣୁ" ହୋଇ ବୁଢାଙ୍କର ପ୍ରାଣପକ୍ଷୀ ଉଡ଼ିଗଲା, କେଉଁ ଅଜଣା ଦେଶକୁ ।

## —ବାଇଶ—

ପଧାନଙ୍କର ସ୍ୱର୍ଗପ୍ରାପ୍ତିର ତିନି ଦିନ ପରେ ।

ବଇଆ ବାଉସର ଗୁଳଘରେ ମୁଣ୍ଡରେ ହାତ ଦେଇ ଜଗୁ ବସି ଭାବୁଛି—ଏଥର ଆଉ ଉପାୟ କଣ ? ଦାନା ଗଣ୍ଡାକ ପାଖରେ ଥିଲା, ଭଲ ମନ୍ଦକୁ ବାପ ଆଗ ବଳପଡ଼ି ମାମଲତ ଚଳାଉଥିଲେ । ସେଥିପାଇଁ ସିନା ସେ ବେଖାତିରିଆ ହୋଇ ଫୁଲଫାଙ୍କିଆ ହୋଇ ବେପରବାଏରେ ବୁଲି ବେଲ କାଟୁଥିଲା । ସଂସାର କଣ, ସଂସାରର ଭଲ ମନ୍ଦ କପଟ ଗଢ କରେ, ତାକୁ ଜଣା ନ ଥିଲା । ଏତେ ଶୀଘ୍ର ବୋଧହୁଏ ଜାଣିବା ଆବଶ୍ୟକ ହୋଇ ନ ଥାଆନ୍ତା । ଏତେ ଦିନକେ—ଚଳ ଅବେଳାରେ ତାର ମୁଣ୍ଡରେ ପାହାଡ଼ ଲଦା ହେଲା । ସେ ସମ୍ଭାଳେ କିପରି ? ନେଟାକୁ ଧରି ଗୃହ କଣ । କିପରି ସେ ତାଙ୍କ ପାଟିରେ ପାଣି ଦେଇ ପ୍ରାଣ ରଖିପାରିବ ? କେତେ କୁଟୁମ୍ବ ତାଙ୍କୁ ଆଶା କରି ଗୃହିଁ ବସିଛନ୍ତି । ସମସ୍ତଙ୍କୁ ପୁଣି ସେ ବୋଧଶୋଧ ଦେଇ କହି ଆସିଛି । ପର କଥା ଛାଡ଼, ନିଜ କଥା ସମ୍ଭାଳିବା ତ କାଠିକର ପାଠ ।

ଘର ଘର କରି ଗାଁର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ବୁଲି ଆସିଲା । କେହି ପାଖରେ ପୂରିଇଲେ ନାହିଁ । ଘରେ ଥାଇ ଅନେକେ ଘରେ ନାହିଁ ବୋଲି ଖବର ପଠାଇଲେ । କେହି କେହି ଦୁର୍ ଦୂର୍ କରି ତଡ଼ିଲେ । ମୁହଁକୁ

ଚାହିଁଲେ ନାହିଁ, ମୁକ୍ତଇଚ୍ଛା ରଖିଲେ ନାହିଁ । ଧନ୍ୟ ସଂସାର ! ଧାନ ମୁଠାକ ପାଖରେ ଥିଲା ବୋଲି ମହା ମହା ଦାରୁ ଆପେ ଆପେ ଗୋଡ଼ ତଳେ ମୁଣ୍ଡ ନୁଆଁଉଥିଲେ । ଆଜି ସେତକ ପାଖରେ ନାହିଁ, ନିଜ ପାଇଁ ପରଦ୍ୱାରରେ ହାତ ନକୁଟି ହେବାକୁ ପଡ଼ିଲା ବୋଲି ଲୋକଙ୍କର ଦମାକ୍ ଦେଖ । ଦୁବଘାସ ହୋଇ ମୁଣ୍ଡ ଟେକି ଠାଣି କରି କଥା ହାଙ୍କିବାକୁ ସାହସ ହେଲାଣି ଫେର୍ ! ବେଳ ତ ବଗଡ଼ା;କପାଳ କଥା, କାହାକୁ କହିବ ? ନୋହିଲେ କି ଭଦ୍ରକୁଳ ହୋଇ ରଜାଘର ପାଠ ଝିଅଟାକୁ ଦାନ୍ତ ଦେଖାନ୍ତେ !

ଶେଷକୁ ଥିଲା ଗୋବିନ୍ଦ ସାହୁ ଘର । ଥରେ ଥରେ କରି ତିନି ଥର ସେ ତାଙ୍କ ଘରକୁ ଯାଇ ଫେରିଲା । କେହି ଜବାବ ଦେଲେ ନାହିଁ । କବାଟ ଖୋଲିଲେ ନାହିଁ । ସେତିକିବେଳେ ତାର ଇଚ୍ଛା ହେଲା, ଗାଁରେ ଗୋଟାଏ ପ୍ରଳୟଜ୍ୱାଳା ଲଗାଇ ଦୂରରେ ଥାଇ ଲୋକଙ୍କର ମଜାଟା ଦେଖିବ; କିନ୍ତୁ ଅହା ! ବାପ ମଲା ଆଗରୁ ତାକୁ ମନା କରି ଯାଇଛନ୍ତି । ନିଜର ଭାଗ୍ୟ ନିଜକୁ ଭୁଞ୍ଜିବାକୁ ହେବ, ଲୋକଙ୍କ ଉପରେ ଆକ୍ରୋଶ ନେବାଟା ଠିକ୍ ନୁହେଁ । ଆଜି ଯାଏ ବାପର କଥା ସେ ଅମାନ୍ୟ କରି ଆସିଲା ! ଶେଷ ଅନୁରୋଧଟି, ଉପଦେଶଟିକୁ ଏଡ଼ି ଦେବା ଅନୁଚିତ । ଜଗବନ୍ଧୁ ଢମ୍ପ ସାପଠୁଁ କେଉଁ ଗୁଣରେ ଊଣା ନୁହେଁ । ସେ ପୁଣି ସବୁ ସହି ମୁଣ୍ଡ ନୁଆଇଁ ଫେରିଆସିଲା ।

ହେଉ, ଗୋଟିଏ କୁଟୁମ୍ବର ସର୍ବନାଶ କରି ଯଦି ଗାଁର ଶହ ଶହ ଲୋକ ବିପଦରୁ ରକ୍ଷା ପାଇଲେ, ତେବେ ତାହାହିଁ ହେଉ । ଲୋକଙ୍କୁ ସୁଖରେ ଛାଡ଼ି ସେ ଏବେ ଛୁଡ଼ରରେ ପଶୁ । ଅପନ୍ତରାରେ ପଡ଼ି ତାର ପ୍ରାଣ ଯାଉ, ଗ୍ରାମବାସୀଙ୍କ ପାଇଁ । ନା, ସେ ଆଉ ମୁଠାଏ ଭାତ ପାଇଁ ପରର ଦ୍ୱାରସ୍ଥ ହେବ ନାହିଁ । ଯେଉଁ ଅନ୍ନକୁ ତାର ପିତା ଶେଷରେ ଦାନ କରି ଯାଇଛନ୍ତି, ଖଇରାତ କରି ଯାଇଛନ୍ତି, ସେହି ଭିକ୍ଷା ଅନ୍ନ, ଖଇରାତ ଅନ୍ନକୁ ପୁନର୍ଗ୍ରହଣ କରିବାକୁ ସେ ଲାଳାୟିତ ନୁହେଁ ।

ଆଉ ଏ ଗରିବ ବସ୍ତା ବାଉରିର ବା କି ଦୋଷ ? ସେ କାହିଁକି ତାର ଗଳଗ୍ରହ ହୋଇ, ସଞ୍ଚିତ ସାମାନ୍ୟ ଚାଉଳର ଭାଗୀ ହେବ ? ଚାକର ବୋଲି, ଏ ତ ନିମକହାରାମି ହେବା ଭୟରେ ସେ କିଛି କହୁ ନାହିଁ । କିନ୍ତୁ କେତେ ଦିନ ଚଳାଇ ପାରିବ ସେ ? ନାଁ, ଯାହା ହେଉ, ଯେ କୌଣସି-

ମତେ ନେତାଙ୍କୁ ସଙ୍ଗରେ ନେଇ ସେ ଅଛି ନରପୁର ଛକିବ । ନରପୁରର ସୀମା ପାର ହୋଇ ତେଣିକି ସେ ଚିନ୍ତା କରିବ—ଜୀବନ ରକ୍ଷାର ଉପାୟ । ନେତା ପାଖରେ ଧନ ଅଛି । ଧନର ପ୍ରଭାବରେ ବା ସେମାନେ ଏ ଯାହାରୁ ଉଦ୍ଧାର ପାଇପାରନ୍ତି । ଜଗୁ ଏହିପରି କେତେ କଣ ଭାବି ଚାଳ ଭିତରୁ ପଦାକୁ ଉଠିଆସିଛି । ନେତାର ଉଦ୍ଦେଶ୍ୟରେ ଏଣେ ତେଣେ ଚାହିଁ ଚାହିଁ ତାର ନଜର ପଡ଼ିଲା ବଇଆ ଉପରେ । ବଇଆ ପାଖକୁ ଆସିଲା । କେଜାଣି କାହିଁକି ତାର ମୁହଁଟା ଆଜି ଭାରି ଗମ୍ଭୀର ଦେଖାଯାଉଛି । ସେ ଦୁଇ ହାତ ମଳି ପଚାରିଲା, "ସାନ୍ତେ, ଗତ କଥା ଆଉ ଭାବୁଛନ୍ତି କାହିଁକି ?"

ଜଗୁ କହିଲା, "ଗତ କଥା ଭାବୁ ନାହିଁ ରେ ବଇ, ଅଗତ କଥା ଭାବୁଛି...!"

"ସେ ସବୁ ଭାବିଲେ କିଛି ଫଳ ହେବ ନାହିଁ । ଯାହା ହେବାର ତ ହୋଇଯାଉଛି" କହୁ କହୁ ବଇଆ ଚୁପ ହୋଇଗଲା । ତାର ମୋଟା ବିବେକଟା ସତେ କି ରଙ୍ଗ ଆଖି ଦେଖାଇ ତାକୁ ଚପେଇଦେଲା । ଛାତି ଭିତରେ ଯେପରି କି ସେ ଗୋଟାଏ ତୀବ୍ର ବେଦନା ଅନୁଭବ କଲା । ଅହୋ ! ଏସବୁ ବିପଦର ମୂଳ କାରଣ ତା ଛଡ଼ା ଆଉ କେହି ନୁହେଁ । ସେ ଜାଣି ଜାଣି ତାହାର ଖାମିନ୍ଦକୁ ମାରିଛି, ପିଲାଛୁଆଙ୍କୁ ଆଣି ଦାଣ୍ଡର ଭିକାରୀ କରି ଛାଡ଼ିଛି । କି ଦୁର୍ବୁଦ୍ଧି ନ ହେଲା ତାର ! ଆଉ ସିନା କେହି ଜାଣନ୍ତି ନାହିଁ, ସବୁ କଥା ତାକୁ ଜଣା ଥିଲା । ସେ ଯଦି ଆଗରୁ ପଧାନଙ୍କୁ ସତର୍କ କରି ଦେଇଥାନ୍ତା, ଘଟଣାଟି କଣ ଏପରି ଏତେ ଦୂର ହୋଇଥାନ୍ତା ? ହୁଏତ ସେ ଆତ୍ମରକ୍ଷାର ବାଟ ଖୋଜିଥାନ୍ତେ । ଯେଉଁ ପଧାନେ ତାକୁ ପୁଅ ପରି ସ୍ନେହ କରି, ଏତେ ଗେଲ ବସରରେ ପାଳିଥିଲେ, ଶେଷକୁ ସେ ନିଜେ ହେଲା ତାଙ୍କ ମରଣର କାରଣ ! ନିଜ ହାତରେ ସେ ପଧାନଙ୍କୁ ମଶାଣି ଭୂଇଁରେ ପୋଡ଼ିଆସିଲା !

ଯେଉଁ ଉଦ୍ଦେଶ୍ୟରେ ସେ କୋଳରେ ବସି ପଧାନଙ୍କର ଗଳାରେ ଛୁରି ଦେଇଥିଲା, ସେ ଉଦ୍ଦେଶ୍ୟ, ସେ ସ୍ୱାର୍ଥ ତାର ପୂରଣ ହେଲା କେଉଁଠି ? ଗ୍ରାମବାସୀଏ ଲୁଟି କରି ଧାନ ଚାଉଳ ନେଇ ଘରେ ପୂରାଇଲେ । ସେ କିଅଁ

ଭିତରେ ପଶି ବଳଭଦ୍ର ଘର ଭିତରୁ ପଧାନଙ୍କୁ ଉଦ୍ଧାର କରି ନିଜ ଘରକୁ ନେଇଆସିଲେ । ଅଭିଜ ଗାଁଲୋକଙ୍କୁ ମୁଠାଏ ଧାନ ମାଗିଲେ ଲୋକେ କବାବ ଦେଉ ନାହାନ୍ତି । ନେହୁରା ହୋଇ ଦାନ୍ତରେ ଘରଣ ଧରି ମାଗିଲେ, କେହି ବା ଦୟା କରି ଅତି କଷ୍ଟରେ ପ୍ରତିବେଶୀ ଘରକୁ ହାତ ବଢ଼ାଇ କହୁଛନ୍ତି –"ଯା ଅମୁକ ପାଖକୁ । ମୋ ନିଜ କଥା ତ 'ଠ ଠା ଠି,' ଦାନ ଧର୍ମ କରିବାକୁ ଧାନ କାହିଁ ?"

ନିଜ କଲା କର୍ମ । କାହାକୁ କହିବ ? ଅତି ଲୋଭ ତାର ବିନାଶର ହେତୁ ହେଲା । ସେ କେଉଁ କୂଳର ହେଲା ନାହିଁ । ବିଶ୍ୱାସଘାତକ ହୋଇ ଶେଷକୁ ତାକୁ ଅନୁତାପ କରିବାକୁ ପଡ଼ିଲା, ଭିତରେ ଭିତରେ ଅଙ୍ଗାବନ କାନ୍ଦିବାକୁ ହେଲା ।

ଜଗୁ ପଚାରିଲା, "ଆରେ ନେଙ୍ଗା କାହିଁ ?"

"କାହିଁକି ? ସେ କଣ ଘରେ ନାହିଁ ସାନ୍ତେ ? ବେଳ ଅସି ଦ ଘଣ୍ଟ ହେଲାଣି ।"

"ତାର ତ କାହିଁକି ସକାଳୁ ଦେଖା ନାହିଁ ।"

"ଖେଷାଇବାସ ହୋଇ ନାହିଁ ତେବେ ? କେତେ କର୍ଭବ୍ୟ ନଷ୍ଟିନ୍ତି ଲୋକଟା । ସକାଳ ପହରୁ କାହିଁ ଯାଇ ବୁଲୁଛି । ଅଜ୍ଞ, ମୁଁ ତାକୁ ଡାକିଆଣେ ।"

ବଇଅ ଯିବାକୁ ବସିଲା । ଜଗୁ ବାଧା ଦେଇ କହିଲା, "ଥାଉ, ବଚରା କୁଆଡ଼େ ଯାଇଛି । ବଳେ ଆସିବ ।"

"ଖେଷାଇ ଡ଼େରି ହେଉଛି ସାନ୍ତେ ।" ତାର ଆଖି ଛଳ ଛଳ ହେଲା । ଜଗୁ ବିସ୍ମିତ ହୋଇ ତା ମୁହଁକୁ ଘଡ଼ିଏ ଚାହିଁ କହିଲା, "ନା, ଥାଉ । ଖେଷାଇ ହେବା ଅଉ ଦରକାର ନାହିଁ । ତୁ ଗରିବ ଲୋକ । ତୋର ବୋଝ ହୋଇ ମୁଁ ଆଉ ଏଠି ରହି ପାରିବି ନାହିଁ । ଘରେ ତୋର ଯାହା ଅଛି, ତୋ ପିଲାଛୁଆଙ୍କୁ ନଅଣ୍ଟ ।"

ଦୁଃଖରେ ବଇଆର ଛାତି ସତେ କି ଫାଟିଯିବ । ସେ କହିଲା, "ଏମିତି କହୁଛନ୍ତି କାହିଁକି ସାନ୍ତେ ? ସବୁ ଟିକ ତ ଆପଣଙ୍କର । ବୁଢ଼ା ସାନ୍ତେ ଥିଲା ବେଳେ; ଦମାସମାନଙ୍କୁ ସଞ୍ଜା ଦେଇଥିଲେ । ସେଇ ଟିକ ଟି… ।"

"ଆରେ, ଦେଖୁ ମାଲ କାଟିଲି ରେପ, ମୁଁ ତୋଳକବ ନାହିଁ । ମୋ ପାଇଁ ତୁ ବ୍ୟସ୍ତ ହ ନା । ତୁ ତୋର ସଂସାର ଚଳା । ମୁଁ ମୋର ସବୁ ସୁବଧା କରିବାକୁ ଚେଷ୍ଟା କରିବ ।" ଏତକ କହି ସେ ବଇଆ କଥା ଭାବବାକୁ ଲାଗିଲି—ଗରିବ ସେ । କେତେ ଭଲଲୋକ ! ଗାଁ ଯାକରେ ସମସ୍ତେ ତାକୁ ହତାଦର କରି ଘରୁ ତଡଲେ । ବାଞ୍ଛାଣ୍ଠା । କେତେ ସ୍ନେହ, କେତେ ମମତା ତାର !

ବଇଆ କଣ ପାଇଁ ହାତ ଯୋଡ଼ କହିଲା, "ସେ କଥା ଆଉ କହନ୍ତୁ ନାହିଁ ଜେଠ ସାନ୍ତେ । ଆପଣଙ୍କର ସବୁ ବିପଦର ମୂଳ କାରଣ ହେଉଛି ମୁଁ ନଳେ । ମୋର ସବୁ ଦୋଷ କ୍ଷମା କରନ୍ତୁ ।"

"ତୋର କଛି ଦୋଷ ନାହିଁ ରେ । ଦୋଷ କାହାର ନୁହେଁ, ସବୁ ଭାଗ୍ୟର ଖେଳ ।"

ବଇଆର ଇଚ୍ଛା ହେଲା,ସେ ସବୁ କଥା ଖୋଲି କହିବ । ହେଙ୍କାଣି ବା ସବୁ ଦୋଷ ମୁକ୍ତକଣ୍ଠରେ ସ୍ୱୀକାର କଲେ ତାର ପାପଭାର ଟିକଏ ହେଲେ କମ୍ ହେବ । କନ୍ତୁ କଛି କହିବାକୁ ତା ମୁହଁ ଖୋଲିଲା ନାହିଁ । ସେ ଖାଲି ଶୂନ୍ୟଚକ୍ଷୁରେ ଜଗୁକୁ ଚାହିଁ ରହିଲା । କେତେବେଳକେ ପାଟି ଖୋଲିଲା, "ନା ଜେଠ ସାନ୍ତେ, ନରିଷ୍ଟୁର ଗ୍ରାଡ଼ ତମକୁ ଅନ୍ୟ କୁଆଡ଼େ ଯିବାକୁ ହେବ ନାହିଁ । ହାତରେ ଧନ ଅଛି । ଏ ଧନରେ ଘର ତୋଳା ହେବ । ସାନ୍ତାଣୀ, ବେଣୁ ବାବୁଙ୍କୁ ମୁଁ ନଜେ ଯାଇ ନେଇ ଆସିବି । ସମସ୍ତେ ଏଇଠି ରହିବେ ।"

ଅଳ୍ପ ହସି ଜଗୁ କହିଲା, "ପାଉଁଶ ଖାଇ ବଞ୍ଚିବେ ନାହିଁ ତ ।"

"ପାଉଁଶ କାହିଁକ ଖାଇବେ ? ଆମର ଧାନ ଯେଉଁମାନେ ଲୁଟି କରି ନେଇଛନ୍ତି, ସେହିମାନେ ଦେବେ । ଭଲରେ ମାଗିବା, ଯଦ ନ ଦିଅନ୍ତି, ନେତା ପାଖରେ ବୁଢ଼ା ସାନ୍ତେ ଠଙ୍କା ଧୂନା ରଖି ଯାଇଛନ୍ତି, ଲୋକଙ୍କୁ ଧନ ଦେଇ ଧାନ ଆଣିବା ।"

"ବଡ଼ ଭୁଲ୍ ବୁଝିଛୁ । ସେମାନେ ଧନ ନେଇ ଧାନ ଦେବେ ନାହିଁ ।"

"ଦବ ନାହିଁ, ଏମିତି ସାଧ କାହାର ? ଯିଏ ନାହିଁ କରିବ, ଆଗ ତାର ଘର ଜଳିବ ।"

"ଛିଃ ! ବାପା କଣ କହୁଗଲେ ମନେ ନାହିଁ କି ?"

"ଆପଣ ସିନା ପୁଅ । ଆପଣ ତାଙ୍କ କଥା ମାନିବେ; ମୁଁ ମାନିବାକୁ ବାଧ୍ୟ ନୁହେଁ ।" ବଇଆ ଓଠ କାମୁଡ଼ି କହିଲା "ମୁଁ ମୋର ଦେଖିଲା କାମ କରିବ ବାଉ୍ ଉଣ୍ଡି । ତମେ କହିଲେ କଣ ମୁଁ ପଛେଇ ରହିବ ନାହିଁ । ଖବ୍ ମାଡ଼ି ଆସୁଛି । ନେଡ଼ୀ ବୁଅଡ଼େ ଗଲା ଦେଖେ—"କହି ବଇଆ ଜଗୁ ନିକଟରୁ ବାହାରିଗଲା ।

× × × ×

ସଞ୍ଜ ବୁଡ଼ି ରାତି ହେଲା, ନେଡ଼ୀର ଦେଖା ନାହିଁ । ରାତପାହି ପୁଣି ରାତି ଅସିଲା—ଖୋଜି ଖୋଜି ଜଗୁ ଓ ବଇଆ ଆଖାନ୍ତ ହୋଇଗଲେ । ନେଡ଼ୀକୁ କେହି ଦେଖି ନାହାନ୍ତି, ତା ଖବର କେହି କହି ପାରିଲେ ନାହିଁ । ହତାଶ ହୋଇ ଜଗୁ ବଇଆକୁ କହିଲା, "ଅରେ, ଦୁଧ ଦେଇ ବାପା ଘରେ ସାପ ପୋଷିଥିଲେ, ଶେଷକୁ ସେ ବି ଦଗା ଦେଲା ।"

ରାଗରେ ବଇଆ ଦାନ୍ତ ଘୋଡ଼ିବାଇଲା ।

ଜଗୁ ପୁଣି କହିଲା, "ଯାଉ; ସୁନା ରୁପା ଟଙ୍କା ପଇସାର ଲୁହ ସେ ସହି ପାରିବ ନାହିଁ ବଇଆ । ପରର ଧନ ଅଜଯାଏ କେହି ହଜମ କରି ପାରି ନାହିଁ !" ଟିକିଏ ରହି କହିଲା, "ମୁଁ ଅଛି ବାଟର ଭିକାରୀ, ମୋର ଭାବନା ନାହିଁ ! ଠାକୁରେ ଅଛନ୍ତି, ଯାହା ହେବ !"

ବଇଆ କହିଲା, "ହାବୁଡ଼େ ପଡ଼ିଲେ ଥରେ ତାକୁ ଦେଖନ୍ତି ! ଓଃ, ଏତେ ସଇତାନ୍... !"

"ହାବୁଡ଼େ ପଡ଼ିଲେ; କିନ୍ତୁ ସେ ତୋର ହାବୁଡ଼େ ପଡ଼ିବ ନାହିଁ କେବେ ! ଯା ଶୁଅ ଯା—"

× × ×

ଅନ୍ଧାର ରାତିଟା ! ଗୁହଅଡ଼ ଶ୍ମଶାନ୍, ଗାଁ ମୁଣ୍ଡ ବରଗଛ ମୂଳରେ ଠିଆ ହୋଇ ଜଗୁ ଭାବିଲା—କେଉଁ ମୁହଁରେ ସେ ଆଉ ଲୋକଙ୍କ ପାଖକୁ ଫେରିଯିବ ! ପୋଷିବାର ଶକ୍ତି ତ ତାର ନାହିଁ । ନିଜ ପାଇଁ ଅଉ

ପାଞ୍ଚଠାଙ୍କୁ ସେ ଘାଣ୍ଟିବ କାହିଁକି ? ସେ ଅଛୁ ଜାଣିଲେ ହୁଏତ ବେଣୁକୁ ପୋଷିବାର ଦାୟିତ୍ୱ ତାର ମାମୁ ନେବେ ନାହିଁ । ସେ ଯଦି ଚାଲିଯାଏ, ପୋଷଣ ଦାୟିତ୍ୱ ତାଙ୍କ ଉପରେ ପଡ଼ିଲେ ସେ ସବୁ ଭୁଲାଇବାକୁ ଚେଷ୍ଟା କରିବେ । ନା, ନିଜ ପାଇଁ ସେ ତାଙ୍କର ସୁଖର ସଂସାରରେ ପ୍ରତିବନ୍ଧକ ହେବ ନାହିଁ । ଉମା ଯେପରି ଗାଁ ଛାଡ଼ି ନିଜର ପେଟପାଟଣା ଯୋଗ ବୁଲିବାକୁ ବାହାରିଗଲା, ସେ ବି ଠିକ୍ ସେହିପରି ତାର ବାଟ ଭଣ୍ଡି ଚାଲିବ । ତା ବିଷୟରେ କେହି ଜାଣିବେ ନାହିଁ, କେହି ଶୁଣିବେ ନାହିଁ । ବେଣୁ ତାଙ୍କୁ ପରେ ଖୋଜିବ, ଭାରି କାନ୍ଦିବ । କାନ୍ଦୁ, ତାର ଆଖିରୁ ଲୁହ ପୋଛିବାର ଶକ୍ତି ତ ଜଗୁର ନାହିଁ । ସେ କଣ କରିବ ? ଆହା ! ତାକୁ ଥରେ ଛାତିରେ ଧରି ଗେଲ କରିବାର ଅବସର ସୁବିଧା ଆଉ ମିଳିଲା ନାହିଁ । ଜଗୁର ଆଖିରେ ଲୁହ ଡ଼ଳ ଡ଼ଳ ହେଲା । ଅନ୍ଧାର ରାତିର ନୀରବତା ଭାଙ୍ଗି ଦୂରରୁ ବାଇଆର ପାଟି ଶୁଭିଲା, "ଜଗୁ ବାବୁ ହୋ...ଓ...।"

ଜଗୁ ଚମକି ଚାହିଁଲା—ଅନ୍ଧାରଟା, କିଛି ଦିଶୁ ନାହିଁ । ତାକୁ ଜଣାଗଲା ଯେପରି ବାଇଆ ଡ଼ାକି ଡ଼ାକି ଦୂରରୁ ଧାଇଁ ଧାଇଁ ଆସୁଛି । ତାର ସ୍ୱର ନିକଟରୁ ନିକଟତର ହେଉଛି ।

"ଫେରିଆସ ବାବୁ, ଫେରିଆସ··· ।"

ସ୍ୱରଟା ଅତି ପାଖରୁ ଶୁଭିଲା ।

ନା, ଆଉ ଡେ଼ରି କଲେ ଚଳିବ ନାହିଁ । ବାଇଆଟା ଭାରି ଚାଲାଖ୍, ଜଗୁର ଉଦ୍ଦେଶ୍ୟ କପରି ବୁଝିପାରି ତାକୁ ଫେରାଇ ନେବାକୁ ନଦରୁ ଉଠି ତାର ପଛେ ପଛେ ଧାଇଁଛି । ହାବୁଡ଼େ ପଡ଼ିଲେ ସେ ଆଉ ଛାଡ଼ିବ ନାହିଁ । ନିଶ୍ଚୟ ଫେରାଇନେବ । ଗଉରଟା ! ଆହା, ତାକୁ ସେ କଷ୍ଟ ଦେବ କାହିଁକି ?

"ଜଗୁ ବାବୁ ହୋ...ଓ ନେତା ଆଇଲାଣି...ଆସ..."

ସ୍ୱରଟା ତାରି ପାଖରୁ ସତେ କି ଆଉ ଟିକିଏ ଦୂରକୁ ଘୁଞ୍ଚିଗଲା ।

"ମିଛ କଥା । ନେତା ଆସି ନାହିଁ, ଅସିବ ନାହିଁ । ମୋତେ ଫେରାଇ ନେବାର ଉପାୟ" ମନକୁ ମନ କହି ଗଛ ତଳୁ ବାହାରି ଜଗୁ ଦାଣ୍ଡାକୁ ଆସିଲା, "ଆହା, ବାଉସା ଟୋକାର କେଡ଼େ ସ୍ନେହ ଆମ ଉପରେ··· !" ସେ ଆଗକୁ ଚାଲିଲା ।

"ବାବୁ ହୋ—ଓ...!"

ଧୀରେ ଧୀରେ ବଇଅର ସ୍ୱରଟି ସୁଦୂର ପ୍ରକୃତିର ନୀରବତା ଭିତରେ ମିଳାଇଆସିଲା । କଗୁ ଖଣ୍ଡେ ଦୂର ଅସି ଟିକେ ଚିଅହୋଇ ପଛକୁ ଚାହିଁଲା— ଗାଁଟା କବଳ ଅନ୍ଧାର ଭିତରେ ମିଶିଗଲାଣି, କିଛି ଦିଶୁ ନାହିଁ । ବେଳେ ବେଳେ କୁକୁରଙ୍କର ଡାକ ଗାଁ ମଶାଣିରୁ ଅତି କ୍ଷୀଣସ୍ୱରରେ ଭାସିଆସୁଛି । ବଇଅର ପାଟି ଆଉ ଶୁଭୁ ନାହିଁ, ଖାଲି ବେଳେ ବେଳେ "ବାବୁ ହୋ—ଓ—" ତାଙ୍କର ଶେଷ ଲହରଟା ସତେ କି ତାର କାନରେ ବାଜିଯାଉଛି ।



## —ତେଇଶ—

"ଆଉ ଚାଲି ପାରିବି ନାହିଁ, ମୋଟି ମା ! ମୋର ଗୋଡ଼ ଆଉ ଚଳୁ ନାହିଁ"—କରୁଣ କଣ୍ଠରେ ଉମା କହିଲା । ତାର ବକ୍ଷ ପିଞ୍ଜର ଥରାଇ ଗୋଟାଏ ଦୀର୍ଘଶ୍ୱାସ, ଖରାଦିନର ଦମ୍କା ହାଉଆ ପରି ଭାସି ଚାଲିଗଲା ସେ ବାଟପାଖ ଅମ୍ବଗଛ ତଳେ ବସିପଡି ପୁଣି କହିଲା—"ନା, ଆଉ ରହି ହେବ ନାହିଁ । ମୋଟି ମା, ଉଃ, ଏତେ କଷ୍ଟ ଏ ଛାର ଜୀବନଟା ପାଇଁ ! ଆଉ ବେଶୀ ସହି ହେବ ନାହିଁ ଲୋ !"

ମୋଟି ମା ବାଧ୍ୟ ହୋଇ ଉମା ଆଗରେ ଠିଆ ହୋଇ ତାର ନିରସ ଶୁଷ୍କ ମୁହଁକୁ ଚାହିଁ ରହିଲା । ଆହା ! ପିଲାଟିର ଦେହେରା କେତେ ଶୁଖି ଯାଇଛି ! ଦିନ କେଇଟାରେ ତାର ଆଉ ଅବସ୍ଥା ନାହିଁ । ମୁହଁଟା କଳା କାଠ ପଡ଼ିଗଲାଣି, ଆଖିରେ ଆଉ ତାରୁଣ୍ୟର ଉଜ୍ଜ୍ୱଳ ଜ୍ୟୋତି ନାହିଁ । କପାଳରେ ରେଖା ଫୁଟିଲାଣି । ବାଟକୁ ବାହାରି ଅନିଶ୍ଚିତ ଭାବରେ ଜୀବନ ପାଇଁ ସମୟ ଓ ଅବସ୍ଥା ସଙ୍ଗେ ସଂଗ୍ରାମ କରି ବଞ୍ଚି ରହିବାଠାରୁ ହାଦଖୁର୍ତ୍ତୀଙ୍କ ଆଶ୍ରା ଧରି ପଡ଼ିରହିବା ବରଂ ଉମା ପକ୍ଷରେ ଭଲ ହୋଇଥାନ୍ତା । ମୋଟି ମାର କଣ୍ଠ ରୁଦ୍ଧ ହୋଇଆସିଲା । ସେ ନିଜ ପାଇଁ ଭାବିବ କଣ, ଯେଉଁ ଉମାକୁ ଅଭୟ ଦେଇ ସଙ୍ଗରେ ନେଇ ଆସିଛି, ତାର ଦୁଃଖଦଶା କଥା ଭାବି ସେ ଆର୍ଦ୍ର କଣ୍ଠରେ କହିଲା—"ଉପରକୁ ଚାହିଁଲୁ ଉମା ! ଚାରିଆଡ଼ୁ ମେଘମଣ୍ଡଳ ମାଡି ଆସି ଆକାଶସାରା ଛାଇ ହୋଇଗଲାଣି । ଇଆଡ଼େ ଚାହାଁ; ଦେଖିଲୁ, ଚାରିଆଡ ଅନ୍ଧାର କରି ପବନଟା ଧୂଳି ଉଡ଼ାଇ ମାଡ଼ି ଆସୁଛି; ବେଳ ଆସି ବୁଡ଼ିବା ଉପରେ, କହିଲୁ ମା, ଏତେବେଳେ କି ବାଟ ମଝିରେ ଅପନ୍ତରାରେ ବସି ରହିବାର କଥା ? ଆ, ଉଠି ଆ, ଧୀରେ ଧୀରେ ଚାଲିଗଲେ ମେଘ ଆସିବା ଆଗରୁ କେଉଁଠି ହେଲେ ଆଶ୍ରା ନେବାକୁ ଚେଷ୍ଟା କରିବା ।"

ଜମା କହିଲା,—"କେଉଁଠି ଆଉ ଆଶ୍ରା ନେବା ମୋଉ ମା ? ଯୁଆଡ଼େ ଗଲେ ତ ଆମକୁ ଗଛମୂଳ ଯୋଗ ।"

"ନାହିଁ ଲୋ, ଦୂରରୁ ଏଇ ଯେଉଁ ନଡ଼ିଆଗଛ ଦିଶୁଛି, ସେଠି ଗାଁଗଣ୍ଡା ଅଛି । ବର୍ଷାବେଳେ କାହା ପିଣ୍ଡା ତଳେ ମୁଣ୍ଡ ଗୁଞ୍ଜି ଆଶ୍ରା ନେବା । ଉଠି ଆ, ମୋ ସୁନା ଝିଅଟି ପରି !" ମୋଉ ମା ଜମାର ହାତ ଧରି ତାକୁ ଉଠିବାକୁ ଅନୁରୋଧ କଲା ।

"ଲୋକେ କଣ ତାଙ୍କ ପିଣ୍ଡାରେ ରହିବାକୁ ଥାନ ଦେବେ ?" ଜମା କହିଲା ।

"ଆଲୋ କଣେ ସିନା ମନା କରିବ, ପାଞ୍ଚଜଣ ସିନା ପିଣ୍ଡାରୁ ତଡ଼ିଦେବେ, କାହାର ହେଲେ ମନ ଅବଶ୍ୟ ଟଳିବ । ସମସ୍ତଙ୍କ ମନ, ସମସ୍ତଙ୍କ ପ୍ରକୃତି ଏକାପରି ନୁହେଁ ।" ମୋଉ ମା ପୁଣି ଆକାଶକୁ ଚାହିଁଲା, ମେଘର ଅବସ୍ଥା ଦେଖିବାକୁ ।

ଜମା ଟିକିଏ ରହି, ଓଠ ନେପେଡ଼ି, ଧୀରେ ଧୀରେ ମୁଣ୍ଡ ହଲାଇ ଦୁଃଖପୂର୍ଣ୍ଣ ଅବଜ୍ଞାସୂଚକ ସ୍ୱରରେ କହିଲା—"ନା, ତୁ ଯା ଲୋ ମୋଉ ମା, ମୁଁ ଆଉ ଚାଲି ପାରିବି ନାହିଁ !"

"ଚାଲି ପାରିବୁ ନାହିଁ ?" ମୋଉ ମା ବିସ୍ମିତ ହୋଇ କହିଲା, —"ମୋ ପରି ତୋର ବୁଢ଼ା ଚମ, ଢିଲା ଦେହ, ଅବଶ ପ୍ରାଣ ତ ନୁହେଁ ଯେ ତୁ ଏତେ ଶୀଘ୍ର ଥକିଯିବୁ । ଟୋକୀ ବୟସ, ମନ କଲେ ହାତୀ ଗୋଡ଼ ଧରିବୁ । ଆ, ଉଠି ଆ ।" ସେ ଜିଜ୍ଞାସୁ ନୟନରେ ଜମାର ମୁହଁକୁ ଚାହିଁଲା ।

ଜମା ପୂର୍ବପରି ମୁଣ୍ଡ ଆନ୍ଦୋଳିତ କରି ଅଳସ କଣ୍ଠରେ କହିଲା— "ତୁ ଯା ଲୋ...! ମୋର ଏ ଅଲୋଡ଼ା ହୀନମାନିଆ ଜୀବନରେ ଆଉ ଦରକାର ନାହିଁ । ଅପନ୍ତରାରେ ପଡ଼ି ମରିବାକୁ ଘରୁ ଗୋଡ଼ କାଢ଼ି ଆସିଥିଲି, ଆସିଥିଲି ଗୋଟାଏ ଉଦ୍‌ବେଗ ଗୋଟାଏ ଉତ୍ତେଜନାର ରହରେ ପଡ଼ି । ଆଜି ଭାବୁଛି, ଗାଁ ମଶାଣି ଛଡ଼ି ଅପନ୍ତରାକୁ ଆସିବା ମୋର ମୋଟେ ଉଚିତ ନ ଥିଲା । ଖାଲି ତୋର କଥା, ନା, ତୋର ସଙ୍ଗରେ...।" କହୁ କହୁ ସେ ଚୁପ୍ ହେଲା । ତାର ଆଖିରେ ଲୁହ ପୂର୍ଣ୍ଣ ହେଲା ।

ମୋତି ମା ଉମାର କଥା ଶୁଣି ଛାତି ଭିତରେ କପଟି ଗୋଟାଏ ବେଦନା ଅନୁଭବ କଲା । ସେ ମୁହଁ ତଳକୁ ପୋତି ଭାବିବାକୁ ଲାଗିଲା— ହେ ଭଗବାନ୍ ! ଶେଷକୁ ଏ ଅପବାଦ ବି ଶୁଣିବାକୁ ଭାଗ୍ୟରେ ଥିଲା ତାର ! ହାତରେ ଖପରି ଧରି ସେ ବାଟକୁ ବାହାରିଛି—ତଥାପି ଉମାକୁ ପାଖରୁ ଛାଡି ପାରୁ ନାହିଁ । ସେ ପୁଣି ଏହା କହୁଛି ! ମୋତି ମାର ଭାରି ରାଗ ହେଲା। ସେ କ୍ରୋଧରେ ତଳ୍ ମୁହଁ ଫେରାଇ ଉମାକୁ ଚାହିଁଲା; କିନ୍ତୁ ଉମାର ସଜଳ ଆଖି ଦେଖି ଉଛୁଳିଆସୁଥିବା ରାଗଟା ତାର ଅନ୍ତ ହୋଇଗଲା ସଙ୍ଗେ ସଙ୍ଗେ । ସେ ଗେହ୍ଲେଇ କରି କହିଲା—"ଅଲୋ, ଉମା, ମୋ ଦୋଷ ଦେ ନା ଲୋ...।"

ନିଜର ଭୁଲଟା ବୁଝିପାରି ଉମା କହିଲା—"କାହା ଦୋଷ ଦେବି କାହିଁକି ? ସବୁ ମୋର କର୍ମର ଦୋଷ ! ମୋର ଆଉ ଇଚ୍ଛା ହେଉଛି ମୋତି ମା, କପରି ଘରକୁ ଫେରିଯାନ୍ତି ।" ସେ ପୁଣି ଭାବିଲା—କେଜାଣି ବା ଏ ଭିତରେ ଖୁଡୀର ମନ ବଦଳିବଣି କି ଜଗୁ ଭାଇ ଫେରି ଆସିବଣି ।

"ଥରେ ପଦାକୁ ଆସିଲେ, ବାପ ମା ହେଲେ ବି ତ ଘରେ ପୂରାଇବେ ନାହିଁ । ଯଦି ଇଚ୍ଛା ହେଉଛି ଫେରି ଯା ।" ସତ କଥା । ଉମାର ଆଶା ଗୁଡ଼ାକ ନିରର୍ଥକ । ଘରେ ରହିହେଲା ନାହିଁ ବୋଲି ସେ ଘର ଛାଡ଼ିଲା । ସେଠାରେ ତାର ଆଉ କୌଣସି ମମତା ନାହିଁ । ନିଜ ନେଇ ସମସ୍ତେ ବ୍ୟସ୍ତ। ଫେରିଗଲେ, ବୋଝ ଉପରେ ନଳିତା ବିଡ଼ା ପରି ଦୁଃଖ ଉପରେ ଅପମାନ ଛଡ଼ା ତାର ଭାଗ୍ୟରେ ଆଉ କଛି ନାହିଁ । ମିଛଟାରେ ସୁଖର ଦୁରାଶା କରି ପ୍ରାଣକୁ ଦୁଃଖଯନ୍ତ୍ରଣାରେ ଛଟପଟ କରି ବା ଲାଭ କଣ ? ମରଣକୁ ଆନନ୍ଦରେ ବରଣ କରିବାକୁ ପ୍ରସ୍ତୁତ ହେଲେ ସବୁ ଦୁଶ୍ଚିନ୍ତା ଦୂର ହୋଇଯିବ ।

ଉମା କହିଲା—"ମୋର ଏ ନାଉଁଛୁଣା ଜୀବନର କି ମୂଲ୍ୟ ଅଛି ଯେ, ଭବିଷ୍ୟତର କେଉଁ କଳ୍ପିତ ସୁଖ ଆନନ୍ଦ ଆଶାରେ ମୁଁ କଷ୍ଟ ପାଇବି ? ଆସୁ ବର୍ଷା, ଆସୁ ଝଡ଼ ତୋଫାନ । ବଡ଼ଚଢ଼ର ନିଷ୍ଠୁର ଆଘାତରେ ପ୍ରାଣ ବାହାରିଯାଉ । ମରଣ ତ ଶେଷ କଥା ! ତାକୁ ଡ଼ରିବ କାହିଁକି ଆଉ ?" ଉମା ଅନିର୍ଦ୍ଦିଷ୍ଟ ଚକ୍ଷୁରେ ପ୍ରକୃତିର ଅଗାଡ ତାଣ୍ଡବକୁ ଚାହିଁଲା । ବଉଦର

ଅନ୍ତର ଶତ ବଙ୍କୁଲ ରେଖା ମୁହଁ ଦେଖାଇ ଛପି ଛପି ଯାଉଛି । ଗୃହଆଡ଼ୁ ମେଘ ଅନ୍ଧାର ଘୋଟି ଘୋଟି ଆସୁଛି । ଘିଅ ଘିଅ ବତାସଟା ଦିହକୁ କାଲୁଆ ଲାଗିଲାଣି ।

ମୋଢ ମା ଅଧୀର ହୋଇ କହିଲା, "ଉମା, ପିଲା ଲୋକ ତୁ । ଯେଉଁ ଦୁ ଟୋପା ରକ୍ତ ତୋର ଶିରାପ୍ରଶିରାରେ ଗତି କରୁଛି, ତାର ଉତ୍ତାପ ବଡ଼ ପ୍ରବଳ । ସେଥିପାଇଁ ଉତ୍ତେଜନାରେ ତୁ ଏକଥା କହିଲୁ । ଶୁଣ କହୁଛି— ଜୀବନର ପ୍ରକୃତ ମୂଲ୍ୟ ତୁ ଅଜଯାଏ ବୁଝିଲୁ ନାହିଁ । ବୁଝିବାକୁ ତେର ଅଛି ଅବକା । ମଣିଷ ଯେତିକ ଦୋଷଗତା ହୁଏ, ସୁଖର ଆଶାରେ ଅଙ୍ଗରେ ଯେତିକ ଦୁଃଖକଷ୍ଟ ନଭୁଏ, ଜୀବନଟା ଯେ କେତେ ଅମୂଲ୍ୟ, ସେ ସେତିକ ଅନୁଭବ କରେ, ଉପଲବ୍ଧି କରେ । ଭବିଷ୍ୟତର ଆନନ୍ଦ, ଭବିଷ୍ୟତର ସୁଖ ତ ଅଧିକ ଅଶାର କଥା । ବର୍ତ୍ତମାନ ବଞ୍ଚି ରହିବାକୁ ଯେଉଁ ଉଦ୍ୟୋଗ ସେଇ ତ ମଣିଷର ଆନନ୍ଦ, ସୁଖ । ମରଣଟା ଶେଷ କଥା । ଯେତେବେଳେ ଅସିବାର କଥା ଅସିବ ତ ନଷ୍ଟେ । ଜାଣୁ ଜାଣୁ ସବୁ ସୁଖ, ସବୁ ଆନନ୍ଦ ଛାଡ଼ି ତାକୁ ଗୁହିଁ ବସିବା କାହିଁକି ? ତା ପାଖକୁ ନିମନ୍ତ୍ରଣ ଘେନି ଅଗେଇଯିବା କାହିଁକ ଜ୍ୱା ? ବଞ୍ଚିବାକୁ ଜନମ, ମରିବାକୁ ନୁହେଁ । ତା ହୋଇଥିଲେ ଆମକୁ ଠାକୁରେ ଜନମ ଦେଇ ନ ଥାନ୍ତେ ମୋଟେ, ବୁଝିଲୁ ଉମା ?"

ଉମା ମୁଣ୍ଡ ହଲାଇ ସ୍ୱୀକାର ଜଣାଇଲା । କହିଲା, "ଘର ଛାଡ଼ିବାର ଅଙ୍କ କେତେ ଦିନ ହେଲା, ମୋର ସ୍ମରଣ ହେଉ ନାହିଁ । ମରିବାକୁ ମନାସିଲେ ସବୁଦିନେ ତୁ ମୋତେ ଏହି କଥା କହୁ । ଜୀବନକୁ ମମତା କର ଯେ ମୁଁ ତୋର କଥା ମାନି ଚାଲିଛି ସେ କଥା ନୁହେଁ; ଗୁଲିଥାଉ କେତେ ଦିନ ଗୁଲିଛି ।" ଏତିକି କହି ଉମା ଆଖିର ଲୁହ ପୋଛି ଠିଆ ହେଲା । ମୋଢ ମା ଅକାଶର ଅବସ୍ଥା ଦେଖି ଧୀରେ ଧୀରେ ତାର କନା ବୁଜୁଳାଟି ତଳୁ ନେଇ କାଖରେ ଜାକି କହିଲା, "ସହଳ ଆ ଉମା । ପବନଟା ଦେହକୁ କାଲୁଆ ଲାଗିଲାଣି । ଅଧ ବାଟରେ ବର୍ଷା ହେଲେ ଭିଜିବା... ।"

ଉମାର ଶ୍ରାନ୍ତି କେତେକ ପରିମାଣରେ ଦୂର ହୋଇଥିଲା । ସେ ଆଉ ବିଶେଷ ଆପତ୍ତି ନ କରି ମୋଢ ମାର ପଛେ ପଛେ ଯନ୍ତ୍ରଚାଳିତ ପରି ଚାଲିଲା । ଭାବିବାକୁ ଲାଗିଲା—ହେଉ, କେତେ ଦିନ ମୋଢ ମାର ପଦାଙ୍କ

ଅନୁସର ଯିବାକୁ ହେଉଛି ଦେଖାଯାଉ । ଜୀବନଠାରୁ ଯେ କଡାନ୍ତ ତୁଚ୍ଛ ବୋଲି ଭାବନ୍ତି, ମରଣଠାରୁ ଯେ ଆପଣାର ଅତି ଅନ୍ତରଙ୍ଗ ବନ୍ଧୁ ବୋଲି ଗ୍ରହଣ କରେ, ତାର ଆଉ କେଉଁଥିରେ ଭାବନା ? ଆପଦ ବିପଦ, ଦୁଃଖ କଷ୍ଟ ଯାହାର ଚିରସହଚର, ସେ ଆଉ ସେମାନଙ୍କର ସାହଚର୍ଯ୍ୟକୁ ଅଚିହ୍ନା ଅଜଣା ପରି ମଣିବ କାହିଁକି ?

ଦୂର ଗାଁ ପାଖ ହେଲା । ଲୋକ କୋଳାହଳ ଶୁଭିଲା । ଜମା ମୋଉ-ମାର ପଣତ କାନି ଟାଣି କହିଲା, "ଧୀରେ ଧୀରେ ଚାଲ୍ ମୋଉ ମା ! ଗୋଡ଼ ଥକିଗଲାଣି । ହେଇ ତ ଆଗରେ ଗାଁଟା । ଏତେ ତର ତର କାହିଁକି ? ବର୍ଷା ପାଣିରେ ତିନ୍ତିବାର ଭୟ ତ ଆଉ ନାହିଁ ।"

ମୋଉ ମା ମୁହଁ ବୁଲାଇ କହିଲା, "ଗାଁ ସିନା ପାଖେଇ ଆସିଲା, ବେଳ ଅସ୍ତ ବୁଡ଼ିବା ଉପରେ । ଆଗରୁ ଯାଇ କାହା ଓଳିତଳେ ଆଶ୍ରା ନେବା, ସେଇଟିକ ଠିକ୍ କରିବା ଭଲ । ଆମ ପରି କେତେ କାଙ୍ଗାଳ ଏଠି ଥିବେ, ସେ କଥା କିଏ ଜାଣେ ?"

"ଗୋଡ଼ ଆଉ ଚଲୁ ନାହିଁ ।"

"ମୋ କଥା ମାନି ଯଦି କାଲି ସଞ୍ଜରେ ସେ ତୋରାଣି ମନ୍ଦାକ ପିଇଥାନ୍ତୁ··· ।"

"କେଉଁଠି ଘରୁ ?"

"ଆଜି ଦିନ ଦ୍ୱିପହର ବେଳେ, ସେ ଗାଁର ବାହ୍ମଣୀ ବୁଢ଼ୀ ଯେଉଁ ଭାତ ମୁଠାକ ଦେଲା ତାକୁ ଖାଇଲୁ ନାହିଁ । ମୁଁ ଏତେ କରି କହିଲି, ମୋ କଥା ଶୁଣିଲୁ ନାହିଁ··· ।"

"ମୋଉ ମା ଲୋ, ସେ କଥା ମୋତେ ଆଉ କହ ନା । ମୁଁ ପରା ନିଜେ ଦେଖିଛି—ସେ ଭାତ ମୁଠାକ ତା ନାତିର ଅଇଁଠା, ପଚି ଗଲା ପରା !"

ମୋଉ ମା କହିଲା, "ଆଲୋ, ବାଟକୁ ଆସି ଜାତି ଅଜାତି, ଭଲା ଅଇଁଠା ଧରି ବସିଲେ ଦଣ୍ଡେ ଚଳି ହେବ ନାହିଁ । ଅସୁଖ ବାଇ, ପାଇଲା ଚିଜ ଛାଡ଼ି ପେଟକୁ ସମ୍ଭାଳି କେତେ ଦିନ ଚଳି ପାରିବୁ ? ସେଇ ପେଟ ପାଇଁ ସିନା ସବୁ ନାଟ, ଆମର ଘରୁ ଗୋଡ଼ କାଢ଼ିବା କଥା । କାଲି ସଞ୍ଜରେ ସେ କେଉଁଠି ଘରର ତୋରାଣି ମନ୍ଦାକ ପିଇଲି । ଆଜି ବାହ୍ମଣ

ଘରର ପାଟି କଡ଼ା ଅଇଁଠା ଭାତ ଖାଇଲି । ମୋର ଏବେ କଣ ବଗିଡ଼ି-ଗଲା, କଣ ବଦଳିଗଲା ? ମୁଁ ଯେଉଁ ଲୋକକୁ ସେହି ଲୋକ ଅଜି ଅଛି । କାହିଁ କିଛି ତ ବଦଳି ନାହିଁ । ତୁ ଯଦି ପଢ଼ିଲୁ ମୋର ସାନଭଉଣୀ ମାନଥାନ୍ତୁ ବାଟ ଦି ଖୋଜି ଯିବାକୁ ହଠାତ୍ କାହିଁକି ଏପରି ?"

"ଶେଷକୁ କଣ ଏଇଆ ଥିଲା କପାଳରେ !"

"ଶେଷକୁ ? କାହିଁ, ଆରମ୍ଭ ତ ମୋଟେ ହୋଇଆସୁଛି । ଶେଷ ତ ଯାଇଁ କେତେ ଦୂରରେ ଅଛି, ଅମର ଚିନ୍ତାର ଅତୀତ ରାଜ୍ୟରେ ! ଜୀବନ-ପଥର ସୈନିକଯାତ୍ରୀ ପରି ଅମେ ଅମର ଠାଣି ମନକୁ ଅସ୍ତ୍ର କରି ବାହାରି-ଥାଇଁ, ମରଣ ବିରୁଦ୍ଧରେ ଯୁଦ୍ଧ ଅଭିଯାନ କରି । ଆରମ୍ଭରୁ ଯଦି ହଟିଯିବୁ, ଏ ଯାତ୍ରାରେ ଜୟୀ ହୋଇ ଉଧିର ପାରିବାର ଅଶା ଅଜି କରିବା କାହିଁକି ? ନା, ସେ ବୁଦ୍ଧି ତୁ ଛାଡ଼ । ଜାତି-ଅଜାତି, ଧର୍ମ-ଅଧର୍ମ ଧରିବା ସମୟ ନାହିଁ । ଦେଖିଟା ଯାକର ଲୋକ ସବୁ ଛାଡ଼ି ଅଜି ଗୋଟାଏ ବୃତ୍ତି—ଭିକ୍ଷା ବୃତ୍ତି ଧରିଛି । ଅମର ପେଷା ଭିକ ମାଗିବା । ଅମେ ସମସ୍ତେ ଗୋଟାଏ ଜାତି—ମଣିଷ ଜାତି—କାଙ୍ଗାଳ ଜାତି । ଦେଖିଟା ଅମର ଜଗନ୍ନାଥର ମୁକ୍ତିମଣ୍ଡପ ହୋଇଛି—ଯାହା ପାଇବା ତାକୁ ମହାପ୍ରସାଦ ବୋଲି ଦେଖିବା । ଯାହା ଖାଇବା, ଦେବତାର ଭୋଗ ଅମୃତ ବୋଲି ତାକୁ ମଣିବା । ତେବେ ଯିନା ପ୍ରାଣ ରହିବ ଭଉଣୀ… ।"

ସତେ ଏବା, ଯେଉଁ ଦେଶରେ ମୂକ ଜଗନ୍ନାଥ ସାମ୍ୟ ନୀତିର ଧ୍ୱଜା ଉଡ଼ାଇଛନ୍ତି, ସେ ଦେଶର ଲୋକେ ଜାତି ଅଜାତି ଧରି ବସିଛନ୍ତି । ମଣିଷ ଜାତିକୁ ଶିକ୍ଷା ଦେବାକୁ ଦୈବଦଣ୍ଡ ମହାଦୁର୍ଭିକ୍ଷ ଆସି ମଣିଷର ଆଖି ଖୋଲି ଦେଇଗଲା—ଜାତି ଅଜାତି, ଛୁଆ ଅଛୁଆଁ ଭେଦ ଜ୍ଞାନ କରିବା ମଣିଷର ଭ୍ରମ । ସମସ୍ତେ ଦେବତାର ସନ୍ତାନ—ଗୋଟିଏ ଜାତି—ମଣିଷ ଜାତି ! ତେବେ ଏ ଭେଦ କାହିଁକି ? ଦେଶର ଅଧେ ଲୋକଙ୍କର ଜୀବନ ବଳିମଞ୍ଚରେ ମହାମାନବ ପରମେଶ୍ୱର, ପ୍ରକାଶ୍ୟରୂପରେ ଏହି ମହାଶିକ୍ଷା ଜନସମାଜକୁ ଶିଖାଇଦେଲେ । ତଥାପି ଏ ଜାତି ଶିଖିଲା ନାହିଁ—ଅନ୍ଧ ଭଳି ପୁରାତନ ପ୍ରଥାକୁ ଧରି ବସିଲା । ଆଉ କେତେ ଦିନ ?

ବାଟ କଡରେ ମଶାଣି ଭୂଇଁ । ଗୋଟାଏ କିଆ ବାଡ଼ ଦେହରେ ଖଣ୍ଡେ ଛିଣ୍ଡା ଲୁଗା ଲାଗି ଦମ୍କା ପବନରେ ଫର ଫର ହୋଉଛି । ମୋଢ ମାର ନିଘା ପଡ଼ିଲା ତହିଁରେ । ସେ ଉମାକୁ ବାଟରେ ଛାଡ଼ି ମଶାଣି ଭୂଇଁକୁ ଗଲା । କିଆ ବାଡ଼ରୁ ଛିଣ୍ଡା ଲୁଗାଟି କାଢ଼ି ପୁଡ଼ା ଖୋଲି ତହିଁରେ ବାନ୍ଧି ରଖିଲା । ଉମା ପାଖକୁ ଫେରି ଆସି କହିଲା, "ବର୍ଷା ପାଣି ପଡ଼ିଲାଣି, ଚାଲଦ ଚାଲ... ।"

ଉମା ଚାଲୁ ଚାଲୁ କହିଲା, "ଏ କଣ କଲୁ ମୋଢ ମା, ମଶାଣି ଭୂଇଁର ଲୁଗା ନେଇ ପୁଡ଼ାରେ ରଖିଲୁ ?"

ମେଘୁଆ ଦିନର କ୍ଷଣିକ ଖରା ପରି ତାର ଶୁଖିଲା ମୁହଁରେ ହସର ଆଲୁଅ ଖେଳିଗଲା । ସେ କହିଲା, "ବୁଝିଲୁ ନାହିଁ ? ପରେ ଭାରି କାମରେ ଆସିବ । ମାଗିଲେ ଏବେ କିଏ ଦେଉଛି ଆଉ କାନି ?"

ଉମା କିଛି ନ କହି ଆଗକୁ ଚାଲିଲା । ଖଣ୍ଡେ ଦୂର ଦୁହେଁ ନୀରବ ହୋଇ ଚାଲିଲେ । ବେଳେ ବେଳେ ବର୍ଷା ପାଣି ବୁନ୍ଦା ବୁନ୍ଦା ହୋଇ ଆକାଶରୁ ଝଡ଼ି ପଡ଼ୁଥାଏ । କିଛି ଦୂର ଆଗକୁ ଆସି ସେମାନେ ଦେଖିଲେ ଗାଁ ମୁଣ୍ଡ ଆମ୍ବ ତୋଟା ଭିତରେ କେତେ ଜଣ ଲୋକ ବସି କଣ କରୁଛନ୍ତି । ସେମାନେ ପାଖକୁ ଗଲେ । ଦେଖିଲେ, ଲୋକମାନେ ଖଣ୍ଡେ ଖଣ୍ଡେ ଟେଲୁଅରେ ଭାତ ଧରି ଖାଉଛନ୍ତି । କେହି କାହାରି ମୁହଁକୁ ଚାହିଁବାକୁ ତର ପାଉ ନାହାନ୍ତି । କିପରି ଶୀଘ୍ର ଖାଇ ଶେଷ କରିବେ, ସଭିଙ୍କର ଯେପରି ଏହି ଗୋଟିଏ ଉଦ୍ଦେଶ୍ୟ । ମୋଢ ମା ସେମାନଙ୍କୁ ଚାହିଁ ଚାହିଁ ଭାବିବାକୁ ଲାଗିଲା—ଏମାନେ ବୋଧହୁଏ ତାଙ୍କରି ପରି କାଙ୍ଗାଳ । ରୂପ ଦେଖି ଜଣାଯାଉଛି, ପେଟ ବିକଳରେ ଏମାନେ ଭିକ୍ଷା ଆଶ୍ରା କରିଛନ୍ତି । ଯାହାହେଉ, ଏହି ଗାଁରେ ନିଶ୍ଚୟ କେହି ମହାତ୍ମା ଅନ୍ନଛତ୍ର ଖୋଲିଛନ୍ତି । ନୋହିଲେ ଏମାନେ ଖାଇବାକୁ ପାନ୍ତେ କିପରି ?

କଥାଟା ବୁଝିବାକୁ ମୋଢ ମା ପାଖକୁ ଯାଇ କଅଁଳେଇ ପଚାରିଲା, "ଏ ଗାଁ ନା କଣ ବାପ .. ?"

ସମସ୍ତେ ତ ଖାଇବାରେ ବ୍ୟସ୍ତ, ଉତ୍ତର ଦେଉଛି କିଏ ? କିଛିକ୍ଷଣ ପରେ ଜଣେ ବୁଢ଼ା ମୁହଁ ଟେକି ଚାହିଁ କହିଲା, "ଏଠି ଠିଆ ହେଲେ କଣ ହେବ ? ଯା, ଆଗକୁ ଯା—ସଞ୍ଜ ହେଲେ ଛତର ବନ୍ଦ ହୋଇଯିବ...।" ବୁଢ଼ା ପୁଣି ଖାଇବାରେ ମନ ଦେଲା ।

ମୋଉ ମା—"ଛତରକୁ ବାଟ କଏ ବାପ !"

ବୁଢ଼ା ମୁଣ୍ଡ ଟେକ ଗୃହିଁଲ । ପାହି ଭିତରେ ଥିବା ଭାତଟକ ଢୋକ ସେ ଯେପରି ଟିକେ ବଳକ୍ତ ହୋଇ କହିଲ, "ସେଇ ତ ଗୋଟାଏ ବାଟ, ଗାଁ ମଝିକ । ଡାଣ ହାତ ଗଲେ ମହନ୍ତଙ୍କ କଚେରି ଘର । ତା ଆରପାଖ ଅମ୍ବ ତୋଟାରେ ଛତର ।"

ମୋଉ ମା ଆଉ ଅପେକ୍ଷା କଲ ନାହିଁ । ଝିମାର ହାତ ଧରି ସେ ଆଗକୁ ଗୃଲଲ ।

—ଉବିଣ—

ମହନ୍ତ ମହାରାଜ ପରମାନନ୍ଦ ପରମହଂସଙ୍କୁ ପୁରୀ ଜିଲ୍ଲରେ ନ ଚିହ୍ନେ କଏ ? ପୁରୀ ସହରରେ ସିନା ମଠଟା ଅବସ୍ଥିତ, ଓଡ଼ିଶା ସାରା ତାଙ୍କର ଇଲକାବାଡ ବ୍ୟାପି ରହିଛି—ବିଶେଷତଃ ପୁରୀ ଜିଲ୍ଲରେ । ଯେଉଁଠି ଯେଉଁଠି ତାଙ୍କର ଜମି ଜମିଦାରୀ ଅଛି, ପ୍ରାୟ ପ୍ରତ୍ୟେକ ଜାଗାରେ ତାଙ୍କର କଚେରି ଘର, ଖମାର ଅଛି । ଇଲକା ବୁଝିବାକୁ ତାଙ୍କର ଅନେକ ନିଯୁକ୍ତ କର୍ମଗୃରୀ ମଧ ଅଛନ୍ତି । ପୁରୀ ଜିଲ୍ଲରେ ତାଙ୍କ ନାମର ଖାତିର ଯେପରି, ପୁରୀ ସହରରେ ଲୋକେ ତାଙ୍କୁ ସମ୍ମାନ କରନ୍ତି ସେହିପରି । ଲୋକେ କହନ୍ତି ପରମହଂସ ମଠ ସବୁଠାରୁ ପୁରୁଣା ପଶ୍ଚିମା ମଠ, ପଛରେ ତାର ଅସୀମ ସୁଖ୍ୟାତି ପୁଣି ବିରାଟ ଇତିହାସ ।

ଯାହାହେଉ, ଦୁର୍ଭିକ୍ଷ ଅସିଲ । ମହନ୍ତ ମହାରାଜ ମନେ କଲେ ତାଙ୍କର ମହାନ୍ କର୍ତ୍ତବ୍ୟ ଉପସ୍ଥିତ ହେଲ । ଦେବପ୍ରାଣ ଲୋକ, ପରର ଦୁଃଖ କଷ୍ଟ ମୋଟେ ସେ ସହି ପାରନ୍ତି ନାହିଁ । ଲୋକଙ୍କର ବିପଦ କଥା ଶୁଣିଲେ ସେ ବଡ଼ ଅଧୀର ହୋଇପଡ଼ନ୍ତି । ଏକେ ତ ଦୁର୍ଭିକ୍ଷ ବିପଦ ଦେଶସାରା ଘୋଟିଗଲଣି, ଲୋକେ ଖାଇବାକୁ ନ ପାଇ ଘରଦ୍ୱାର ଛାଡ଼ିଲେଣି ସେ କ ଆଉ ନିଶ୍ଚିନ୍ତ ହୋଇ ବସିପାରନ୍ତି ? ଯାହାର ଅନ୍ନରେ ସେ ପ୍ରତିପାଳିତ, ଯାହାଙ୍କର ଧନ ସମ୍ପତ୍ତି ନେଇ ତାଙ୍କର ଦେବତା ଆଜି ଧନୀ, ସେହି ନିରାହ ନିରାଶ୍ରୟ ପ୍ରଜାଙ୍କର ଅକୁଳ ଚୀତ୍କାର ତାଙ୍କ କାନରେ ପ୍ରବେଶ । ସେ ପଞ୍ଜୁଡ଼ି ଭାଙ୍ଗି ପଦାକୁ ଅସିଲେ ।

ଧାନ ଚାଉଳ ଯେଉଁଠି ଯାହା ଥିଲା, ତହିଁରୁ ଅଧିକାଂଶ ତ ମହାଙ୍ଗୀ ଦେଖି ଦେଶ ଆଗରୁ ଛଡ଼ାଇ ଦେଇଥିଲେ । ଟଙ୍କା ସୁନା ଯାହା ଲବ୍ଧ ହେଲା, ସବୁ ଆସି ମଠ ଠାକୁରଙ୍କ ଖଜଣାଖାନାରେ ଜମା ହୋଇଥିଲା । ବାକୀ ଯାହା ଥିଲା, ସେତକ ସେ ଧର୍ମକାର୍ଯ୍ୟରେ ସତ୍ କାର୍ଯ୍ୟରେ ଖଇରାତ୍ କରିବାକୁ ଇଚ୍ଛା କଲେ । ଖମାରେଇମାନଙ୍କ ପାଖକୁ ଆଦେଶ ପଠାଗଲା— ଅନ୍ନଛତ୍ର ଖୋଲ । ତାଙ୍କ ଇଲାକାର ଠାଏ ଠାଏ ଅନ୍ନଛତ୍ର ଖୋଲା ହେଲା । ଆଦେଶ ଅନୁଯାୟୀ କେବଳ ଇଲାକାର ପ୍ରଜାମାନଙ୍କୁ ଅନ୍ନଛତ୍ରରେ ଖାଇବାର ବ୍ୟବସ୍ଥା କରାଗଲା ।

ନରକେ ଗାଁଟି ମହାନ୍ତଙ୍କ ଜମିଦାରୀ ଭିତରେ ଗୋଟିଏ ବଡ଼ ପ୍ରଗନା । ଅମାର କଚେରୀ ଘର ତ ରହିବାର କଥା । ଆଖପାଖ ପାଞ୍ଚ ସାତ ଖଣ୍ଡି ମହଲର ହାଲହକତ ବୁଝିବାକୁ ଓ ଧାନ ଚାଉଳ ଖଜଣା ପତ୍ର ଅସୁଲ କରିବାକୁ କଚେରୀରେ କରଣ, ଖମାରୀ, କୋଠିଆ, ହଳିଆ ନେଇ ଲୋକ ଦଶ ପନ୍ଦରଙ୍କର ଚଳାଚଳ । ମହନ୍ତଙ୍କର ହୁକୁମ୍ ପାଇ ଏମାନେ ନରକେରେ ଅନ୍ନଛତ୍ର ଖୋଲିଛନ୍ତି । କଚେରି ପଛ ଆମ୍ବ ବଗିଚାରେ ଲୋକମାନେ ରାତିରେ ରହିବାକୁ ଅନେକଗୁଡ଼ିଏ ବରଡ଼ା ଛାଟିର ଘର ତୋଳା ହୋଇଛି । ଖମାରଘର କଡ଼କୁ ଲାଗି ରୋଷାଇ-ଘର । ଲୋକଙ୍କୁ ଖାଇବାକୁ ଦେବାକୁ ଯାହା କଛି,ସେହି ଘରେ ରନ୍ଧା ହୁଏ । ରନ୍ଧା ଶେଷ ହେଲେ ରନ୍ଧାଦ୍ରବ୍ୟ ଗୋଟିଏ ବଡ଼ ପ୍ରାଙ୍ଗଣକୁ ବୁହା ହୋଇ ଆସେ । ଆଗରୁ ଆସି କାଙ୍ଗାଳମାନେ ସେମାନଙ୍କର ପାତ୍ର ଧରି ଧାଡି ଧାଡି ହୋଇ ବସିଥାନ୍ତି । କଣ୍ଟ ଅନୁସାରେ ସେମାନଙ୍କୁ ଭାତ ବଣ୍ଟା ହୁଏ । ଆପତ୍ତି କଲେ କେହି ଶୁଣନ୍ତି ନାହିଁ ।

ଦେଶଟା ଯାକ ତ କାଙ୍ଗାଳ—ମହନ୍ତ ମହାରାଜ ଏବେ କେତେ ଲୋକଙ୍କୁ ଖାଦ୍ୟ ଦେଇ ବଞ୍ଚାଇ ପାରିବେ ? ପ୍ରଥମେ ଅଘୋରଦ୍ୱାରୀ ସଭିଙ୍କୁ ଦେବାର ବନ୍ଦୋବସ୍ତ ହୋଇଥିଲା । ପନ୍ଦର ଦିନ ଏହିପରି ଭାବରେ ଚାଲିଲା । କିନ୍ତୁ ଦିନୁଦିନ କାଙ୍ଗାଳଙ୍କ ସଂଖ୍ୟା ଏତେ ବେଶୀ ବଢ଼ିବାକୁ ଲାଗିଲା ଯେ, ଶେଷକୁ ଦେଖାଗଲା, ଏହିପରି ଚାଲିଲେ ବାଧହୋଇ ଛତ୍ର ବନ୍ଦ କରିବାକୁ ହେବ । ଏତେ ଲୋକଙ୍କୁ ଶାନ୍ତ ଭାବରେ ଚଳାଇବା ଯେପରି ଅସମ୍ଭବ,

ଏତେ ଲୋକଙ୍କ ପାଇଁ ଖାଦ୍ୟସାମଗ୍ରୀ ସଂଗ୍ରହ କରିବା ତହୁଁ ବେଶି କଷ୍ଟ । ବାଧ ହୋଇ ନଇଲେ ଛତ୍ର ଦୁଇ ଦିନ ବନ୍ଦ କରି ଏହିସବୁ କଥା ଲେଖି ମହନ୍ତଙ୍କ ପାଖକୁ ଚିଠାଏ ଗଲା । ଲୋକ ଯତାୟତ ଯାଇ ବେଳସ୍ ଆସିଲା— କେବଳ ମହନ୍ତଙ୍କ ଜମିଦାରୀର ଲୋକଙ୍କୁ ଖାଦ୍ୟ ଦିଆଯିବ ; ଦିନକୁ ବଢ଼ତେ—ସଞ୍ଜ ଆଗରୁ । ପାଆଁଶ ଲୋକରୁ ବେଶୀ ଖାଇବେ ନାହିଁ । ଛତ୍ର ପରିଦର୍ଶନ କରିବାକୁ ନିଜେ ମହନ୍ତମହାରାଜ ବିଜେ କରିବେ । ଇଲାକାର ସବୁ ଛତ୍ର ଦେଖି ଦେଖି ଅଳ୍ପ ଅଳ୍ପ ହୁଏତ କିଛିଦିନ ଡେରି ହେବ । ସେ ଆସିଲେ ଉପସ୍ଥିତ ସ୍ଥଳରେ ଘଟଣା ଦେଖି ତେଣିକି ଯାହା ବିହିତ୍ କରିବେ ।

ମହନ୍ତଙ୍କର ଆଦେଶ କାଙ୍ଗାଳମାନଙ୍କୁ ଶୁଣାଇ ଦିଆଗଲା । ଲୋକେ ଆପତ୍ତି କଲେ, କେହି ଶୁଣିଲେ ନାହିଁ । ସେମାନେ ବି ଧର୍ମଘଟ କଲା ପରି ସେହିଠାରେ ପଡ଼ିରହିଲେ । ଖମାରୀ ମହାଶୟଙ୍କର ବୁଦ୍ଧି ଅଟକିଗଲା । ମହନ୍ତଙ୍କ କଥା ନ ମାନିଲେ ନ ଚଳେ, ଏଣେ ଛତ୍ର ବି ବିନା ଆଦେଶରେ ଏକାଥରେ ବନ୍ଦ କରି ହେଉ ନାହୁଁ । ସେ କରଣଙ୍କର ପରାମର୍ଶ ଲୋଡ଼ିଲେ ।

ଶେଷକୁ କରଣଙ୍କର ପରାମର୍ଶହିଁ କାର୍ଯ୍ୟକାରୀ ହେଲା । ଗୋଷ୍ଠଘର କଡ଼କୁ ଥିବା ବିସ୍ତୀର୍ଣ୍ଣ ପଡ଼ିଆଟିର ଚାରିପାଖରେ କାବୁଲ ବାଡ଼ାବନ୍ଦ କରାଗଲା— କାଙ୍ଗାଳଙ୍କ ହାତରେ, ଯେପରି କି ବାହାରୁ କୌଣସି ଲୋକ ଶତଚେଷ୍ଟା ସତ୍ତ୍ୱେ ପ୍ରାଙ୍ଗଣ ଭିତରକୁ ଯାଇ ନ ପାରିବ । ବାଡ଼ର ଦୁଇ ପାଖରେ ଦୁଇଟି ଛୋଟ ଛୋଟ ତାଟିଲଗା ଦରଜା । ଗୋଷ୍ଠଘର କଡ଼କୁ ମଧ୍ୟ ଗୋଟିଏ ବଡ଼ ଦରଜା । ଚାରିପାଖରେ ବଡ଼ବଡ଼ ବାଉଁଶ ପୋତି ପ୍ରାଙ୍ଗଣ ଉପରେ ଛାମୁଣ୍ଡିଆ କରାଗଲା । ଏ ସବୁ କାଣ୍ଡର ଭିତରି ଉଦ୍ଦେଶ୍ୟ, କାଙ୍ଗାଳମାନେ ଆରମ୍ଭରୁ ବୁଝିପାରି ନ ଥିଲେ । ଯେତେବେଳେ ଖମାରୀ ଆସି ଲୋକଙ୍କର ନାଁ ଗାଁ ପଚାରି ସେମାନଙ୍କ ହାତକୁ ଖଣ୍ଡେ ଖଣ୍ଡେ ତାଳପତ୍ରର ଚିଠା ବଢ଼ାଇଦେଲେ ଲୋକେ କେତେ କଣ ଅନୁମାନ କଲେ । ଯେଉଁମାନେ ଚିଠା ପାଇଲେ, ସେମାନେ ମନଖୁସିରେ ନିଶ୍ଚିନ୍ତ ରହିଲେ । ଯେଉଁମାନଙ୍କୁ ଦିଆ ନ ଗଲା, ସେମାନେ ଆକୁଳ ନୟନରେ ଚାହିଁ ରହିଲେ ।

ଚିଠା ବଣ୍ଟା ଶେଷ ହେଲା । ଖମାରୀ ବଡ଼ ପାଟି କରି ଶୁଣାଇ-ଦେଲେ—ଯେଉଁମାନେ ଚିଠା ପାଇଛନ୍ତି, ସେମାନେ ମହନ୍ତଙ୍କର ପ୍ରଜା ।

ଦରଜା ପାଖରେ ଯିଏ ଏହି ଚିଠା ଦେଖାଇବ, ସେହି କେବଳ ହତା ଭିତରକୁ ପଶି ଭାତ ପାଇପାରିବ । ଚିଠା ଦେଖାଇ ନ ପାରିଲେ ଭାତ ଦିଆଯିବ ନାହିଁ । ଏତିକ କହି ସେ କଚେରି ଭିତରକୁ ଗଲେ । ଚିଠା ନ ପାଇଥିବା ଲୋକଙ୍କ ଭିତରେ ହାହାକାର ପଡ଼ିଗଲା । ସେମାନେ ଯେତେ କାନ୍ଦିଲେ ବୋବାଇଲେ, ଯେତେ ଆପତ୍ତି ଅଭିଯୋଗ କଲେ, କେହି କାନକୁ ନେଲେ ନାହିଁ । ଦିନେ ଦୁଇଦିନ ଅପେକ୍ଷା କରି, ସେମାନେ ହତାଶ ହୋଇ ଅନ୍ୟ ଛତ୍ର ଖୋଜିବାକୁ ଚାଲିଗଲେ । ଅନ୍ନଛତ୍ରର କାର୍ଯ୍ୟ ବେଶ୍ ଶୃଙ୍ଖଳା ସହ ଚାଲିଲା । ମଝିରେ ମଝିରେ ଲୋକଙ୍କର ଚିଠା ଚୋରି ନେଇ କଳି ଲାଗେ; କିନ୍ତୁ ସୁଦକ୍ଷ କର୍ମଚାରୀମାନେ ବିଷୟ ତଦନ୍ତ କରି ସବୁ କଳିଅ ଭାଙ୍ଗିଦିଅନ୍ତି । ଦଣ୍ଡସ୍ୱରୂପ ଦୋଷୀକୁ ଦିନେ ଦୁଇ ଦିନ ଖାଇବାକୁ ଦିଆଯାଏ ନାହିଁ । କିନ୍ତୁ ଯେତେବେଳେ କେହି ନୂତନ ଅତିଥି ଆସି ଖାଦ୍ୟ ପାଇଁ ପ୍ରାର୍ଥନା କରେ, କର୍ତ୍ତବ୍ୟ ଅନୁରୋଧରେ ତାକୁ ନିଷ୍ଠୁର ନାସ୍ତି ବଚନ ଶୁଣାଯାଏ । ସେ ବିଚାରି ଆଶା ମୁଖରେ ଆସି ନିରାଶା ବାଣୀ ଶୁଣି ଫେରିଯିବା ଆଗରୁ ଧର୍ମକୁ ଡାକି ପରିଚାଳକମାନଙ୍କର ପୂର୍ବପୁରୁଷଙ୍କ ପାଇଁ ମଶାଣୀ ଭୂଇଁରେ, ନୋହିଲେ ନରକରେ ସ୍ଥାନ ପାଇବାର ବନ୍ଦୋବସ୍ତ କରିଯାଏ ।

କିଛିଦିନ ଏହିପରି ଚାଲିଲା ଉତ୍ତାରେ ନିଜେ ମହନ୍ତ ମହାରାଜ ଆସି ନିରୋଳେ ଅନ୍ନଛତ୍ର ପରିଦର୍ଶନ କରିବାକୁ ଉପସ୍ଥିତ ହେଲେ । ଲୋକଙ୍କର ଆନନ୍ଦର ଆଉ ସୀମା ରହିଲା ନାହିଁ । ସମସ୍ତେ ଲମ୍ବ ଲମ୍ବ ହୋଇ ପ୍ରଣାମ କରି ନିବେଦନ କଲେ—ଦିନରେ ସନ୍ଧ୍ୟା ଆଗରୁ ଯେଉଁ ଥରେ ଅନ୍ନ ବିତରଣ ହେଉଛି, ତାହାର ପରିମାଣ ଅଳ୍ପ । ହୁଏ ତ ଦି ବେଳା ଦୁଇ ଥର ଦିଆଯାଉ, ନୋହିଲେ ଅନ୍ନର ପରିମାଣ ଦି ଗୁଣ ବଢ଼ାଇ ଦିଆଯାଉ । ମହନ୍ତ ମହାରାଜ ଗଚ୍ଛିତ ଧାନର ପରିମାଣ ଦେଖି ଓ ହିସାବପତ୍ର ତଦନ୍ତ କରି ଦେଖିଲେ ଲୋକଙ୍କର ଅନୁରୋଧ ରକ୍ଷା କରିବା ନିତାନ୍ତ ଅସମ୍ଭବ । ସେମାନଙ୍କ କଥା ରଖି ପରିମାଣ ବଢ଼ାଇ ଦେଲେ, ହୁଏ ତ ଧାନ ଅଭାବରୁ ଅନ୍ନଛତ୍ର ଏକାଥରକେ ବନ୍ଦ କରିଦେବାକୁ ହେବ । ସେ ଲୋକଙ୍କୁ ଏହି କଥା ଭଲ କରି ବୁଝାଇ ଦେଇ ନିଜେ ରହି କିଛିଦିନ ନିଜ ହାତରେ କାର୍ଯ୍ୟ ଚଳାଇବାର ପ୍ରସ୍ତାବ କଲେ ।

ଅବୁଝା ଅଝଟ ପିଲଙ୍କ ପରି ଲୋକେ ତ କାଠାଳ କରିବେ । ସେଥିକୁ ଧାନ ଦେଲେ ଏତେ ଲୋକଙ୍କୁ ସମ୍ଭାଳ ବଞ୍ଚାଇ ରଖିବା କଷ୍ଟ । ଅଷାଢ଼ରେ ଅଧେ ଧାନ ମୋଟେ କଟିଛି । ନୂଆ ଫସଲ ଆମଦାନୀ ହେବାକୁ ଆହୁରି ଅନେକ ଦିନ ବାକି ଅଛି । କୌଣସିମତେ ଲୋକଙ୍କର ପ୍ରାଣ ରକ୍ଷା ତ ।

—ପଚିଶ—

"ଜମା ଲୋ, ଏଥର ଆଉ କି ବୁଦ୍ଧି କରିବା କହିଲୁ ? ଛତରରେ ପଶି ବି ପେଟକୁ ମୁଠାଏ ଦାନା ମିଳିଲା ନାହିଁ । ଓହୋ ! ଲୋକଟା କେଡ଼େ ନିଷ୍ଠୁର ଲୋ । ଯେତେ ନେହୁରା କଲୁଟି ହେଲେଟି କି ତାର ମନ ଟଳିଲା ନାହିଁ, ଦୟା ହେଲା ନାହିଁ ! ସେଇ ଏକା ନା...।"

"ଟଠା ଆମକୁ କିଏ ଦେବ ମୋର ମା । ଟଠା ନ ଦେଖାଇଲେ ଆମକୁ କେହି ପଚାରିବେ ନାହିଁ ।"

"ମହାଜନଙ୍କ ଇଲକା ଲୋକଙ୍କୁ ଟଠା ମିଳୁଛି । ଅମେ ତ ତାଙ୍କର ପ୍ରଜା ନୋହୁଁ..."

"ତେବେ କଣ କରିବା ?"

"ବାଡ଼ ଆଶା କରି, ମହାଜନଙ୍କ ଦାଁ ଧରି ଆସିଥିଲେଟି, ଏଣିକି ଅନ୍ୟଠିକି ଯିବାକୁ ପଡ଼ିବ; କିନ୍ତୁ ଏ ଯେଉଁ ବର୍ଷା ଏତିକବେଳକୁ ତାର ହଟ, ପଦାକୁ ଗୋଡ଼ କାଢ଼ିବାକୁ ଡ଼ର ମାଡୁଛି ।" ମୋର ମା ଅନ୍ଧାରରେ ହାତ ଅଣ୍ଡାଳି ପୁଅଟିକୁ ତାର କୋଳ ପାଖକୁ ଆଣିଲା ।

ଏକେ ତ ଅନ୍ଧାର ରାତି, ତହିଁରେ ପୁଣି ଝଡ଼ବର୍ଷାର ବିରାମ ନାହିଁ । ବରଡ଼ା ଛତର ଫାଙ୍କ ଦେଇ ଠାଏ ଠାଏ ଚଟିଘର ଭିତରେ ଗଳ ଗଳ ହୋଇ ପାଣି ଗଳପଡ଼ୁଛି । ତୋଫାନର ବେଗଟା ବଣ ଆମ୍ବଗଛର ଡୋଠାଟା ପାଇଁ ସେତେ କିଛି ଅନିଷ୍ଟ କରିପାରୁ ନାହିଁ । ତଥାପି ବେଳେ ବେଳେ ନାଳ ଘରଗୁଡ଼ିକୁ ଭୀଷଣ ଭାବରେ ଦୋହଲାଇ ଦେଉଛି, ସତେ କି ଉଡ଼ାଇ ନେଇ ଫୋପାଡ଼ିଦେବ । ଆଶ୍ରା ନେବାର ଅନ୍ୟ ଉପାୟ ଯେତେବେଳେ ନାହିଁ, ଭାଗ୍ୟକୁ ଆଦରି ଲୀନ ହୋଇ ପଡ଼ିରହିବା ଛଡ଼ା

ଅନ୍ୟ ଗନ୍ଧ ନାହିଁ । ଗଛର ଡାହୁଗୁଡ଼ା ଯେପରି ଦୋହଲୁଛି,କେତେବେଳେ ବା ବଡ ବଡ଼ ହେଉଛି, ଖଣ୍ଡେ ଯଦି କୁଡ଼ିଆ ଉପରେ ପଡ଼େ, କେତେ କେତେ ଲୋକ ତାରି ତଳେ ଗୁପି ହୋଇ ମରିଯିବେ । ସାଈ ଧାଉଡ଼ି ନାଲଘରେ, ଗୁହାଳରେ ଗୋରୁପଲ ପଶିଲା ପରି ପାଞ୍ଚଶ ସରିକି ଲୋକ ଖୁନ୍ଦି ହୋଇଛନ୍ତି; କଡ଼ ବୁଲାଇବାକୁ ସ୍ଥାନ ନାହିଁ । ଭୂଇଁ ଉପରେ କାଦୁଅ ପାଣି, କେହି ବା ଖାଲି ମାଟି ଉପରେ, ଯେ ଯେଉଁଠି ପଡି ଯାଇଛନ୍ତି । କେହି କେହି ନିଜ ଭିତରେ ନାନା ବିଷୟରେ କଥାଭାଷା ହେଉଛନ୍ତି; କିନ୍ତୁ ତୋଫାନ ବର୍ଷାର ଶବ୍ଦରେ ଜଣକର କଥା ଅନ୍ୟ ଜଣକୁ ଶୁଭୁ ନାହିଁ । ଅନ୍ଧାରରେ କାହାର ମୁହଁ କାହାରିକୁ ଦିଶୁ ନାହିଁ । ବିଜୁଳିର କ୍ଷଣିକ ପ୍ରଭାରେ ବରଂ ଆଖି ଝଲସି ପଡ଼ୁଛି, ଆଖିପତା ବନ୍ଦ ହେଉଛି ।

ଉମା ଧୀରେ ଧୀରେ ତାର ଅବଶ ମୁଣ୍ଡ ଟେକି ବାହାରେ ପ୍ରକୃତିର ପ୍ରଳୟଙ୍କର ତାଣ୍ଡବ ଉପରେ ଆଖି ପକାଇଲା । ପବନ ଧକାରେ ପଛ ପାଖର ବରଡା ଟାଟି ଖଣ୍ଡ ଖଣ୍ଡ ହୋଇଉଠିଲା । ପାଣିଛିଟା ଆସି ମୁହଁରେ ପଡ଼ିଲାରୁ ଦେହ ଶୀତେଇ ଉଠିଲା । ଖସି ପଡ଼ିଥିବା ଲୁଗା କାନିରେ ମୁଣ୍ଡ ଦେହ ଘୋଡ଼ାଇ ସେ କହିଲା, "ମୋର ମା,ମଣିଷ ଜନମଟା କଣ ଏଇଆ,ହଇ ଲୋ? ଦୁଃଖ ଉପରେ ଦୁଃଖ ସହିବାକୁ ହେବ । ପ୍ରତିକାର ପାଇବାର ଭରସା ନାହିଁ । ନିରୀହ ନିସ୍ସହାୟ ମଣିଷ ଜାତିକୁ ଏ ମହାବିପଦରୁ ଉଦ୍ଧାର କରିବାକୁ ପ୍ରଭୁ ନିଜେ ଆକାଶରୁ ଓହ୍ଲାଇ ଆସୁ ନାହାନ୍ତି ? ମଣିଷର ଦୁଃଖ କଷ୍ଟ, କାନ୍ଦଣା ସେ ସହି ପାରନ୍ତି କେମିତି ?"

ମୋଉସା ତାର ବୁଜୁଲାଟି ଫିଟାଉ ଫିଟାଉ କହିଲା, "ଆମ ପାପର ଫଳ ଆମେ ଭୋଗ କରୁଥାଉଁ, ଠାକୁରଙ୍କର ହାତ ଦେଖିବାର କଥା··· ।" ବଡ ବୁଜୁଲା ଭିତରୁ ସେ ଗୋଟିଏ ଛୋଟ ପୁଡ଼ା କାଢିଲା । ପୁଡ଼ା ଭିତରେ ଅଞ୍ଜୁଳାଏ ହେବ କେତେକାର ଚାଉଳମିଶା ଗୁଡ଼ଳ ଥିଲା—ବୋଧହୁଏ ଭିକମଗା ଗୁଡ଼ଳ । ସେଥିରୁ ଦମୁଠା ହେବ ନିଜ ଅଣ୍ଟିରେ ରଖି, ବାକିତକ ଉମାକୁ ଦେଇ କହିଲା, "ନେ ଉମା, ବାଛିଲା ଘାସ ଘୋଡ଼ା ଖାଏ । ଯେପରି ହେଲେ ପ୍ରାଣ ରଖିବାକୁ ହେବ ତ । ଏଇ ଗୁଡ଼ଳରୁ ଦମୁଠା ପାଟିରେ ପକାଇ ଆଜ ରାତିକ କଟାଇଦେବା ।"

ବାଧା ଦେବାର ସମସ୍ତ ସେତେବେଳେ ନ ଥିଲା । ଭେକରେ ତାର ଅବସ୍ଥା ଏପରି ହୋଇଥିଲା ଯେ, ମନ ହେଉଥିଲା, କେଉଁଠୁ ଗଛପତ୍ର ଆଣି ଗ୍ରୋଇ ପକାଇବ ! ଉମା ମୋଢ ମା ହାତରୁ ଗୃଡ଼ଲ ପୁଡ଼ାଟି ଓଟାରି ନେଇ କୋଳରେ ରଖିଲା ! ବୃଥା ବାକ୍ୟବ୍ୟୟ ନ କରି ଉଭୟେ ନୀରବହୋଇ ଗୃଡ଼ଲ ଗ୍ରୋଇବାରେ ଲଗିଲେ । କିଛିକ୍ଷଣ ପରେ ଉମା କହିଲା, "ଆଗରୁ ଏହାକୁ ଟିକିଏ ଭିଜାଇ ଦେଇଥିଲେ ସୁବିଧା ହୋଇଥାନ୍ତା ।"

"ହେ ସେମିତ ଖାଇଦେ, ଆଜ ଆଉ ବେଳ ନାହିଁ... ।"

ଗୃଡ଼ଲତକ ଯେ କୌଣସିମତେ ଉଦରସ୍ଥ କଲା ପରେ ମୋଢ ମା ପୁଡ଼ା ଭିତରୁ ଗୋଟିଏ ଛୋଟ ଘଡ ବାହାର କରି କହିଲା, "ଉମା, ବରଷଣା ପାଣି ବରଡ଼ା ଡାଟିର ଓଳରୁ ଗଡ଼ୁଛି । ନେ ଏ ଘଡ଼ରେ ଘଡ଼ିଏ ପାଣି ଆଣ, ପିଇବା...।"

ଉମା ଘଡଟି ନେଇ ପଚରିଲା, "ଏ କେଉଁ ଘଡ ମୋଢ ମା ?"

"ବାଟରୁ ଗୋଟାଇ ଆଣିଥିଲି । ଅବକା ଆଉ ଭଲମନ୍ଦ ଖୋଜିବାକୁ ଯାଉଛୁ ?"

ଉମା ଉଠିଯାଇ ହାତ ବଢ଼ାଇ ଓଳପାଣି ଆଣିଲା । ଉଭୟେ ପେଟେ ପେଟେ ପାଣି ପିଇ ଟିକିଏ ଶାନ୍ତି ଅନୁଭବ କଲେ । "ଏଥର କାମ ସାରି ଟିକିଏ ଶୋଇପଡ଼ । ରାତି ପାହିଲେ ତେଣିକି ଦେଖାଯିବ । ମୁଁ ଏଇଠି ଶୋଇଲି ।" ଏତକ କହି ମୋଢ ମା ମୁଣ୍ଡତଳେ ପୁଡ଼ା ଦେଇ ଭୂଇଁ ହୋଇ ଶୋଇପଡ଼ିଲା । ଉମା ମଧ୍ୟ ତାର ପାଖରେ ଥଣ୍ଡା ଭୂଇଁ ଉପରେ ତାର କ୍ଲାନ୍ତ ଦେହ ଲମ୍ବାଇ କେତେ କଣ ଏଣୁ ତେଣୁ ଭାବିବାକୁ ଲଗିଲା ।

କେତେବେଳକେ ଉମାକୁ ନିଦ ହୋଇଗଲା; କିନ୍ତୁ ମୋଢ ମା ଭୂଇଁ ଉପରେ ପଡ଼ି ଏକଡ଼ ସେକଡ଼ ହେଉଥାଏ । ବେଳେ ବେଳେ ଲୁଗା ପୁଡ଼ାଟିକୁ ଜାକି ଧରୁଥାଏ, ଅଛି ନା କିଏ ନେଇଗଲାଣି । ଛଇନିଦ ମାଡ଼ ଅସେ, ଅପେ ଅପେ ଆଖିପତା ମୁଦି ହୋଇଆସେ । କୋହଲା ପବନଟା ନାଳି ଘର ଭିତରେ ପଶି ଡାଟିକୁ ଖଡ ଝଡ଼ କରି ଉଠାଏ ଦକାଏ । ଥଣ୍ଡାରେ ଲୋମମୂଳ ଠାଙ୍କୁରିଉଠେ । ମୋଢ ମାର ନିଦ ଗୃହିଁ କରି ଭାଙ୍ଗେ ।। ସେ ଅଗ ପୁଡ଼ାଟିକୁ ଜାକିଧରି

ପରେ ଅନ୍ଧାରରେ ଅଣ୍ଟାଳ ଝିମାକୁ ଆଉଁସେ , କୋଳକୁ ଟାଣି ଆଣି ନିଜ ଦେହରୁ ଲୁଗା କାଢ଼ି ଝିମା ଦେହରେ ପକାଏ , ଧୀରେ ଧୀରେ ତାର କପାଳରେ ହାତ ମାରି ଭାବେ—ଆହା, ପିଲାଟି କି କଷ୍ଟ ନ ପାଇଲା । ତାର ଆଶ୍ରା ଧରି ସିନା ସେ ଗାଁ ଛାଡ଼ି ଆସିଲା, ସବୁ କଥାକୁ ବାକି ଉପାସରେ କେତେଦିନ ବାଟିବ ? ଚନ୍ଦ୍ରଉଦିଆ ପରି ରୂପ, ମେଘଘୋଡ଼ା ଚନ୍ଦ୍ରମା ପରି କଳା ପଡ଼ିଗଲାଣି । ଆହା ଛେଉଣ୍ଡ ଝୁଅଟି !

ନିଦ ହୋଇ ନାହିଁ । ମୋଟା ମାଇ କାନରେ ପଡ଼ିଲା କିଏ ଯେପରି ଗୋଡ ତଳୁ ଅତି କ୍ଷୀଣ ସ୍ୱରରେ କାହାକୁ କହୁଛି, "ଆଲୋ ରଙ୍ଗୀ, ଟଠା ଦୁଖଣ୍ଡ କଣ କଲୁ… ?"

ଶିଶୁ କଣ୍ଠରେ କିଏ ଜବାବ ଦେଲା,"କାନିରେ ବାନ୍ଧି ରଖିଛୁ ମା— ।"

"ଧ୍ୱସିଆରିରେ ରଖ ଲୋ, କାଲେ କେଉଁଠି ହଜିଯିବ… ।"

ନିଦ ମାଡ଼ିଥିବା ଲୋକକୁ ବାରମ୍ବାର ପ୍ରଶ୍ନ କଲେ ଚିରକ୍ତ ହେବାର କଥା । ରଙ୍ଗୀ ଗଳା ଫୁଲାଇ ବିରକ୍ତିସୂଚକ ସ୍ୱରରେ କହିଲା,"ହଁ, ଧୁସିଆରିରେ ରଖିଛୁ ।"

କଅଁଳ ସ୍ୱରରେ ବୁଢ଼ୀ ପଚାରିଲା, "ଆଲୋ, କୋଉଠି ବାନ୍ଧି ରଖିଛୁ ଦେଖେଁ ।"

ରଙ୍ଗୀ ରାଗିଯାଇ କହିଲା,"ମଲି ମୋର ! ଶୁଅଇ ଦେବ ନାହିଁ ଲୋ ମା । ଏଇ କଣ ଲୁଗା କାନିରେ ବାନ୍ଧିଛୁ ।" ଏତିକି କହି ସେ ଚୁପ ହେଲା । ବୁଢ଼ୀର ପାଟି ବି ଆଉ ଶୁଭିଲା ନାହିଁ ।

ଘଡିଏ ବିତିଗଲା । ମୋଟା ମାଇ ଆଉ ନିଦ ହେଲା ନାହିଁ । ସେ କେତେ କଣ ଭାବି ଉଠିବସିଲା । ସେହିପରି ଅନ୍ଧାର, ସେହିପରି ବର୍ଷା । କଣ ଯେପରି ଭାବି, ଭୟରେ ସେ ଥରି ଉଠିଲା; ପୁଣି ଶୋଇଲା । ମନ ଭିତରେ ଜ୍ୱାଳାମୟୀ ଚିନ୍ତାଟା ତାର ପ୍ରାଣକୁ ଅଧୀର କରିପକାଇଲା । ସେ ତାର କ୍ଷୁଧିତ ଅନ୍ତରର ଅଚେତନ ଇଙ୍ଗିତକୁ ଉପେକ୍ଷା କରି ମ୍ରିୟମାଣ ବିବେକର ସମ୍ମାନ ରଖିବାକୁ କୁଣ୍ଠା ବୋଧକଲା । ଧୀରେ ଧୀରେ ଝିମା ପାଖ ଛାଡ଼ି ଦୂରକୁ ଅସିଲା ; କଣ ଭାବି କେଜାଣି ଅନ୍ଧାରରେ ହାତ ବଢ଼ାଇ ତାର ଲଲାଟ ଉପରେ ରଖିଲା—ନା, ସେ ଚେଇଁ ନାହିଁ, ନିଦୋଡ଼ ନିଦରେ ଶୋଇଛି ।

ସେ ପୁଣି ଉଠି ବସିଲା । ଅନ୍ଧାରରେ ଘରର ଅଡ଼କୁ ଚାହିଁଲା । ଶୋଇଲା ଲୋକ-ଙ୍କର ନାସିକାଧ୍ୱନି ଛଡ଼ା କାହାର ସୋର ଶବ୍ଦ ନାହିଁ । ସେ ଗୋଡ଼ ତଳକୁ ଘୁଞ୍ଚିଆସିଲା । ବିଜୁଳି ଚମକି ଚାହିଁ ଆଖି ବୁଜିଲା । ସେ ଆସି ରଙ୍ଗୀ ପାଖରେ । ତା ଆର ପାଖକୁ ତାର ବୁଢ଼ୀ ମା । ତେଣିକି ତେଣିକି ଅନ୍ଧାର କେତେ ଲୋକ ଶୋଇଛନ୍ତି । କିଏ ଗଣୁଛି ?

ମୋଟି ମା ଭୟ ଭୟ ଧୀରେ ଧୀରେ ଥରିଲା କଣ୍ଠରେ ଡାକିଲା—"ରଙ୍ଗି, ରଙ୍ଗି-ଇ······ ।"

ରଙ୍ଗି ନିଦରେ ଅଜ୍ଞାନ । ଜବାବ ଦେବ କିପରି ?

ମୋଟି ମା ତାର ପାଖରେ ଶୋଇଲା; ତାକୁ କୋଳରେ ପୂରାଇ ତାର ମୁଣ୍ଡ ଦେହ ଆଉଁସିବାକୁ ଲାଗିଲା । ପିଲାଟି ନିଦ ବାଉଳାରେ ତାର ପେଟ ପାଖକୁ ଲାଗିଆସିଲା । ମୋଟି ମା ଯାହା ଖୋଜୁଥିଲା, ପାଇଲା ବଡ଼ ସନ୍ତର୍ପଣରେ । ରଙ୍ଗିର ଲୁଗା କାନିରୁ ତାଳପତ୍ରର ଛଟା ଦି ଖଣ୍ଡି ଆସ୍ତେ ଆସ୍ତେ ଫିଟାଇ ନିଜ କାନିରେ ବାନ୍ଧି ଅଣ୍ଟାରେ ଖୋସିଲା । ବାହାରି ଯାଉଥିବା ଦୀର୍ଘଶ୍ୱାସଟାକୁ ଚାପି ଧରି ଧୀରେ ଅତି ଧୀରେ ଉମା ପାଖକୁ ଗଡ଼ି ଆସି ଗୋଟାଏ ସ୍ୱସ୍ତିର ନିଶ୍ୱାସ ଛାଡ଼ିଲା ।

ଉମା ଡାକିଲା—"ମୋଟି ମା ।"

ମୋଟି ମା ସେତେ କି ନିଦ ବାଉଳାରେ କଡ଼ ଲେଉଟାଇ ଅଳସ ଭାଙ୍ଗିଲା । ଉତ୍ତର ଦେଲା ନାହିଁ ।

ପାହାନ୍ତାର ପହିଲା ଆଲୁଅ ରାତିର ଅନ୍ଧାର ଘଞ୍ଚାଇ ଯେତେବେଳେ ତାଟି ଘରେ ପଶିଲା, ମୋଟି ମା ଆଖି ମଳି ମଳି ଉଠି ବସିଲା । ପ୍ରଥମେ ତାର ନଜର ପଡ଼ିଲା ରଙ୍ଗି ଓ ତାର ବୁଢ଼ୀ ମା ଉପରେ । ଅଶୀ ବର୍ଷର ବୁଢ଼ୀ ହେବ କି କଣ । ମୁକୁଳା ମୁଣ୍ଡର ବାଳ କେଇ କେରୁ ପାଚି ଝୋଟ ପାଳଟିଲାଣି । ତାର ନାତୁଣୀ ରଙ୍ଗି, ବାର ତେର ବର୍ଷର ପିଲାଟି । ଆହା କେତେ ନିଶ୍ଚିନ୍ତରେ ଶୋଇଛନ୍ତି ଦିହେଁ ! ମୋଟି ମା ଲାଜରେ ମୁହଁ ଫେରାଇଲା ।

"ଉମା, ଉମା···।" ସେ ଉମାକୁ ହଲାଇ ଉଠାଇଲା ।

ଉମାର ନିଦ ସେତେବେଳକୁ ଭାଙ୍ଗିଥିଲା । ସେ ଉଠି ବସି ପଚାରିଲା–"କଣ··· ?"

"ଅଲେ, ପଦାକୁ ଗୃହିଁଲୁ । ସକାଳ ହେଲାଣି । ବର୍ଷା ବି ତ ପ୍ରାୟ ଛାଡ଼ିଲାଣି । ଆ ଯିବା ।" ସେ ତାର ପୁଡ଼ାହାଟ ଧରି ଠିଆହେଲା ।

ଉମା ଦେହର ଲୁଗା ସଜାଡ଼ି ଉଠି ଠିଆହୋଇ ପଚାରିଲା, "କୁଆଡ଼େ ଯିବା ?"

ମୋଈ ମା ଉତ୍ତର ନ ଦେଇ ପଦାକୁ ଆସିଲା । ଉମା ତା ପଛେ ପଛେ ଗଲା ।

ବେଳ ପ୍ରାୟ ଗୃରିଟା ହେବ । ଝଡ଼ ବର୍ଷା ଛାଡ଼ିଗଲାଣି; କିନ୍ତୁ ଆକାଶଟା ମେଘମୁକ୍ତ ହୋଇ ନାହିଁ । ସୂର୍ଯ୍ୟର ତ ଦିନ ସାରା ଦେଖା ନାହିଁ । ବେଳେ ବେଳେ ଗଛପତ୍ରରୁ ଜଳକଣା ଝରି ଝରି ହୋଇ ଝରି ପଡ଼ି ବର୍ଷାଗମର ଭୟ ଦେଖାଉଛି । ଗାଁ ଗୋହିରିର ପାଣି କାଦୁଅ ରାସ୍ତାରେ ପଶି ଗାଁ ମୁଣ୍ଡକୁ ଆସି ମୋଈ ମା କହିଲା, "ଦେଖିଲୁ ତ ଉମୀ, ଲୋକଙ୍କୁ ଯେତେ କେତେ ହୋଇ ମାଗିଲେ ବି ଲୋକେ ତୋରାଣି ଟୋପାଏ ଦେଉ ନାହାନ୍ତି । ସମସ୍ତେ ସେହି ଛତରେ ଆଡ଼କୁ ହାତ ଦେଖାଇ ଦେଉଛନ୍ତି ।"

ଉମା କହିଲା, "ତାଙ୍କର କି ଗୃରା ? ପାଖରେ ଥିଲେ ତ ଦେବେ ।"

"ନ ଦଉନ୍ତୁ ଲୋ ମା; ଅଛି କି ନାହିଁ ସେ କଥା ଧର୍ମ ଜାଣେ ।" ଟିକିଏ ରହି, "ଗୃଲ, ବେଗି ଗୃଲ । ଛତରରେ ଭାତ ଦେବାର ବେଳ ହେଲାଣି ।"

"କାଲି ତ ଦେବାକୁ ମନା କଲେ, ଆଜି କଣ ଦେବେ ?"

"ଆଜି ଅଉ କେହି ମନା କରି ପାରିବେ ନାହିଁ ।"

"କାହିଁକି ?"

"ମୁଁ ଆଗରୁ ତାର ବାଟ ସଫା କରି ସାରିଛି । ତୁ ଗୃଲ ତ ଗୃଣ୍ଡେ ।"

ଦୁହେଁ ଆସି ଅନ୍ନଛତ୍ର ପାଖରେ ମିଳିଲେ—ଲୋକ ଭିଡ଼ ଯେ କହିଲେ ନ ସରେ । ଯନ୍ତ୍ରା ଯନ୍ତି, ଠେଲା ଠେଲି—ହୋ ହୋ ପାଟିରେ କାନ ଅତଡ଼ା ପଡ଼ୁଛି—କିଏ ଭିତରକୁ ଆଗ ପଶିବ । ସତେ କି ଅନ୍ନଛତ୍ର କୁଆଡ଼େ ପଳାଇ ଯାଉଛି । "ମୋ ବୋପା ଲୋ, ଯା ଭିତରକୁ କପରି ଯିବା ? ପେଲା ପେଲି ଭିତରେ ପଶିଲେ ପ୍ରାଣ ପଳେଇବ ।"

ମୋଈ ମାର କଥା ଶୁଣି ଉମା କହିଲା, "ଆମେ ସବା ପଛରେ ଯିବା ଲୋ ମୋଈ ମା ! ଶେଷକୁ ଆମ କପାଳକୁ ଯାହା ଥିବ । ଲୋକଙ୍କ ସଙ୍ଗେ

ଯୁଝିବାକୁ ଆମର ବଳ ନାହିଁ ।” ହିକଏ ରହି ପଚାରିଲେ, “ଏ କଣ ? ଚଠା ଦେଖି ଭିତରକୁ ଛାଡ଼ୁଛନ୍ତି, ଅମେ··· ।”

ମୋଛ ମା ଏଣିକି ତେଣିକି ଅଖି ପକାଇ କହିଲେ, “ଚଠା ଅଛି । ମୁଁ ଆଣିଛି··· ।”

ଜମାର ଓଠରେ ହସ ଖେଳିଗଲା, “ସତେ ! କଏ ଦେଲା ତୋତେ ?”

ମୋଛ ମା ହସ ହସ ହୋଇ କହିଲେ, “ଠାକୁରେ ବଡ଼ ଲୋକ ।”

ଦହେଁ ଗୋଟିଏ ପାଖ ଅମ୍ବଗଛ ମୂଳରେ ଠିଆହେଲେ ।

ଭିଡ଼ କମିଲା । ଖାଇବା ପ୍ରାଙ୍ଗଣର ଦ୍ୱାରରେ ଠିଆ ହୋଇଥିବା କର୍ତ୍ତୃ-ପକ୍ଷ ଦହେଁ ଡକା ଛାଡ଼ିଲେ, “ଆଉ କିଏ ଅଛ ଆସ । ଦରଜା ବନ୍ଦ କରା-ଯିବ ।” ସେତେବେଳକୁ ଦରଜା ପାଖରେ ଅଧିକ ବ ଦଶ ପାଞ୍ଚଜଣ ଲୋକ ଠିଆ ହୋଇ ଅଣ୍ଟାରୁ ଚଠା କାଢ଼ୁ ଥାନ୍ତି । ମୋଛ ମା କହିଲେ, “ଆଲୋ ଜମୀ, ଏଥରକବେଳେ ଯିବାକୁ ସଜ ।” ଦହେଁ ଦରଜା ଆଡ଼କୁ ଗଲେ ।

ପାଖ କିଆବୁଦା ପଛରୁ ଗୋଟିଏ ପିଲାର କାନ୍ଦଣା ଶୁଭିଲା ସମସ୍ତେ ସିଆଡ଼କୁ ଗୃହିଁଲେ । ଅଶୀ ବର୍ଷର ପାକଲା ବୁଢ଼ୀଟିଏ । ଧର୍ମକୁ ଡାକି ଅକଥ୍ୟ ଭାଷାରେ କେଉଁ ଅଜଣା ଲୋକକୁ ଅନର୍ଗଳ ଗାଳି ଦେଉଛି । ବେଳେ ବେଳେ ଉଚ୍ଚସ୍ୱରରେ କାନ୍ଦ ତା ଆଗରେ ଗୃଲିଥିବା ଦଶ ବାର ବର୍ଷର ଝିଅଟିକୁ ବି ଭିବ ଗାଳି ଦେଉଛି । ପିଲାଟି ମଧ୍ୟ ‘ଭେଁ’ ‘ଭେଁ’ ରଡ଼ି ଛାଡ଼ୁଛି । ବୁଢ଼ୀ ରଗିଯାଇ ଖନେଇ ଖନେଇ କହୁଛି, “ମୁଁ କହୁଛି—ଆଲୋ ରଙ୍ଗୀ ଚଠା ଦଖଣ୍ଡ ସାଇତ ରଖ, ନଇଲେ ମୋତେ ଦେଇଦେ । ସେ କାହିଁକି ମୋ କଥା ମାନନ୍ତା । ସବୁ କଥାକୁ ଆଗ, ସବୁ କଥାକୁ ହମ ହମ ! କୋଉଠି ହଜେଇଲୁ କେଜାଣି··· ।”

“ମା ଲୋ, କାନିରେ ବାନ୍ଧିଥିଲି, କୋଉଁଠି ଖସିପଡ଼ିଲା··· ।”

“ତତେ ପରି ମଶାଣି ଡ଼ାକିଲାଣି । ଭଲ ବୁଦ୍ଧି କୁଆଡ଼ୁ ହେବ ? ଯାହା ଯୋଗ ବଢ଼ାଉଛୁ ।”

କାନ୍ଦ କାନ୍ଦ ପିଲାଟି କହିଲା, “କଣ କରିବା ମା—?”

“ମରୁନୁ ଲୋ ! ଗୃଲ ମଶାଣିକି··· ।” କହି ବୁଢ଼ୀ ତା'ର ଫୁରୁ ଫୁରୁ ମୁଣ୍ଡବାଳ ଧରି ଓଟାରି ଦେଲା ।

ମୋଛ ମା ଟିକିଏ ବିରକ୍ତ ହୋଇ କହିଲେ, "ଛୁଚା ହୋଇ କେଣିକି ଗୃହିଁବୁ ଜମୀ, ଅ ଝିଅ ।"

ଜମା ସନ୍ଦେହ କରି ମୋଛ ମାକୁ ପଚାରିଲା, "ତୁ ଏଟା କୋଉଠୁ ପାଇଲୁ କହୁ ତ ?"

"ଆଲେ ସେଥିରୁ ତୁ କଣ ପାଇବୁ ? ବାଟରୁ ପାଇଲି... ।"

"ନାହିଁ ମୋଛ ମା··· । ଦେଖିଲୁ ପିଲାଟି କେମିତ କାନ୍ଦୁଛି...।"

ମୋଛ ମାର ମୁହଁ ଶୁଖିଗଲା । ସେ କିଛୁ କହୁ ପାରିଲା ନାହିଁ ।

ଜମା କହିଲା, "ଦୁଇଟି ନିରୀହ ପ୍ରାଣୀଙ୍କର ପ୍ରାଣ ନେଇ ଆମର ବଞ୍ଚି ରହିବା ଦରକାର ନାହିଁ ମୋଛ ମା ! ଆମ ପାଇଁ ସେ କାହିଁକି ମଶାଣିକି ଯିବେ ? ଛିଃ···।" ତାର ଆଖି ଲୁହରେ ଛଳ ଛଳ ହେଲା । "ନା, ତୁ ସେ ଏଟା ଦି ଖଣ୍ଡ ଫେରାଇ ଦେ ।"

ମୋଛ ମା ଅବାକାବା ହୋଇ ଜମା ମୁହଁକୁ ଗୃହିଁଲା, "କାହିଁକି ବା ? ମୁଁ ବାଟରୁ ପାଇଲି ।"

ଜମା ଆଖି ପୋଛି କହିଲା, "ହେଉ ପଛେ; ସେ ଦିଖଣ୍ଡ ଆମର ନୁହେଁ ତାଙ୍କର ।"

"ଆଉ ଆମେ କଣ କରିବା ?"

"ଗୃଲ୍, ମଶାଣିକି ଯିବା । ପରର ପ୍ରାଣ ନେଇ ଆମର ବଞ୍ଚି ରହିବା ଦରକାର ନାହିଁ ।"

ମୋଛ ମା ଅନିଚ୍ଛାସତ୍ତ୍ୱେ ବାଧ୍ୟ ହୋଇ ଏଟା ଦିଖଣ୍ଡି ଅଣ୍ଟାରୁ ଭିଡି ଜମା ହାତକୁ ବଢ଼ାଇ ଦେଲା । ଜମା ସଙ୍ଗେ ସଙ୍ଗେ ତାକୁ ନେଇ ବୁଢ଼ୀ ହାତରେ ଦେଇ କହିଲା, "ପିଲାଟା, ପୁଣି କେଉଁଠି ହଜାଇଦେବ, ତା ହାତକୁ ଆଉ ଦେବୁ ନାହିଁ ମା ଜସୀ ।" ବୁଢ଼ୀ ତାକୁ କିଛି କହିବା ଆଗରୁ ସେ ମୋଛ ମା ପାଖକୁ ଫେରି ଆସି କହିଲା, "ଆ, ମୋଛ ମା; ଫେରିଯିବା, ଦି ଆଖି ନୁଆକେ ନେବ । ଦେଖିଲୁ, ଅଇ ନାରୁଣୀ କେଡ଼େ ଖୁସିରେ ଅନ୍ନକୁ ଗୃହିଁଛନ୍ତି ! ଅ—... ।"

"ହୁଁ—" କହି ମୋଛ ମା ଅଖିରୁ ଲୁହ ପୋଛି କହିଲା, "ତୋର ବୁଦ୍ଧିରୁ ତୁ ମରିବୁ ଜମୀ !" ଜମାର ପଛେ ପଛେ ଗୃଲିଲା ।

ମହନ୍ତ ମହାରାଜ ଦାଣ୍ଡ ଚୌପାଢ଼ୀ ଉପରେ ବସି ଉମାକୁ ଅପଲକ ନେତ୍ରରେ ଚାହିଁ ରହିଥିଲେ । ଏତେ ରୂପ ! ଏତେ କୋମଳ ବୟସ ! ଶ୍ରେଷ୍ଠ ଘରର ପିଲା ନୁହେଁ କେବେ ! ଅବସ୍ଥାର ଦୌରାତ୍ମ୍ୟରେ ପଡ଼ି ଦାଣ୍ଡକୁ ଆସିଛି, ଜୀବନ ରକ୍ଷାର ଉପାୟ ନ ଦେଖି ଭିକ୍ଷାବୃତ୍ତି ଅବଲମ୍ବନ କରିଛି ! ଆହା ! ଜାହାର କୋଳର ଲକ୍ଷ୍ମୀ, କୁଳର ଅଳୁଅ ! ଏହି ଯୌବନର ସୌରଭ ଉଡ଼ାଇ ରୂପର-ସାପାଳି ଢାଳି, ପଲକରେ ଏ ଶ୍ମଶାନ ଭୂମିର ପ୍ରେତପଲ ଭିତରୁ ବାହାରି ଗୁଲିଗଲା । କିନ୍ତୁ ତାର ସେ ଯୌବନ-ସୌରଭ 'ହାଃ–ଅନ୍ନ'ର ଅପଭ୍ରଂଶରେ ବଞ୍ଚିନ ହେବ ସିନା ! ରୂପର ସାପାଳି ଦୁର୍ଭିକ୍ଷ-ରାକ୍ଷସର ଫୁତ୍କାରରେ ଲିଭିଯିବ ସିନା ! ମହନ୍ତ ମହାରାଜ ତାର ଗଢିପଥକୁ ଚାହିଁ ରହିଲେ ।

କର୍ମଚାରୀ ଦହେଁ ଦରଜା ବନ୍ଦ କରି ମହନ୍ତଙ୍କ ପାଖକୁ ଫେରିଆସିଲେ । ମହନ୍ତ ହସି ହସି ପଚାରିଲେ, "ସେ ଦୁଇଜଣ ଫେରିଗଲେ କାହିଁକି ?"

କର୍ମଚାରୀ କହିଲା, "ବଡ଼ ଆଶ୍ଚର୍ଯ୍ୟ କଥା ମହାରାଜ୍ !"

"ମୁଁ ସବୁ ଦେଖିଛି, ସବୁ ଶୁଣିଛି । କିନ୍ତୁ ତାଙ୍କୁ ଫେରାଇଲ କାହିଁକି ?"

"ତାଙ୍କ ମନକୁ ସେ ଗୁଲିଗଲେ··· ।"

"ଅଚ୍ଛା, ତାଙ୍କୁ ଡାକି ପଠାଅ... ।"

ମହନ୍ତଙ୍କର ଡାକରା ପାଇ ଉମା ମୋତି ମାକୁ ସଙ୍ଗରେ ନେଇ ଫେରି ଆସିଲା । ମହନ୍ତଙ୍କୁ ଆଗରେ ଦେଖି ସେ ସାଷ୍ଟାଙ୍ଗ ପ୍ରଣିପାତ କରି ପିଣ୍ଡାତଳେ ଠିଆ ହୋଇ ଆଦେଶର ପ୍ରତୀକ୍ଷାରେ ରହିଲା । ମହନ୍ତ ତାର ମୁହଁକୁ କ୍ଷଣକାଳ ଚାହିଁ ରହି କଅଁଳେଇ କହିଲେ, "ପିଣ୍ଡା ଉପରକୁ ଆସିଲୁ ମା ।"

ଉମା ମୁଣ୍ଡର ଓଢଣା ଟାଣି, ଲଜ୍ଜାଯୁକ୍ତ ଭଙ୍ଗୀରେ ଧୀରେ ଧୀରେ ପିଣ୍ଡା ଉପରକୁ ଗଲା । ମୋତି ମା ଆବାକାବା ହୋଇ ଚାହିଁ କଣ ଯେପରି ଖୋଜୁଥାଏ ।

"ତମେ ଦହେଁ ଗୁଲିଯାଉଥିଲ କାହିଁକି ?"

"ଆମେ ତ ଆପଣଙ୍କର ପ୍ରଜା ନୋହୁଁ···· ।"

"ନ ହେଲେ କଣ ହେଲା··· ?"

"ଅମର ଶଠା ନାହିଁ ।"

"ସେ ଯେଉଁ ଟଖଣ୍ଡ ତୁ ସେ ବୁଢ଼ୀକୁ ଦେଲୁ—?"

"ଅମର ନୁହେଁ । ତାକୁ ମୋଢ ମା ବାଟରୁ ପାଇଥିଲା ବୋଲି ସେ କହୁଛି । ବୋଧହୁଏ ସେ ପିଲାଟି ଅଣହେଳାରେ ତାକୁ ହଜାଇ ଦେଇଥିଲା ।"

ମହନ୍ତ ତୁନି ହୋଇ କଣ ଭାବିବାକୁ ଲାଗିଲେ । ଜମାର ବରସ୍ତ ମୁହଁକୁ ଚାହିଁ ପଚାରିଲେ, "ଘର କେଉଁଠି ?"

ଜମା କହିଲା, "ଆମ ଘର ନରପୁର ।"

"ସେ ବୁଢ଼ୀ ତୋର କଣ ହୁଏ··· ?"

ଜମା ମୋଢ ମାକୁ ଚାହିଁ କହିଲା, "କିଛି ନୁହେଁ । ଗାଁ ଲୋକ··· ।"

"ବାପ ମା—?"

"ମୋର ନାହାନ୍ତି । ବାପ ଝିଅ··· ।"

"ଘରୁ ତଡ଼ି ଦେଇଛନ୍ତି ନା ? ସେ କଥା କହ ।" ମହନ୍ତ ପୁଣି କହିଲେ, "ସେ କଥା କହ । ଆଜକାଲି ତ କାଳ ସେଇଆ ହୋଇଛି । ନିଜ ପାଇଁ ନିଜେ ବାଇ । ନୋହିଲେ ତୋ ପରି ପିଲା ଅଳ୍ପ ଦାଣ୍ଡରେ ଠିଆ ହୁଅନ୍ତା !"

ଜମା ମୁହଁ ପୋତି ଠିଆ ହେଲା । କେଜାଣି କାହିଁକି ତାର ଆଖି ଲୁହରେ ପୂର୍ଣ୍ଣ ହୋଇ ଆସିଲା । ମହନ୍ତଙ୍କର କୋମଳ ମନ ତରଳିଗଲା ସତେ । ସେ ତାକୁ ବୋଧ ଦେଇ କହିଲେ, "କାନ୍ଦ ନା, କାନ୍ଦ ନା ! ହର ଭରସା । ତୁ ମୋ ପାଖକୁ ଆଇଲୁ··· ।"

ଜମା ମହନ୍ତଙ୍କ ପାଖକୁ ଆସିଲାରୁ ସେ ପଚାରିଲେ, "ଆଚ୍ଛା, ଘରୁ ବାହାରି ଆସି ଦାଣ୍ଡରେ ଭିକ ମାଗି ବୁଲିବା କି ଛତରରେ ପଶିବା ଛଡ଼ା ଅନ୍ୟ କୌଣସି ଉପାୟରେ ନିଜର ଜୀବିକା କଣ ଚଳାଇବାରେ ନାହିଁ ଖିଅ ?"

"ପାରେ ବାବା, ପର ଘରେ କାମ କଲେ··· । କିନ୍ତୁ ଆଜିକାଲି ସମୟରେ ଘରେ ରଖି କାମ କରାଇ ମୁଠାଏ ଖାଇବାକୁ ଦେଉଛି କିଏ ? ତା ହୋଇଥିଲେ···!" କହୁ କହୁ କଥାଟି ଅଧା ରଖି ତୁନି ହୋଇଗଲେ ।

ମହନ୍ତ ଖୁବ ଖୁବ ପଚାରିଲେ, "ତୁ ଭାତ ଫୁଟାଇ ପାରୁ ମା ?"

ଜମା ଟିକିଏ ହସି କହିଲା,—"ଯା କଣ ଜାଣେ ନାହିଁ !"

"ବେଶ୍ । ତୁ ମୋ ଥିବାଯାଏ ଏଇଠି ଥା ! କେତେ ଜଣ ମାଇପେ ତ କାଙ୍ଗାଳଙ୍କ ପାଇଁ ଏଠି ଭାତ ରାନ୍ଧୁଛନ୍ତି, ତାଙ୍କର ସାଙ୍ଗରେ ତୁ ମିଳିମିଶି କାମ କର । କିଛି ଭୟ ନାହିଁ ।" ଏହା କହି ମହନ୍ତ ତା ପିଠି ଚାପୁଡ଼ି କହିଲେ, "ତୋର ବାପ ମା ନାହାନ୍ତି—ସେଥିକି ମନରେ ଦୁଃଖ କଣ ? ତୋ ପରି ବୁଦ୍ଧିମତୀ, ସୁନ୍ଦର ଶାନ୍ତ ଶିଷ୍ଟ ପିଲାଟିର ବାପମାର ଅଭାବ ରହିବେ ନାହିଁ, ବୁଝିଲୁ ମା ! ତୁ ଏଇଠି ରହ, ମୋର ପାଖରେ । କିଛି ଚିନ୍ତା ନାହିଁ । ବୁଝିଲୁ । ମୁଁ କ ତୋ ବାପ ପରି ଦିଶୁ ନ ? ରହ, ଆଉ ବାର ଦୁଆର ହ ନାହିଁ—।"

ଆନନ୍ଦରେ କୃତଜ୍ଞତାରେ ତାର ପ୍ରାଣ ଭିତରେ ଜୁଆର ଉଠିଲା ସତେ । ତାର ମନ ପୁଲକରେ ଉଚ୍ଛୁସି ଉଠିଲା । ବଡ଼ ବଡ଼ ଆଖି ଦିଓଟି ପୂର୍ଣ୍ଣ ଲୁହରେ ଭରିଗଲା । ସେ ଦେଖିଲା—ଆଗରେ ତାର ସାକ୍ଷାତ୍ ଦେବତା ! କେଡ଼େ ଶାନ୍ତ ସୌମ୍ୟ ମୂର୍ତ୍ତି । ଦୁଇ ଆଖିରୁ କରୁଣାର କୋମଳ ଆଭା ଫୁଟିଉଠୁଛି । ଜମା ଧୀରେ ଧୀରେ ତାର ମୁଣ୍ଡ ନୁଆଁଇ ମହନ୍ତଙ୍କର ପାଦ ମୂଳରେ ପ୍ରଣାମ କଲା । ମହନ୍ତ ତାର ମୁଣ୍ଡ ଉଠାଇ କହିଲେ, "ଯା ମା, ଭିତରକୁ ଯା...।"

ଜମା ଠିଆହୋଇ ଅତୁଳ ନେତ୍ରରେ ମୋଟା ମାକୁ ଚାହିଁଲା ।

ମୋଟା ମା ଖୁସି ହୋଇ କହିଲା, "ଯା, ଜମା...। ମୁଁ ତୋର ଭାଗ୍ୟକୁ ରକ୍ଷା ପାଏଁ—।"

## —ଛବିଶ—

ଧାଲୁକେ ହରିପୁର, ମଉଜା ନମଣର ହାଲ ଜମିଦାର ଶ୍ରୀଯୁକ୍ତ ସୁନ୍ଦର ପଟ୍ଟନାୟକଙ୍କ ଡିଆସ । ଦାଣ୍ଡ ଖଞ୍ଜାର ଗୋଟିଏ ବଡ଼ କୋଠରି ତଳେ ପ୍ରକାଣ୍ଡ ଦରି ବିଛାହୋଇଛି । ଦରିର ଗୋଟିଏ ପାଖରେ ଆସନ ଉପରେ ଦାନ୍ତ ଡକିଆକୁ ଆଉଜି ପଟ୍ଟନାୟକେ ଅଧଶୁଆ ଠାଣିରେ ବସିଛନ୍ତି । ଟିକିଏ ଦୂରରେ ରୁପାନିର୍ମିତ ପ୍ରକାଣ୍ଡ ହୁକାରୁ ଲମ୍ବା ନଳୀଟା ଯାଇ

ଜମିଦାରଙ୍କ ପାଟିରେ ଲଗିଛି । ଡାହାଣ ହାତ ପାଖରେ ଗୋଟିଏ ବଡ଼ ରୁପାର ପାନଡବା । ବେକରୁ ଝୁଲିଥିବା ଝୁଲି ମୁଣିଟି ତକିଆ ଉପରେ ଥୁଆ ହୋଇଛି । ଝୁଲି ମୁଣି ଭିତରେ ହାତ ପୂରାଇ ସେ ମାଳା ଧରି ସବୁବେଳେ କୃଷ୍ଣ ନାମ ଜପ କରୁଛନ୍ତି । ଖରାବେଳଟା ଭାରି ଗୁଳୁଗୁଳି । ଗରମରୁ ଉଦ୍ଧାର ପାଇବାକୁ ଦେହରେ ମୁଣ୍ଡରେ ନଖେ ବହଳର ଚନ୍ଦନ ବୋଳା ହୋଇଛି । ଆଗରେ ନବୀନ ବାରିକ ବଡ଼ ତାଳପତ୍ର ପଙ୍ଖା ଧରି ପବନ କରୁଛି ।

ଦରି ଉପରେ ଜମିଦାରଙ୍କ ପାଖକୁ ଦୁଇ ଜଣ ହାତ ଛାଡ଼ି ସଦର ଗୁମାସ୍ତା ଗୋକୁଳୀ ଦାସେ ଓ ପାଞ୍ଜିଆ ଗୌର ଛହାଡ଼ୀ ବସିଛନ୍ତି । ସେମାନଙ୍କ ପାଖରେ କେଇ କତା ତାଳପତ୍ର ଓ ଦଟି ଲେଖନ ରଖା ହୋଇଛି । ବଡ଼ ନିବିଷ୍ଟ ଚିତ୍ତରେ ସେମାନେ ପୋଥିର ପୃଷ୍ଠା ଓଲଟାଇ କଣ ଯେପରି ମନୋଯୋଗ ଦେଇ ଦେଖୁଛନ୍ତି ।

ସୁନ୍ଦର ବାବୁ ବାଁ ହାତରେ ଗୁଡ଼ାଖୁ ନଳୀ ଧରି ପାଟିରେ ଲଗାଇ ଘଡ଼୍ ଘଡ଼୍ କରି ଦୁଇ ଠାଣ ମାରି ଇଞ୍ଜିନରୁ ଧୂଆଁ ବାହାରିଲା ପରି, ଫୁ ଫୁ କରି ପାଟିରୁ ନାକରୁ ଧୂଆଁ ଛାଡ଼ିଲେ । ନଳୀ ମୁହଁଟିକୁ ପାଟିରୁ କାଢ଼ି ଦରି ଉପରେ ରଖି, ପାନଡବାରୁ ଦିଖଣ୍ଡ ପାନ କାଢି ପାଟିରେ ପୂରାଇ ଗଳା ଖଙ୍କାରି କହିଲେ, "ଦେଖ ଦାସେ, ସେ ସବୁ ପୋଥିପତ୍ର ବର୍ତ୍ତମାନ ବନ୍ଦ କର । ହିସାବ ପତ୍ର ବୁଝିବାର ବେଳ ଅବକା ନାହିଁ । ତମୁକୁ ମୁଁ ଡ଼କାଇ ପଠାଇଥିଲି ବୁଝିବାକୁ—ଠାକୁର ପୋଖରୀ କାମ କେତେ ଦୂର ଗଲା । କାମ ବନ୍ଦ କଲେ ଏ ବର୍ଷ ଚଳିବ ନାହିଁ ?"

ଦାସେ ପୋଥିରେ ଡୋର ବାନ୍ଧୁ ବାନ୍ଧୁ କହିଲେ, "ଲୋକେ ଯଦି ମନ ଦେଇ କାମ କରୁଥାନ୍ତେ, କାମ କେତେ ଦିନୁ ସରନ୍ତାଣି । ନିମକହାରାମ ଲୋକଗୁଡ଼ା । ଯେତିକି ତାଙ୍କୁ ଗୋଡ଼େ ଗୋଡ଼େ ଜଗିଥିବ, ବେଶ୍ କାମ କରୁଥିବେ । ଟିକିଏ ଛାଡ଼ ଗଲେ ଛାଇତଳେ ବସି ମନ ମଉଜରେ ଗପ ଯୋଡ଼ି ଦେବେ ।"

"ସେ ଯାହା ହେଉ, ବର୍ଷା ପଡ଼ିଲାଣି ଶୀଘ୍ର ଶୀଘ୍ର କାମ ଶେଷ ନ କଲେ ତେଣିକି ଆଉ ସୁବିଧା ହେବ ନାହିଁ । ହଇରଣରେ ପଡ଼ିବାକୁ ହେବ । ତମେ ଯାଇ ଲୋକଙ୍କ ପାଖେ ପାଖେ ଜଗି କାମ କରେଇନିଅ ।"

ଜମିଦାର ପିକଦାନୀରେ ପିଠା ଛାଡ଼ି, ମାଳା ଧରି ମନେ ମନେ ନାମ ଜପିଲେ ।

"ଲୋକେ ମଜୁରି ବଢ଼ାଇବାକୁ ଆପତ୍ତି କରୁଛନ୍ତି ଗୃହ ପଇସା ମଜୁରିରେ କୁଆଡ଼େ ତାଙ୍କର ଚଳୁ ନାହିଁ ।" ତହସିଲଦାରୀ କହିଲେ ।

ଜମିଦାର ସାମାନ୍ୟ ହସି କହିଲେ, "ଚଳୁ ନାହିଁ ତ ମୁଁ କଣ କରିବି ବେଶି ଦେବାକୁ ମୋର ଶକ୍ତି ନାହିଁ । ଲୋକ ପ୍ରତି ୫୦/ ସ୍ତ୍ରୀଲୋକ ପ୍ରତି ୫ ୦୯ ମଜୁରି ତ କିଛି ଆଜିକାଲି ସମୟରେ କମ୍ ନୁହେଁ । ପଇସା ନେଇ ବାଲେ ଲୋକେ ଧାନ ଗୃଉଳ କିଣିବାକୁ ପାଇବେ ନାହିଁ, ସେମାନଙ୍କ ଖାଇବାରେ ଅଭାବ ହେଲେ କାମ ଖରାପ ହେବ, ଏହି ଭୟରେ ସମସ୍ତଙ୍କୁ ବଖତେ କରି ଖାଇବାକୁ ଦିଆଯାଉଛି ତଥାପି ଲୋକେ ଅସନ୍ତୁଷ୍ଟ ।"

ଦାସେ କହିଲେ, "ଏକେ ତ ଲୋକେ ଅଳସୁଆ, ଠାପୁଆ । ତାଙ୍କୁ ଲୋକେ ଅଧିକ ଖରାପ କରି ଦେଉଛନ୍ତି । ସରକାର ବାହାଦୁର ଠାଏ ଠାଏ ଅନ୍ନଛତ୍ର ଖୋଲିବାର କରାଉ କରୁଛନ୍ତି । ମହନ୍ତ, ଜମିଦାର, ବଡ଼ଲୋକ-ମାନେ କେହି କେହି ଅନ୍ନଛତ୍ର ଖୋଲିଲେଣି; ଆଉମାନେ ବି ଶୀଘ୍ର ଖୋଲିବେ ଶୁଣୁଛି । ଆରେ ବାବା, ଅନ୍ନଛତ୍ର ଖୋଲ, ଭଲ କଥା । ଲୋକଙ୍କୁ ଭଲ କାମ କରେଇ ଖାଇବାକୁ ଦିଅ । ଯେଉଁମାନେ ଅପାରଗ ଲୋକ, ସେମାନଙ୍କ କଥା ନିଆରା । ଯେଉଁମାନଙ୍କର ଶକ୍ତି ଅଛି, ସେମାନଙ୍କୁ ବସି ଖୁଆଇଲେ, ସେମାନେ ଅଳସୁଆ ହୋଇ ନାନା ଉପଦ୍ରବ କରୁଛନ୍ତି । କାମ କରା, ଖାଇବାକୁ ଦିଅ ।"

ତହସିଲଦାରୀ କହିଲେ, "ଲୋକେ ସହଜରେ ମୁଠାଏ ଖାଇବାକୁ ପାଇଲେ କି କାମକୁ ଚାହିଁବେ ? ରାମ୍ ବୋଲ । ମାଡ଼ୁଆ ଥୋରଣ୍ଟ ବଳଦ । ପିଠିରେ ପାଞ୍ଚଣ ପାହାର ନ ବସିଲେ ଗୋଡ଼ ଉଠିବ ?"

ପଟ୍ଟନାୟକ କହିଲେ, "ସେ କଥା ମୁଁ ଭଲ ବୁଝିଛି ତହସିଲଦାରୀଏ । ଆଉ ଦେଖ ତ ଏ ଦି ତିନି ମାସ ଭିତରେ ଲୋକଙ୍କୁ ଥାଇତ କରାହୋଇଛି । କାମ ବି ଯଥେଷ୍ଟ ଉଠାଇ ନେଇଛି । ଧୂଳିଆ ଘର ( କୋଠା ଘର ) ସାତ-ବଖରା ତୋଳା ହେଲା । ଠାକୁରଙ୍କ ମନ୍ଦିର, ପୋଖରୀ, ବଗିଚା ମରାମତି, ଝୁଲଣ ମଣ୍ଡପ, ଭାଗବତ ଘର ସବୁ ତ ଏଇ କାଙ୍ଗାଳଙ୍କ ହାତରେ କରାଗଲା ।

ଆମର ଶସ୍ତାରେ କାମ ଜୁଟିଲା, ତେବେ ତ ବଞ୍ଚିଲେ । କଣ କହୁଛ ଦାସେ !"

ଦାସେ ମୁଣ୍ଡ ହଲାଇ ସମ୍ମତି ଜଣାଇ କହିଲେ, "ସମସ୍ତେ ତ କହୁ ପଟ୍ଟନାୟକ ସାମନ୍ତଙ୍କ ପରି ଚଲାଖ ଲୋକ ନାହାନ୍ତି ।"

ସୁନ୍ଦର ବାବୁ କହିଲେ, "ଇଚ୍ଛା ଥିଲେ ବାକି ଧର ଯାକ ବ ଧୂଳିଅ ପିଟେଇଦେବ ।"

ଛଡ଼ାଡ଼ୀ, "ଆଜ ପାରିବେ ନାହିଁ । ବର୍ଷା ଦିନ ଅସିଲା । ଲୋକେ ବ ଛତରରେ ମାହାଳିଅ ଖାଇବାକୁ ପାଇବା ଅଶାରେ ପ୍ରତିଦିନ ଛତର ଭଣ୍ଡି ଚାଲିଯାଉଛନ୍ତି । ଖୋର୍ଦ୍ଧା ପାଖରେ ଗଞ୍ଜାମ ରାସ୍ତାରେ କାମ କରିବାକୁ ଥୋକେ ଚାଲିଗଲେଣି, ଆଉ ଥୋକେ ବେଶି ଲାଭ ଆଶାରେ କଟକ ଯିବାକୁ ସଜ ହେଲେଣି । ସେଠି କୁଅଟେ ନାଳ ଖୋଳା ହେଉଛି । ଆପଣ ଯଦି ମଜୁରି ବଢ଼ାଇବେ, ତେବେ କେଜାଣି ଲୋକେ ରହିବେ । ନୋହିଲେ କଟକ କି ଗଞ୍ଜାମ ଚାଲିଯିବେ । ଦି ବଖତ ଖାଇବାକୁ ଦେଲେ, କେଜାଣି ମଙ୍ଗି ପାରନ୍ତି ।"

ସୁନ୍ଦର ବାବୁ—"ମଜୁରି ବଢ଼ାଇବାକୁ ଅଉ ପାଖରେ ଟଙ୍କା ନାହିଁ କି ଦି ଥର ଖାଇବାକୁ ଦେବାକୁ ଚାଉଳ ନାହିଁ । କହୋ ଦାସେ, ଯାହା ସାମାନ୍ୟ ଅଛି ସେଥିରେ ପୁଣି ନିଜ ଲୋକ, ଅଶ୍ରିତ ଲୋକ, ଗାଁ ଲୋକଙ୍କର ଭଲମନ୍ଦ ତ ବୁଝିବାକୁ ହେବ ! ନା, ଆଉ ହୋଇ ପାରିବ ନାହିଁ । ପୋଖରୀ କାମ ଯେନେତେନେ ଶେଷ କରି ଲୋକଙ୍କୁ ବିଦାକର ।"

ଦାସେ ଓ ଛଡ଼ାଡ଼ୀଏ ସାଞ୍ଜିପତ୍ର ନେଇ ବିଦାୟ ହେଲେ ।

ପଟ୍ଟନାୟକେ ବାରିକକୁ କହିଲେ; "ଅରେ ଜଗାକୁ ଡାକ ତ—।"

ବାରିକ ଠିଆ ହୋଇ ପଙ୍ଖା କରୁ କରୁ ଟିକିଏ ଅଙ୍ଗିରୁଛି ଦେଇଥିଲା । ଖାମିନ୍ଦଙ୍କ ଆଦେଶ ପାଇ ସେ ଜଗୁର ନାମ ଧରି ଡାକ ଛାଡ଼ିଲା । ପ୍ରାୟ ପାଞ୍ଚ ମିନିଟ ଛଡ଼ ଜଗୁ ଅସି ଆଗରେ ଠିଆହେଲା । ଦେହ ଦୁର୍ବଳ ହୋଇ ଗଲାଣି । ମୁହଁରେ ସରସତା ନାହିଁ—ସବୁବେଳେ ଯେପରି କଣ ଗୋଟାଏ ଭାବୁଛି । ଖୋଲା ଦେହ, କାନ୍ଧରେ ଖଣ୍ଡେ ପୁରୁଣା ମଇଳା ଗାମୁଛା ।

ପଟ୍ଟନାୟକେ କହିଲେ, "ଆରେ, ପୋଖରୀ ଖୋଳା କାମ ଆଉ କେତେ ବାକୀ ?" ହାତ ଯୋଡ଼ି କରି ଉତ୍ତର ଦେଲା, "ଆଜ୍ଞା, ଅଧି ସରିବା ଉପରେ । ଖାଲି ହୁଡ଼ାର କାମ ଲାଗିଛି । ଦିନେ ଦି ଦିନରେ ସରିଯିବ ।"

"ଲୋକେ କାମ ଖଇଚ୍ କରୁଛନ୍ତି ଶୁଣିଲି । ତୁଠା ସାରି ଦିପହର ଘରେ ଛାଇ ତଳେ ବସିବୁ । କାମ ଉପରକୁ ଯାଇ ଲୋକଙ୍କ ସଙ୍ଗେ ଲାଗି, ମଦତ୍ ଦେଲେ ସିନା ହେବ । ସେଥିପାଇଁ ସିନା ତୋତେ ଘରେ ଠାବ ଦେବାର କଥା । ଯା ତୁ ।" ପଟ୍ଟନାୟକେ ମୁହଁ ବୁଲାଇଲେ । ଚଗୁ କୌଣସି ଉତ୍ତର ନ ଦେଇ ଧୀରେ ଧୀରେ ଅଗରୁ ଚାଲିଆସିଲା ।

ସୁନ୍ଦର ପଟ୍ଟନାୟକଙ୍କ ଘରେ ଆଶ୍ରୟ ପାଇବାର ଚଗୁର ଆଉକ ପନ୍ଦର ଦିନରୁ ବେଶି ହେଲା । ପେଟ ପାଇଁ କେତେ ଗାଁ ଗଣ୍ଡା ବୁଲି ବୁଲି ଶେଷକୁ ଯେତେବେଳେ ସେ ଆସି ଅନ୍ୟାନ୍ୟ ଲୋକଙ୍କ ସଙ୍ଗେ ପୋଖରୀ ଖୋଳା କାମରେ ନିଯୁକ୍ତ ହେଲା, ସେ ଭାବିଥିଲା, ଦୈହିକ ପରିଶ୍ରମ କରି ଦିନାକେତେ ଦୁଃଖେ ସୁଖେ କଟାଇନେବ । ତେଣିକି କାମ ବନ୍ଦ ହେଲେ ଅନ୍ୟ ଜାଗା ଖୋଜି ବାହାରିଯିବ । କାହିରେ ପଡ଼ିଲେ ବଜାଇ ଶିଖନ୍ତି । ପିଲାଦିନୁଁ ନିଶ୍ଚିନ୍ତରେ ସୁଖରେ ବଢ଼ି ଆସିଥିଲା, ବେପରବାଏ ହୋଇ ଫୁର୍ତ୍ତିରେ ବେଳ କାଟିଥିଲା । ଏବେ ଗାଁରୁ ଗୋଡ଼ କାଢ଼ି, ନିଜର ପେଟ ପାଇଁ ଜୀବନ ବଞ୍ଚାଇ ରଖିବାକୁ ପର ଦ୍ୱାରରେ ଗୋଡ଼ ଭାଙ୍ଗି ଠିଆ ହେବା ତ ମାନ ମହତ୍ତ୍ୱର କଥା । ପୁଣି ପରର ଦାସତ୍ୱ ସ୍ୱୀକାର କରି ବଡ଼ାଡାଯୁ ପାଅଁଠାଙ୍କ ସଙ୍ଗେ ଖୋଡ଼ି ଧରିବାକୁ ହେଲା । କିନ୍ତୁ ସେଥିକି ତାର ମନରେ ଦୁଃଖ ନାହିଁ ଅକାଳେ ଗର୍ଭ୍ରେ ପଥର ବୁହାନ୍ତୁ । ସେହିପରି ଅବେଳରେ ପଡ଼ି ତାକୁ ଯେ କୁଲିଗିରି କରିବାକୁ ପଡ଼ିଲା, ଝାଳବୁହା ଉଦୁଉଦିଆ ଜ୍ୟୈଷ୍ଠ ଖରାରେ ମଠାଳ ଭୂଇଁ କାଟି ନିଜ ମୁଣ୍ଡରେ ମାଟି ବୋହିବାକୁ ହେଲା, ସେଥିକି ଚିନ୍ତା କଣ ? ତାର ପରି ତ କେତେ କେତେ ଲୋକ ଆଜି ପେଟ ପାଇଁ ପର ଘରେ ମୂଲ ଲାଗିଛନ୍ତି । ସେ ବା କେଉଁ ଗୁଣରେ ତାଙ୍କଠୁଁ ଅଧିକ ? ପର ଦ୍ୱାରରେ ହାତ ପାତି ଭିକ ମାଗି ମୁଠାଏ ଖାଇବାଠାରୁ, ମୁଣ୍ଡ ଝାଳ ଭୂଇଁରେ ମାରି ନିଜ ଅର୍ଜ୍ଜନରେ ମୁଠିଏ ଖାଇବାର ବ୍ୟବସ୍ଥା ଶହେ ଗୁଣରେ ଭଲ । କିନ୍ତୁ ସବୁଦିନେ ଏ ସୁଯୋଗ ମିଳିଲେ ତ ହୁଏ !

ଯାହା ହେଉ, ପେଟ ପାଇଁ କେତେ ଗାଁ ଗଣ୍ଡା ବ୍ୟର୍ଥ ଆଶା ଘେନି ବୁଲି ବୁଲି ସେ ଆସି ସୁନ୍ଦର ପଟ୍ଟନାୟକଙ୍କ ପୋଖରୀ ଖୋଳାରେ ଲାଗିଲା। ବାଡ଼ିରେ ଗଛମୂଳେ କାଗା ପାରି ଶୟନ, ଦିନରେ କାମ। ଦିନକୁ ପେଟପାଣି କରି ଯାହା ମୁଠିଏ ବଳଅନ୍ତି ସେତିକି ମାତ୍ର ଅାହାର। ସଞ୍ଚୟବୃତ୍ତିକୁ ଯେଉଁ ଗୃହ ଯାଇସା ମଜୁରୀ ମିଳେ ତାକୁ ସେ ଭବିଷ୍ୟତ ପାଇଁ ସଞ୍ଚି ରଖେ। ସେତିକିବେଳେ କେତେ ତାର ମନେ ପଡ଼େ। ବିଶ୍ୱାସରେ ବାସ ଦେଇ ସେ ଯଦି ତାର ସର୍ବସ୍ୱ ନେଇ ପଳାଇ ନ ଥାନ୍ତା ଆଜି ତାକୁ ପେଟ ପାଇଁ ଏ ହାଡ଼ଭଙ୍ଗା ପରିଶ୍ରମ କରିବାକୁ ହୁଅନ୍ତା କାହିଁକି? ପ୍ରତିହିଂସାରେ ତାର ହୃଦୟ ଜଳିଉଠେ। ଉଃ! ଅଉ ଥରେ ସେ ହାବୁଡ଼େ ପଡ଼ନ୍ତା କି! ମନେ ପଡ଼େ ସେତିକିବେଳେ ତାର ବେଣୁ। ଯେଉଁମାନଙ୍କର ଦୟା ଓ ଦାୟିତ୍ୱ ଉପରେ ଆସ୍ଥା ରଖି ସେ ତାର ସ୍ନେହମୟୀ ଭଉଣୀ ଓ ଅତି ଆଦରର ପୁତୁରାଟିକୁ ଛାଡ଼ିଅାସିଛି, ସେମାନେ ଯଦି ତାଙ୍କୁ ହତାଦର କରନ୍ତି! କଲେ କରିବେ, ନାଚାର! ଦୂରରେ ଥାଇ ଖାଲି ଗ୍ରମି ବଦାରି ହେଲେ କି ଫଳ ମିଳିବ? କଳରି ଦେହ କ୍ଷୀଣ ହେବ ଯାହା। ହରି ହରି ଭରସା।

ଦିନକର ଗୋଟିଏ ଛୋଟ ଘଟଣା ଫଳରେ କଗୁକୁ ଗଛମୂଳ ଛାଡ଼ି ଏବେ ପଟ୍ଟନାୟକଙ୍କ ଖାସ ଉଅାସ ଭିତରେ ରହିବାକୁ ପଡ଼ୁଛି। ସେଦିନ ବେଳବୁଡ଼ ସରିକି ନଜେ ସୁନ୍ଦର ବାବୁ ପୋଖରୀ କାମ ଦେଖିବାକୁ ବିଜେ କରିଥିଲେ। ଦି ହିଁଅରେ ଗୋଟିଏ ସେହି ଗେଲ୍ହା ପୁଅ ହେମ ଅଙ୍ଗୁଠି ଲଗାଇ ବାପଙ୍କ ସଙ୍ଗରେ ଯାଉଥିଲା। ଶହ ଶହ ମିଣିପେ ମାଇପେ କାମରେ ଲାଗିଛନ୍ତି। କିଏ କୋଡ଼ିକାଙ୍କ ଧରି ମାଟି ହାଣୁଛି, କିଏ ଅବା ଗାଣ୍ଡୁଅରେ ମାଟି ଅଣି ପୋଖରୀ ହୁଡ଼ାରେ ଲଦୁଛି। ପଟ୍ଟନାୟକେ କାମ ଦେଖି ଦେଖି ମନ ସନ୍ତୋଷରେ ଝର ପାଣି ଦେଖିବାକୁ ହୁଡ଼ା ଉପରୁ ତଳକୁ ଗଡ଼ିଲେ। ହେମକୁ ଯେ ତେଣେ ବାଟ ପାଖ କଦମ୍ବ ମୂଳରେ ଛାଡ଼ି ଅାସିଛନ୍ତି ସେ କଥା ପ୍ରତି ତାଙ୍କର ନଘା ନାହିଁ।

ହେମ ପାଞ୍ଚ ଛ ବର୍ଷର ପିଲା; ରଙ୍କାଘର ଜୁଅା; ଭାରି ଗେଲ୍ହା। ଭାରି ଖୁଙ୍ଗୁଡ଼ିଆ। ଠାକୁରଙ୍କର ମାରଣା ଷଣ୍ଢ ଚରୁଥିବାର ଦେଖି, ପିଲା ମନ ତ, ଗୋଟାଏ ଟେକା ଫୋପାଡ଼ିଲା ତାକୁ। ଷଣ୍ଢ ଥରେ ମାତ୍ର ମୁଣ୍ଡ ବୁଲାଇ ଗୃହି

ପୁଣି ଚରିବାରେ ଲାଗିଗଲା । ହେମ କିନ୍ତୁ ଛାଡ଼ିବାର ପିଲା ନୁହେ । ତାଅଁଳ ଲୁହାକୁ ବଳେଇ ବାମ୍ଫୁଡ଼େ । ସୁଧାର ଷଣ୍ଢ ଦେଖି ହେମ ତାର ପାଖକୁ ପାଖକୁ ଯାଇ ଠେଙ୍କା ଉପରେ ଠେଙ୍କା ଲଦି ଦେଇଗଲା । କେହି ତାକୁ ମନା କଲେ ନାହିଁ କି ପିଲାଟା ପଛରେ କେହି ଗଲେ ନାହିଁ । ଷଣ୍ଢଟା ଆଉ କେତେ ସହନ୍ତା ? ଶେଷକୁ ମୁଣ୍ଡ ନୁଆଁଇ, ଗୋଡ଼ା ଗୋଡ଼ା ଶିଙ୍ଗ ଦେଖାଇ ରଡ଼ି ଛାଡ଼ି, ଧାଇଁ ଆସିଲା । ଲୋକଙ୍କର ଆଖି ବୁଜି ହୋଇପଡ଼ିଲା । ଆହା ! ପିଲାଟାର ପ୍ରାଣ ଅଉ ରହିବ ନାହିଁ । କିନ୍ତୁ ନିଜ ଜୀବନ ଉପରେ କେହି ଆଉ ଗଲେ ନାହିଁ । ଜଗୁ ମୁଣ୍ଡରେ ମାଟି ଠୋକେଇ ଧରି ଆସୁଥିଲା । ହଠାତ୍ ତାର ନଜର ପଡ଼ିଗଲା । ସେ ଠୋଙ୍କେଇଟା ଫିଙ୍ଗି ଦେଇ ବିଜୁଳି ବେଗରେ ଚମକି ଯାଇ ହେମକୁ କାଖ କରିପକାଇଲା । ଷଣ୍ଢଟା ରଡ଼ି ଛାଡ଼ି ଅନ୍ୟ ଆଡ଼େ ପଳାଇଲା ।

ବାସ୍, ଏହି ଗୋଟିଏ ଛୋଟ ଘଟଣା । ପଟ୍ଟନାୟକେ ସବୁ ଶୁଣିଲେ । ଆଖିରୁ ତାଙ୍କର ଲୁହ ଝରିଲା । ସେ ହେମକୁ କୋଳ କରି ଜଗୁକୁ ସଙ୍ଗରେ ନେଇ ଘରକୁ ଫେରିଲେ ।

ସେହି ଦିନରୁ ଜଗୁ ଉପରେ ଘରଟାଯାକର ସଭିଙ୍କର ଭାରି ଦୟା, ଭାରି ଶରଧା । ସାନ୍ତାଣୀ ନିଜେ ଜଗୁର ଖବର ନ ବୁଝିଲେ ତାଙ୍କୁ ଶାନ୍ତି ଲାଗେ ନାହିଁ । ଜଗୁକୁ ଅଉ ମାଟି କାଟିବାକୁ ପଡ଼ିଲା ନାହିଁ । ସେ ଘରେ ଥାଏ, ବୋଲ ହାକ କରେ, ଦରକାର ବେଳେ ଯେଉଁଠିକି ହେଲେ ଯାଏ । ନୋହିଲେ ସବୁବେଳେ ପ୍ରାୟ ପିଲାଙ୍କ ସାଙ୍ଗରେ ଖେଳୁଥାଏ । ପିଲା କହିଲେ ହେମ, ତା ଉପର ଭଉଣୀ ଦଶ ବର୍ଷର ଠୋକା ବୁନ । ବଡ଼ ଝିଅ କୁମୁଦିନି ତ ମନ୍ଦିର ବର୍ଷରେ ବଢ଼ିଲା ଝିଅ । ସବୁବେଳେ ବାବଟା ଅକଟରେ ମାଙ୍କ ଆଖିରେ ଆଖିରେ ଥାଏ । ତା କଥା ଛାଡ଼ ।

କିନ୍ତୁ ଜଗୁକୁ ହେମ ଆଦରଥାଏ ବେଶି । ଦିନ ପନ୍ଦରଟା । ଏହାର ଭିତରେ ସେ ତାକୁ ଅତି ଆପଣାର କରି ସାରିଛି । ଜଗୁ ବାଠ ଚରିବାକୁ କି ବଳଦ ମୋହିଁବାକୁ ଗଲେ ବି ହେମ ତାର ପଛରେ ଯାଏ । ସେଥିରେ ସାନ୍ତାଣୀ ବି ଆଉ କେହି ବାଧା ଦିଅନ୍ତି ନାହିଁ । ସମସ୍ତେ ଜାଣନ୍ତି, ଜଗୁ ସାଙ୍ଗରେ ଥିବାଯାଏ ସେ ନିରାପଦ ।

ଖାଉନ୍ଦଙ୍କ ଆଦେଶ ପାଇ ଜଗୁ ମୁଣ୍ଡରେ ଗାମୁଛ ଭିଡ଼ି ଗାମରେ ଯିବାକୁ ବାହାରିଲା । ହେମ ଅଝଟ ଲଗାଇଲା, ତା ସାଙ୍ଗରେ ଯିବ । ଜଗୁ ତାକୁ ବୁଝାଶୁଝା କରି ଯେତେ ବାରଣ କଲା; ସେ ମାନିଲା ନାହିଁ । ବଡ଼ ଲୋକର ପୁଅ, କାନରେ ନୋଳି, ବେକରେ ଗୋପ, ହାତରେ ସୁନାବଳା । ବେଳକାଳ ଭଲ ପ୍ରକାର । ତହିଁରେ ପୁଣି ନିସ୍ତ ଖରାବେଳଟା । ପିଲାଟାକୁ ସେ ସାଙ୍ଗରେ ନିଅନ୍ତା କିପରି ? ତାର ବାରମ୍ବାର ବାରଣ ଶୁଣି ହେମ ରାହା ଧରି କାନ୍ଦିଲା । ଶେଷକୁ ସାନ୍ତାଣୀ ଆସି ସବୁ ଶୁଣି କହିଲେ, "ନେଇ- ଯାଉ । ତା ଉପରେ ଆଖି ରଖିଥିବୁ ।"

ବାଧ ହୋଇ ଜଗୁ ତାକୁ ସାଙ୍ଗରେ ନେଲା ।

## —ସତଚଳିଶ—

ସବୁ ଦିନେ ସଂସାରଟା ସୁଖରେ ନିଶ୍ଚିନ୍ତରେ କଟେ ନାହିଁ କାହାରି । ନିରୀହ ନିରାଶ୍ରୟ ପାନ୍ଥର ମୁଣ୍ଡରେ ଚଡ଼କ ପଡ଼େ ଅଜାଣତରେ, ଅପ୍ରତ୍ୟାଶିତ ଭାବରେ । ସୁଖର ସ୍ୱପ୍ନ ତାର ନିମେଷକେ ମିଳାଇଯାଏ । ଆଖି ବୁଜି ସେ ଦେଖେ ଆଲୋକ; ଆଖି ଖୋଲି ବୁଝେ ଯାହାକୁ ସେ ଉଜ୍ଜ୍ୱଳ ଆଲୋକ ମଣିଥିଲା, ତାହାହିଁ ପ୍ରକୃତ ଅନ୍ଧାର ।

ବଢଟା ଜଗୁର ବେଶ୍ ଆନନ୍ଦରେ କଟିବ ପରା । ସୁଖର ଶଯ୍ୟାରେ ବାଧା ଦେବାକୁ ତାର କେହି ନାହଁ । ବଡ଼ଲୋକର ଆଶ୍ରା ଧରି ଦୁର୍ଭିକ୍ଷ ଦୁର୍ଦ୍ଦିନଟା ସହଜରେ ସୁରୁଖୁରୁରେ କଟିଯିବ । ତେଣିକି ସେ ତାର ବନ୍ଧୁ- ବାନ୍ଧବ ଆତ୍ମୀୟ ସ୍ୱଜନ ଲୋଡ଼ିବ । ଆଗ ନିଜର ସଂସ୍ଥାନ କଲେ ସିନା ପରେ ଅନ୍ୟ କଥା ଭାବିବ ? କେଉଁ ଦେବତାର କଲ୍ୟାଣରୁ କେଜାଣି ସେ ଭାସି ଭାସି ଆସି କୂଳରେ ଲାଗିଛି । ଆଉ ଅଜଣା ସୁଅରେ ଭାସିଯିବାର ଭୟ ନାହିଁ । ପଟ୍ଟନାୟକ ବଂଶରେ ସମସ୍ତେ ତାକୁ ଦେଖି ପାରନ୍ତି, ବିଶେଷତଃ ସାନ୍ତାଣୀ । ହେମଟି ତ ବେଣୁ ପରି ତାର ଖେଳର ସାଥୀ ! ଉମା ସିନା ତାର ଗୋଟିଏ ଭଉଣୀ ଥିଲା । ଏଠି ଅବିକଳ ଉମା ପରି ତାର ଦୁଇ ଭଉଣୀ—କୁନ୍ଦ, କୁମୁଦ । ତାର ଆଉ କାହିଁର ଅଭାବ, କେଉଁଥିରେ ଚିନ୍ତା ? ଘର ଛାଡ଼ି ସେ

ଘର ଯାଇଛୁ । ଅସ୍ପୃଶ୍ୟ ସ୍ୱଜନଙ୍କୁ ଛଡ଼ି ମଧ୍ୟ ତାର ଆସ୍ପୃଶ୍ୟ ସ୍ୱଜନର ଅଭାବ ନାହିଁ ।

ପଟ୍ଟନାୟକେ ଲୋକଟି ସନ୍ଦେହୀ । ଠିକ୍ ଭଲ କରି ବଜାଇ ପରଖି ଦେବେ ଯାଇଁ ଅଣ୍ଟାରେ ଖୋସିବେ; ନଚେତ୍ ପରଖି ନ ନେଲେ ସନ୍ଦେହ ତୁଟେ ନା । ଜଗୁ ଜାଣେ, ସେ ଖାଣ୍ଟି, ନିମକ୍‌ହାରାମ ନୁହେଁ। ପଟ୍ଟନାୟକେ ଯେଉଁଦିନ ଏ କଥା ଭଲ କରି ବୁଝିପାରିବେ, ସେଦିନ ହସିକରି କଥା କହିବେ, ଶୃଙ୍ଖଳ ମୁହଁରୁ ସନ୍ଦେହର ପରଦାଟା ଅପସରିଯିବ । ତାଙ୍କର ଟାଣ କଥା, ଗମ୍ଭୀର ମୁହଁକୁ ମୁଣ୍ଡ ନୁଆଁଇ କିଛିଦିନ ସହିଗଲେ ଗଲା । ନଚେତ୍ ଭଲ ତ ଦୁନିଆ ଭଲ ।

ତାର ଏ ସୁଖଚିନ୍ତା, ମନବୋଧିଆ ଭାବନାରେ ବାଧା ଦେବାକୁ ଅତୀତର କେତେ କେତେ ଦୃଶ୍ୟ ଆସି ମାନସ ଚକ୍ଷୁ ଆଗରେ ନାଚିଗଲା— ପଧାନଙ୍କର ଶେଷ ରୋଗଶଯ୍ୟା, ଉମାର ଛଳ ଛଳ ଆଖି, ଭାଉଜଙ୍କର କରୁଣ ଅନୁରୋଧ । ଯେ ଯାଇଛି ତା ନେଇ ଆଉ ଚିନ୍ତା କଣ ? କିନ୍ତୁ ଯେଉଁମାନେ ତାକୁହିଁ ଆଶା କରି ଅନାଇ ବସିଥିଲେ, ସେମାନଙ୍କର ଅବସ୍ଥା ଆଜି କଣ ହୋଇଥିବ କେଜାଣି ! ବେଣୁ, ବେଣୁ ବୋଉ ଜଣକର ଅଶ୍ରା ନେଇ ପଡ଼ିଛନ୍ତି । ତାଙ୍କ ନେଇ ବିଶେଷ ଚିନ୍ତା କରିବାର କଥା ନୁହେଁ । କିନ୍ତୁ ଉମା, ଯାହାର ଦାୟିତ୍ୱ ସେ ସ୍ୱଇଚ୍ଛାରେ ବହନ କରିବାକୁ ସ୍ୱୀକୃତ ହୋଇ-ଥିଲା, ସେ ଆଜି କାହିଁ ? କାହିଁ ସେ ? ହୁଏ ତ ପେଟ ଦାଉରେ ମୁଠିଏ ଭାତ ପାଇଁ ପର ଆଗରେ ହାତ ପାତି ବୁଲୁଥିବ କେଉଁ ଅଜଣା ଥାନରେ, ହୁଏ ତ କାହାର ଘରେ ହାଡଭଙ୍ଗା ପରିଶ୍ରମ କରି ଅଉ ଦାଆଁଠାଙ୍କ ପରି ଛିଡରରେ ଖାଇ ଗଛମୂଳ ଅଶ୍ରୟ କରିଥିବ !

ନା, ଉମା ସୁନ୍ଦରୀ ଉମା ଯୁବତୀ ! ହୁଏ ତ ରୂପର ବଜାରମଞ୍ଚରେ, ନାରୀତ୍ୱର ମୂଲ୍ୟ ରେ··· ! ସେ ଆଉ ଭାବି ପାରିଲା ନାହିଁ । ଛି, କଣ ଗୁଡା ଏଣୁ ତେଣୁ ଭାବୁଛି ସେ ? ଉମା ବୁଦ୍ଧିମତୀ । ସେ କାହିଁକି ତାର ଗର୍ବର ଧନ ନାରୀତ୍ୱ ବିକ୍ରୟ କରି ଜୀବନ ବଞ୍ଚାଇବ ? କେଜାଣି କାହିଁକି ଜଗୁ ନିଜ ଭାବନାର ଭିତ୍ତି ସହି ପାରିଲା ନାହିଁ । ତଥାପି କିଏ ଯେପରି ତାର ଅନ୍ତର ଭିତରେ ବାରମ୍ବାର କହିବାକୁ ଲାଗିଲା—ଜୀବନଠାରୁ ନାରୀତ୍ୱ

ହେଉ ବା ସଙ୍ଗାତ୍ଭ ହେଉ ବଡ଼ କଥା ନୁହେଁ । ଏଗୁଡ଼ା କେବଳ ସଂସ୍କାରର ଦୋଷ, ସ୍ୱାର୍ଥପର ମଣିଷର ପଞ୍ଚହଂସା-ପ୍ରଶୋଦିତ ଚିନ୍ତା । ସେ ଯାହା ହେଉ, ଜଗୁର ସେଥିରେ ସମ୍ବନ୍ଧ କଣ ? ଜମା ତାର ଭଉଣୀ, ଜମାର ରୂପ, ଜମାର ନାଶତ୍ୱ ବା ସଙ୍ଗାତ୍ୱ ସଙ୍ଗେ ତାର କି ସମ୍ବନ୍ଧ ? ସେ ବଞ୍ଚି ରହୁ । ନରକର ନିମ୍ନତମ ସ୍ତରରୁ କେବେ ହେଲେ ତାକ ଶୁଭୁ—"ଜଗୁ ଭାଇ !" ଜଗୁ ନିଶ୍ଚୟ ତାର ଦୁଇ ହାତ ଟେକାଇ ନରକରୁ ଉଠାଇ ନେଇ ତାକୁ ଛାତିରେ ଧରିବ । ମହାପ୍ରସାଦର ଅମର ବନ୍ଧନ ଛିଣ୍ଡାଇ ପାରିବ କିଏ ?

ଏହିପରି କେତେ କଥା ଭାବୁ ଭାବୁ ରାତି ଅଧିକ ହେଲା । ଭାବନାକୁ ଯେତିକି ଦୂରକୁ ଠେଲି ଦେବାକୁ ଚେଷ୍ଟା କରେ ମଣିଷ, ସେ ଜିଦ ଧରି ସେତିକି ପଛେ ପଛେ ଧାଇଁଥାଏ । ଜଗୁ ନିଶ୍ଚିନ୍ତ ହୋଇ ଶୋଇବାକୁ ଚେଷ୍ଟା କଲା; କିନ୍ତୁ ବାର ପ୍ରକାର ଭାବନାରେ ତାର ମନ ବିବ୍ରତ ହେବାକୁ ଲାଗିଲା । ଶେଷକୁ ରାତି ପାହାନ୍ତାକୁ ତାର ନିଦ ହେଲା ।

ପରଦିନ ଉଠୁ ଉଠୁ ତାର ଟିକିଏ ଡେରି ହେଲା । କିଏ ଜଣେ ତାକୁ ବଡ଼ ନିର୍ଦ୍ଦୟ ଭାବରେ ହଲାଇ ଉଠାଇଲା । ସେ ଉଠି ବସି ଦୁଇ ହାତରେ ଆଖି ମଳିବାକୁ ଲାଗିଲା । ବାଉିକ କେଜାଣି କାହିଁକି ବଡ଼ କଠୋର କଣ୍ଠରେ କହିଲା, "କିରେ, ପଢ଼ିବୁ ଭାଙ୍ଗିବ ନାହିଁ କି ? ସାନ୍ତେ ଡେଣେ ଡାକୁଛନ୍ତି···।"

ଜଗୁ ଧଡ଼ପଡ଼ ହୋଇ ଉଠି ଠିଆ ହେଲା । ପଚାରିଲା, "କାହିଁକି ରେ, ଏତେ ସକାଳୁ...?"

ବାଉିକ ତାକୁ ଠେଙ୍ଗରଇ ଗୁହିଁ ହସି ହସି କହିଲା, "ଦିନ ଅଧି ଦି ଘଡ଼ି ହେଲଣି, କହୁଛୁ ସକାଳୁ !"

ଜଗୁ ବାହାରକୁ ଗୁହିଁଲା । ଗୃହଅଡ଼େ ଖରା ବଢ଼ିଛି ହୋଇ ପଡ଼ି-ଲାଣି । ଲଜ୍ଜିତ ହୋଇ କହିଲା, "ସତେ ତହୋ, କେତେ ଶୋଇପଡ଼ିଲି । କାଲି ରାତିରେ ନିଦ ହେଉ ହେଉ ଡେରି ହୋଇଗଲା...।"

ବାଉିକ ଅଟ୍ଟହାସ କହିଲା, "ଗଛମୂଳରେ କାଗ ପାରି ଶୋଇଥିଲେ କଣ ଏମିତି ହୁଅନ୍ତା କି ? ପୋଲା ଭାତ ପେଟରେ ପଡ଼ିଲେ ଲୋକଙ୍କର ଦିମାକ ବାହାରେ...।"

ଜଗୁ ବଲ ବଲ କରି ତା ମୁହଁକୁ ଚାହିଁଲା । ଦିନେ କାଳେ ନାହିଁ, ଆଜି ଅଧୁଆ ମୁହଁରେ ସାମନା ଉପରେ ଭଣ୍ଡାରିଟା ଏପରି ଥଟ୍ଟା କରି ଉପଲକ୍ଷ ଦେଇ ଗୋଇ ଖୋଲିଦେଉଛି । ସେ ସୁଗଠା ଚପାଇ ଅଧୀନ ଭାବରେ କହିଲା, "ସକାଳୁ ବାସି ମୁହଁରେ ପାଣି ଦେଇ ନାହିଁ । ଆସି ଏଣୁ ତେଣୁ ଚକବାକୁ ଲାଗିଲା...।"

"ପଛେ ପାଣି ଦେବୁ, ସାନ୍ତେ ଡାକୁଛନ୍ତି, ଆଗ ଚାଲ । କଣ ଜରୁରୀ କାମ ଅଛି ।"

"କି ରେ କାହିଁକି ?"

"କାହିଁକି, ନା ?" ସେ ମୁଣ୍ଡ ହଲାଇ କହିଲା, "ଆ—ଜଲଦି—।"

ଜଗୁ ବାରିକ ସାଙ୍ଗରେ ପଟ୍ଟନାୟକଙ୍କ ପାଖକୁ ଗଲା । କଚେରି ଘରେ ଗୋଟିଏ ଛୋଟ ରକମର ସଭା ବସିଛି । ପଟ୍ଟନାୟକେ, ଦାସେ, ଛଦାଢ଼ୀଏ । ପଟ୍ଟନାୟକଙ୍କ ପାଖରେ ବୁନ୍ଦ, କୋଳରେ ହେମ । ସମସ୍ତେ ବଡ଼ ଗମ୍ଭୀର ଦେଖାଯାଉଛନ୍ତି । ସତେ କି କାହାର ପ୍ରତୀକ୍ଷାରେ ବସିଛନ୍ତି ।

ଜଗୁକୁ ଦେଖି ପ୍ରଥମେ ସୁନ୍ଦର ବାବୁ ମୁହଁ ଖୋଲିଲେ, "ଆରେ, କାଲି ତୁ ହେମକୁ ସାଙ୍ଗରେ ନେଇ ପୋଖରୀ ଖୋଳା ଦେଖିବାକୁ ଗଲୁ ବେଳେ ତା ବେକରେ ସୁନାଗୋପ ଥିଲା··· ?"

"ଆଜ୍ଞା ହଁ "—କହି ସେ ହେମକୁ ଚାହିଁଲା ।

"ଆଜି ସକାଳୁ ଦେଖୁଛୁ, ବେକରେ ତାର ଗୋପ ନାହିଁ ।"

ଜଗୁର ମୁଣ୍ଡ ଘୂରିଗଲା ! ସେ ଅଟେଇ ଅଟେଇ କହିଲା, "କାହିଁ ଗଲା ସାନ୍ତେ ?"

ଦାସେ କହିଲେ, " ସେ କଥା ତୁ କହିବୁ ନାଁ ସାନ୍ତେ କହିବେ ?"

ଜଗୁ କହିଲା, "ସଞ୍ଜବେଳ ହାରଟା ହେମ ବାବୁଙ୍କ ବେକରେ ଥିଲା, ମୁଁ ଦେଖିଛି । କେହି ଖୋଲି ନେଇ ନାହିଁ ତ ? ସଞ୍ଜ ପରେ ସେ ତ ଆଉ ଘରୁ କୁଆଡ଼େ ଯାଇ ନାହାନ୍ତି ।"

ଛଦାଢ଼ୀଏ କହିଲେ, "ଘରଦ୍ୱାର ଅନ୍ଦସନ୍ଧି ସବୁ ଖୋଜା ସରିଛି । ମିଳିଲା ନାହିଁ । କେହିବି ଖୋଲି ନେଇ ନାହିଁ । ମୋର ବିଶ୍ୱାସ... ।"

"କେହି ତ ଖୋଲି ରଖି ନାହିଁ । ମୋର ବିଶ୍ୱାସ...। ଅଚ୍ଛା ଏତେ କଥାରୁ କଣ ମିଳିବ ? କେଉଁଠି ଲୁଚାଇଛୁ ଭଲରେ ଭଲରେ କାଢି ଦେଲୁ ବାବୁ, କଥା ଛିଣ୍ଡିଯିବ । ମିଛଟାରେ ଏତେ ଧରପଗଡ଼ରୁ କଣ ମିଳେ ?"

ଜଗୁର ପାଟି ଫିଟିଲା ନାହିଁ । ସେ ବୁଝିଲା, ସମସ୍ତେ ଏକାଠି ବସି ତାକୁହିଁ ଦୋଷୀ ସାବ୍ୟସ୍ତ କରିଛନ୍ତି । ତାକୁ ଚାରିଆଡ଼ ଅନ୍ଧାର ଦିଶିଲା । ସେ କଣ କହିବ, କଣ କରିବ, କିଛି ଭାବି ପାରିଲା ନାହିଁ ।

ସୁନ୍ଦର ବାବୁ କହିଲେ, "ଆରେ ଜଗା, ବିଲେଇ ଆଖି ବୁଜି ଦୁଧ ପିଇଲେ ମନେ କରେ କେହି କିଛି ଦେଖୁ ନାହାଁନ୍ତି; କିନ୍ତୁ କୌଣସି କଥା ଲୁଚି ରହେ ନାହିଁ । ତୋ ଛଡ଼ା ତ ଏ ଘରେ ଆଉ କେହି କାରବାର ହୁଏ ନାହିଁ ।" ଟିକିଏ ଚିନ୍ତି ପୁଣି କହିଲେ, "ଦେଖ୍, ସେ ଦିନ ତୁ ମୋର ପିଲାର ଜୀବନ ରଖିଛୁ । ତା ତୁଳନାରେ ଦୁଇ ଅଢେଇ ଭରିର ଗୋଟାଏ ସୁନା ହାରର ଦାମ କିଛି ନୁହେଁ । ତୋତେ ମୁଁ କିଛି କହିବି ନାହିଁ; ଖାଲି ଜାଣିବାକୁ ଚାହେଁ, ତୁ ନେଇଛୁ କି କାହିଁ ହଜିଗଲା । ସୁନା ହଜିବା ଭିତର ଦୋଷ ତୁ ଜାଣୁ ?"

ଖାଉନ୍ଦଙ୍କ କଅଁଳ କଥା ତାର କଟା ଘାରେ ଚୂନ ବୋଳିଲା ପରି ଲାଗିଲା । ସେ ମନର କୋହଟାକୁ ଦାବିଦେଇ କହିଲା—"ଶେଷକୁ ଆପଣ ବି ମୋତେ ସନ୍ଦେହ କଲେ ?"

ଦାସେ କହିଲେ—"ଚୋରଙ୍କର ବେକ ଚାରିକଡ଼ ବୁଦ୍ଧି ! କେତେ ପଣ୍ଡିଆରି ଦେଖାଇ କେତେ ଚାଲାଖିରେ କହୁଛି ରେ ! ମାନି ଯାଉ ନାହୁଁ...।"

ଜଗୁ ନାଲି ଆଖି ଦେଖାଇ ଟିକିଏ ବଡ଼ପାଟିରେ କହିଲା, "ଚୁପ୍ ରହ ଦାସେ । ତମେ ଯେପରି ଖାମିନ୍ଦର ଚାକର, ମୁଁ ବି ସେହିପରି ତାଙ୍କର ଚାକର । କିନ୍ତୁ ମୁଁ ତମର ଚାକର ନୁହେଁ ଯେ, ବିନା ପ୍ରମାଣରେ ତମେ ମୋ ମୁଣ୍ଡରେ ଚୋରି ଅପରାଧଟା ଲଦିଦେବ !"

ଜଗୁର ନାଲି ଆଖି ଦେଖି ଦାସେ ଶଙ୍କିଗଲେ । ପଟ୍ଟନାୟକେ କହିଲେ, "ଅଃ ! କାହିଁକି ତାକୁ ବିରକ୍ତ କରୁଛ ? ଦାସେ, ତୁନି ହୁଅନା ।"

ଜଗୁ କହିଲା—"ଆପଣ କଣ ବିଶ୍ୱାସ କରନ୍ତି ମୁଁ ଚୋର ?"

"ତୋ ଛଡ଼ା ତ ଆଉ କେହି ଘର ଭିତରକୁ ଯାଏ ନାହିଁ... ।"

ଜଗୁ ଆଉ ସହି ପାରିଲା ନାହିଁ । ହଠାତ୍ ତେଜ ଉଠି କହିଲା—"ବିଶ୍ୱାସ କରନ୍ତୁ, ମୁଁ ଗୃହ ନୁହେଁ । ଯେଉଁମାନେ ଅଳେଇ ହେଉଛନ୍ତି, ହୁଏତ ତାଙ୍କର ଭିତରୁ କେହି ଏ କାଣ୍ଡ କରି ଅପରେଶଙ୍କ ବୋଲି ମୋହରର ମୁଣ୍ଡରେ ଅଠା ବୋଳି କଷ୍ଟିକୁରେ ଉଧୁର ଯିବାର ମତଲବ କରିଛନ୍ତି ।"

ଉହାଜୀ ଭାଷିଲେ, "ଗୃହଙ୍କର ମୁହଁ ଠାଣ ପରି···।"

ସୁନ୍ଦର ବାବୁ ସନ୍ଦେହସୂଚକ ମୁଣ୍ଡ ହଲାଇଲେ ।

ଜଗୁ ଦାନ୍ତ ଘୋଷାଇ କହିଲା, "ନିଜର ଦୋଷରୁ ମୁଁ ସର୍ବସ୍ୱ ତ୍ୟାଗ କରି ଅଜି ଛତର ଅଶ୍ରା କରିଛି ବୋଲି ତମେ ମୋତେ ସନ୍ଦେହ କରିବାକୁ ସାହସ କଲ ସୁନ୍ଦର ବାବୁ । ନୋହିଲେ ତମକୁ ଆଜି ମୋର କରାମତିଟା ଦେଖାଇଥାନ୍ତି । ଧନବନ୍ତ ପଧାନର ପୁଅ ଜଗୁ ପଧାନ, ସୁନା ଗଦା ଉପରେ ଗଡ଼ୁଥିବାର ଲୋକ । ଏ ଭଳିଆ ସୁନାହାରକୁ ସେ ଗୋଡ଼ରେ ଫିଙ୍ଗି ଦେଇ ପାରେ !"

ଦାସେ ହସି ହସି କହିଲେ, "ଓହୋ ! ଅଚ୍ଛା ତୋର ଛୁଞ୍ଚି ମୁନରେ ଘିଅ ଖାଉଥିଲେ ପରି !"

ଜଗୁ କହିଲା, "ଗୃହ ବି ଆମରି ପରି ଅଭାବଗ୍ରସ୍ତ ଲୋକ । ଗୃହ କରିବାଟା ମଣିଷ ପକ୍ଷରେ ଅଶୋଭନ ନୁହେଁ । ମଣିଷ ହୋଇ କେହି ଠାଣ କରି କହି ପାରେ ନାହିଁ ଭବିଷ୍ୟତ୍‌ରେ ତାର ଭାଗ୍ୟରେ କଣ ଅଛି । କିନ୍ତୁ ତମର ହାରଟା ଗୃହ କରି ନଟପୁର ପଧାନ ପୁଅ ବଡ଼ଲୋକ ହେବାର ଆଶା କରି ନାହିଁ ।"

ପଟ୍ଟନାୟକଙ୍କ ଆଖି ଖୋଲିଗଲା । ସେ ଭୂଲିଡା ଟିକେ ବିସ୍ମିତ ହୋଇ ମନକୁ ମନ କହିଉଠିଲେ, "ନଟପୁରର ଖ୍ୟାତନାମା ମହାଜନ ଧାନୁ ପଧାନ !"

"ହଁ, ଧାନୁ ପଧାନ । ସେ ଆଉ ନାହାନ୍ତି । ତାଙ୍କର ଚଳନ୍ତି ସମ୍ପତ୍ତି ସବୁ ଯାଇଛି । ତଥାପି ଯାହା କିଛି ଜମିବାଡ଼ି ଅଛି ତାର ମୂଲ୍ୟ ଦୁଇ ହଜାର ସୁନାର ମୂଲ୍ୟରୁ ଢେର ବେଶି । ସବୁ ଦିନେ କିଛି ଦୁର୍ଦ୍ଦିନ ନ ଥିବ । ବଞ୍ଚିଥିଲେ ଆପଣଙ୍କର ଅନ୍ନର ଦାମ୍ ଆପଣଙ୍କୁ ମୁଁ ପରିଶୋଧ କରିବି । କେଶୁ, ଏଇ ମୋର ଶେଷ କଥା । ଯେତେଦିନ ତମର ଅନ୍ନ ମୁଁ ଖାଇଛି, ମୁଁ ତମର

ଧାରୁଅ ହୋଇ ନାହିଁ । ମୋର ନିଜ ଅର୍ଜନ ମୁଁ ଖାଉଛି । ମୁଁ ମୋର ସ୍ୱର୍ଗ ଅନୁଭବ କରୁଛି । ଯଦି କିଛି କରିବାର କଥା ଥାଏ ପଛକରେ କରି ପାରି, ।" କଗୁର ଆଖିରୁ କାଁଅ ଶିଖା ବାହାରିଲା ପରେ ।

ସୁନ୍ଦର ବାବୁ ବିସ୍ମିତ ହୋଇ ଛତାଚ୍ଛୀଙ୍କ ମୁହଁକୁ ଚାହିଁଲେ । ଛତାଚ୍ଛୀ ଥରେ ମାତ୍ର କଗୁର ମୁହଁକୁ ଅନାଇ ଲଜ୍ଜିତ ହେଲେ ପରି ତଳକୁ ମୁହଁ ମୋଡି ମୁଣ୍ଡ କୁଣ୍ଡାଇବାକୁ ଲାଗିଲେ । ବହୁ ଦିନ ତଳର ଗୋଟିଏ ଘଟଣା ସେମାନଙ୍କର ମନେ ପଡ଼ିଲା । ଟଙ୍କା ଅଭାବରୁ ଖାଲଡମାମିରେ ଗୋଟାଏ ମାହାଲ ତାଙ୍କର ଲାଟ୍‌ରେ ଉଠିଲା । ଧାର ଉଧାର ପାଇଁ ବାର ଜାଗା ବୁଲିଲେ । କେହି ତାଙ୍କୁ ଟଙ୍କା ଦେଲେ ନାହିଁ । ଶେଷକୁ ନବପୁରର ମହାଜନ ଧାନୁ ପଧାନେ ବିନା ଦଲିଲରେ ତାଙ୍କ ନାଁ ଶୁଣି ପାଞ୍ଚଶ ଟଙ୍କା ପଠାଇ ଦେଇଥିଲେ । ଆଜି ଯାଏ ସେ ଟଙ୍କାର ସୁଧ ମଧ ଦିଅ ହୋଇ-ନାହିଁ । ପଧାନେ ଅନେକ ଥର ଲୋକ ପଠାଇଥିଲେ, ଦିନେ ମଧ ଦଉଡ଼ି ଆସିଥିଲେ; କିନ୍ତୁ ସୁନ୍ଦର ବାବୁ ଯେ କରଣ ପିଲା ! ଜୀବନରେ ଗୋଟାଏ ବଡ଼ ଭୁଲ ତ କରିଥିଲେ ପଧାନେ, କାହାକୁ କହିବେ ? କାନମୁଣ୍ଡା ଅଉଁସି ରହିଲେ । ସେହି ଦିନୁ ସେ ଆଉ ସେ ଟଙ୍କାର ନାଁ ଧରନ୍ତି ନାହିଁ ।

ଯାହା ହେଉ, ସୁନ୍ଦର ବାବୁ ସେ କଥା ଭୁଲି ନାହାନ୍ତି । ସୁବିଧା ପାଇଲେ ଟଙ୍କାଟି ମୂଳେ ମୂଳେ ପରିଶୋଧ କରି ଦେବାକୁ ମନେ କରନ୍ତି, କିନ୍ତୁ ଲେଖାପଢ଼ି ନ ହୋଇଥିବାରୁ ତାଙ୍କୁ ଆଜଯାଏ ସେ ସୁବିଧାଟା ମିଳି ନାହିଁ । ନବପୁରର ନାମଜାଦା ମହାଜନଙ୍କର ପୁଅ ଜଗବନ୍ଧୁ ଯେ କେବେ ଘର ଛାଡ଼ି ଆସି ପର ଘରେ ପେଟ ପାଇଁ ଗୋଲମୀ କରି ପାରେ ଏ କଥା ବିଶ୍ୱାସ କରିବାକୁ ସୁନ୍ଦର ବାବୁ ଭରସି ପାରିଲେ ନାହିଁ । ସେ ମୁରୁକି ହସି କହିଲେ, "ତୁ ବାବୁ ଲାଟ ସାହେବର ପୁଅ ହେଲି କି..."

ତାଙ୍କର କଥା ତାଙ୍କର ତୁଣ୍ଡରେ ଅଛି, ବୁଢ଼ା ବୋଉ ଧୀରେ ଧୀରେ ଆସି ସେଠାରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ଦାସେ ଛତାଚ୍ଛୀଏ ସସମ୍ଭ୍ରମରେ ଘୁଞ୍ଚିଗଲେ । ସେ ସିଧା ସିଧା ସୁନ୍ଦର ବାବୁଙ୍କ ନିକଟକୁ ଯାଇ ହସ ହସ ହୋଇ କହିଲେ, "ମୁଁ ମନା କରୁଛି, ମୋ କଥା ମାନୁନା । ନିର୍ଦ୍ଦୋଷ ଲୋକଟା ଉପରେ... ।"

"ତାହାଙ୍କ କଣ ହେଲା କି ?"

"ହାର ମିଳିଲାଣି ।"

"ହାର ମିଳିଲାଣି ! କୋଉଠୁ ପାଇଲ ?"

"ମୋର ମନେ ନାହିଁ, କାଲି ସଞ୍ଜରେ ମୁଁ ନିଜେ ହିଁ ଏ ତ ହାରଟାକୁ ଠଣା ଉପରେ ରଖି ଦେଇଥିଲି ।"

"ଥାଉ, ଅଛି ଲୋକ ତ... ।"

ଦାସେ ଠାକୁରାଣୀଏ ଧୀରେ ଧୀରେ ଦାଣ୍ଡକୁ ଖସି ଗଲେ । ବାଳିକା ବାପୁଡ଼ା ପାଖରେ ରଖା ହୋଇଥିବା ଥାଳଟା ଧରି ତାଙ୍କ ବାହାନାରେ ଭିତରକୁ ଗଲା । ଜଗୁ ନିଶ୍ଚଳ ହୋଇ ଠିଆ ହୋଇଥାଏ ।

ବୃଦ୍ଧ ବୋଉ କହିଲେ, "ମୁଁ ମନା କରୁଛି । ତମେ ତ ନଈ ନ ଦେଖି ଭଙ୍ଗିଲା ।" ଜଗୁ ଅଡ଼କୁ ମୁହଁ ଫେରାଇ କହିଲେ—"ପିଲାଟାକୁ ସକାଳୁ ଉଠାଇ । ଛିଃ... ! ଯା ରେ ଜଗୁ, ତୁ ସେସବୁ କଥାରୁ କଣ ପାଇବୁ ? ବାପୁପଣ ଘସ ଯା... ।"

ଜଗୁର ଆଖିରୁ ଦି ଟୋପା ଲୁହ ଝରିପଡ଼ିଲା । ସେ ବୃଦ୍ଧ ବୋଉଙ୍କୁ ପ୍ରଣାମ କରି କରୁଣ କଣ୍ଠରେ କହିଲା, "ମା, ବିଦାୟ ଦିଅ ମୋତେ ।"

"କାହିଁକି ରେ ?"

"ମୁଁ ଆଉ ଏଠି ରହି ପାରିବି ନାହିଁ ମା ; ଯେଉଁଠି ଏତେ ସନ୍ଦେହ...।" ତାର କଣ୍ଠ ରୁଦ୍ଧ ହେଲା । ଆଖିର ଲୁହ ପୋଛି କହିଲା, "ମୋ ପକ୍ଷରେ ଛତର ଅନ୍ନ, ଗଛମୂଳ ଏହାଠାରୁ ଢେର ଭଲ ମା ।"

ବୃଦ୍ଧ ବୋଉଙ୍କର ଆଖି ଛଳ ଛଳ ହେଲା । ସେ କଅଁଳ ସ୍ୱରରେ କହିଲେ, "ପାଗଳ ପିଲାଟା ! କୋଉ କଥାକୁ ଛଳ କରୁଛୁ ରେ ! ଯା—"

"ହଁ ମା, ମୁଁ ପାଗଳ ।" ଏତିକି କହି ସେ ଆଉ ଥରେ ପ୍ରଣାମ କରି ଘରୁ ବାହାରିଆସିଲା । ବୃଦ୍ଧ ବୋଉ ସଜଳ ଆଖିରେ ଅନାଇ ଡାକିଲେ, "ଆରେ ଜଗୁ, ଶୁଣ ଶୁଣ... ।"

ଜଗୁ ଉତ୍ତର ଦେଲା ନାହିଁ, ଫେରି ଗୁହିଁଲା ନାହିଁ ।

## — ଅଠେଇଶ —

ଦିନ ପ୍ରାୟ ଦଶଟା ହେବ । ମେଘୁଆ ପାଗ । ରୋଷଘରେ ଜମା ଭାତ ରାନ୍ଧୁଛି । କାଠଗୁଡ଼ା ଓଦା ଥିବାରୁ ଧୂଆଁରେ ଘରଟା ପୂର୍ଣ୍ଣ । ଫୁଙ୍କି ଫୁଙ୍କି ତାର ମହଁଟା କଳା ପଡ଼ିଗଲାଣି, ଆଖି ମଳି ମଳି ଆଖିପତା ଫୁଲି ଉଠିଲାଣି । ଉପାୟ କଣ ? ପର ଘରେ ଗୃହକର୍ମ କରୁଛି; କାମ କରିବାକୁ ତ ହେବ । ନାହିଲେ କିଏ ଶୁଣୁଛି ? ବାଧ ହୋଇ ସେ ବେଳେବେଳେ ଅସ୍ଥିରା ହୋଇ ଅଖିରେ ନାକରେ ଲୁଗା ଦେଇ ପଦାକୁ ଆସୁଛି, ଖୋଲା ପବନକୁ । କେତେବେଳେ ବା ରୋଷଘରର ଛୋଟ ଝରକା ବାଟେ ପଦାକୁ ମୁହଁ କାଢ଼ି ନିଶ୍ୱାସ ନେଉଛି । ଆଜି ତ ଶେଷ ଦିନ । କାଲିଠୁଁ ଛୁଟି ବନ୍ଦ ହେବ । ବାଙ୍ଗାଳମାନେ ଯେ ଯୁଆଡ଼େ ବିଦା ହୋଇଯିବେ । ତେଣିକି ତ ଅଉ କଷ୍ଟ ସହିବାକୁ ହେବ ନାହିଁ ।

ବାଜିରିଆ ଗଉଡ଼ ରୋଷଘର ଦୁଆରମୁହଁକୁ ଆସି ଘାଗଡ଼ା କଣ୍ଠରେ ଡକାଛାଡ଼ିଲା—"ଅଲୋ ଜମା ଲୋ··· !"

ଜମା ଶୁଣି ମଧ ଶୁଣିଲା ନାହିଁ । ଏବେ ତ ଏଣେ ଧୂଆଁରେ ଅସ୍ଥିରା ହୋଇ ଆଖି ନାକ ମଳୁଛି । ତହିଁରେ ପୁଣି ବାଜିରିଆକୁ ସେ ମନେ ମନେ ଘୃଣା କରେ । ଯାହା କଥା ଯାହା ମନକୁ ନ ଆସେ ସେ ତ ତାକୁ କହିବ । ବାଜିରିଆଟି ଠିକ୍ ଏ କେମିତି ହେଙ୍ଗେଡ଼ା ପ୍ରକୃତି, ହେରେସା ଢଙ୍ଗର ଲୋକ । ଭଲ ମନ୍ଦ, ସଙ୍ଗ ଅସଙ୍ଗ ବିଗୁରି ସେ କଥା କହି ଜାଣେ ନାହିଁ । ଯେତେବେଳେ ମନରେ ଯେ ଭାବ ଆସିଲା, ପାତ୍ର ଅପାତ୍ର, ସ୍ଥଳ ଅସ୍ଥଳ, ସମୟ ଅସମୟ କିଛି ନ ବୁଝି ସେ କହିଯାଏ । ଖାଲିରେ ପଡ଼ୁ କି ଉପରେ ପଡ଼ୁ ।

କିନ୍ତୁ ଜମାର ଏ ନେଇ ତାକୁ ବିରକ୍ତ ହେବାର କୌଣସି କାରଣ ନାହିଁ । ବରଂ ତାର ଖୋଲା ମନ ସରଳ ପ୍ରକୃତି ପାଇଁ ଲୋକେ ତାକୁ ଆଦର କରନ୍ତି । ଛନ୍ଦ କପଟ ମନରେ ତାର କିଛି ନ ଥାଏ ବୋଲି ଲୋକେ ତାକୁ ବିଶ୍ୱାସ କରନ୍ତି । ଯାହା ହେଉ ଟୋକା ବୟସ । କୋଡ଼ିଏ ଏକୋଇଶ ବର୍ଷର ବେଣ୍ଟା ଯୁଆନ । ଜମାକୁ ଦେଖିଲାଦିନୁ ତା ମନ ଭିତରଟା ଯେମିତି ଛଟପଟ ହେବାକୁ ଲାଗିଲା । କାମରେ ତାର ମୋଟେ ମନ ଲାଗିଲା ନାହିଁ ।

ବସି ବସି ଗମ୍ଭୀର ହୋଇ କଣ ଭାବୁଥାଏ ସବୁବେଳେ । ଉମାର କଣ୍ଠସ୍ୱର ଶୁଣିଲେ, ସେ ସତେ କି ଚମକି ଉଠେ । କେତେ କାମରେ ବାରମ୍ବାର ଉମା ପାଖକୁ ଯାଇ ଏଣୁ ତେଣୁ ଗୋଟାଏ କାମ ବାହାନା କରି ତାର ମୁହଁକୁ ଘଡ଼ିଏ କାଳ ଚାହିଁ ଆସେ ।

ଉମା ଆସିଲା ଦିନୁଁ ବାଉରିଆର ଏକ ମାତ୍ର ଆନନ୍ଦ ହେଲା, କେବଳ ଉମା କଥା ଭାବିବା, କେତେ ଉଦ୍ଦେଶ୍ୟରେ ଛାଇ ପରି ତାର ପଛେ ପଛେ ଗୋଡ଼ାଇବା, ଉପରେ ପଡ଼ି ଉମା ପାଇଁ ପାଞ୍ଚ ପାଇଟି କରିଦେବା ଇତ୍ୟାଦି । କିନ୍ତୁ ଯାହା ହେଲେ ବି, ସେ ମୁହଁ ଖୋଲି କିଛି କହି ପାରେ ନାହିଁ । ଖାଲି ଆଖି ଆଗରେ ତାର ଯିବା ଆସିବା, ଲୀଳା ଖେଳା ଦେଖି ଓ କାନରେ ତାର କଅଁଳ କଣ୍ଠର ମିଠା କଥା ଗୁଡ଼ିକ ଶୁଣି ମନ ତୋଷ କରେ ତାହା ବରଂ ତା ମନ ଭିତରେ ପିପାସା-ନିଆଁକୁ ବେଶି ବେଶି ଜଳାଏ । ସେ ଉମାକୁ ଚାହିଁ ବସେ, ଉମା ବି ଉଦ୍ଦେଶ୍ୟହୀନ ହସଟିଏ ତାକୁ ଉପହାର ଦିଏ । ଏତିକିରେ ତାର ପ୍ରାଣରେ ନିଆଁ ଲାଗେ । ସେ ଏକୁଟିଆ ବସି କେତେ ଆକୁଳ ହୋଇ ଭାବେ, ଭାବନାର ଅନ୍ତଅନ୍ତ କୂଳକିନାରା କିଛି ପାଏ ନାହିଁ । ସବୁ କଥା ସେ ଖୋଲି ଖୋଲି କହିପାରେ, କହିଯାଏ; କିନ୍ତୁ ମନ ଭିତରର ଏହି ଗୋପନ କାହାଣୀଟିକୁ ସେ ଲଜ୍ଜାରେ ଲୁଚାଇରଖେ । ଲାଜରେ କି ଭୟରେ ତାର ମୁହଁ ଖୋଲେ ନାହିଁ, ଜିଭ ଓଲଟେ ନାହିଁ । ତାର ଛାତି ଭିତରଟା ଥରି ଉଠେ ଯେପରି ! ସେ ଖାଲି ଚାହିଁ ରହେ ମୁହଁକୁ ।

ଦିନେ ସଞ୍ଜ ସମୟ ଉମା ମଠ ଖମାରପଛ କୂଅରେ ପାଣି କାଢିବାକୁ ଗୋଟାଏ ବଡ଼ ଗରା ଧରାଇଛି । ବାଉରିଆ ପଛ ପାଖୁ ଛକି ଛକି ଯାଇ ତାର ପିଠିରେ ହାତ ମାରି କହିଲା, "ଦେଖ ତ ଟୋକୀର କେଡ଼େ ସାହସ ! ଏଡ଼େ-ବଡ଼ ଗରାଟା ! ଉଠ୍ ଉଠ୍ !"

ଉମା ପାଣିଭର୍ତ୍ତି ଗରାଟି କୂଅ ମଝିରେ ଝୁଲାଇ ରଖି ମୁହଁ ବୁଲାଇଲା । ବାଉରିଆର ଆଖିରେ ସେ କଣ ଦେଖିଲା, କଣ ବୁଝିଲା କେଜାଣି, ତାର ଦେହ ହାତ ଅବଶ ହୋଇଉଠିଲା । ଭରା ପାଣି ଗରାଟା ତାକୁ ଗୋଟାଏ ପାହାଡ଼ ପରି ଲାଗିଲା । ହାତ ଥରିଉଠିଲା । ସେ ଭୟରେ ଗୃହଅଡ଼କୁ ଚାହିଁ କଣ ଯେପରି କହିବାକୁ ଯାଉ ଯାଉ ବାଉରିଆ ହାତରେ ଦଉଡ଼ିଟା ଧରି,

ପାଣି ଗରୁଣ୍ଡା କାଢ଼ିବାକୁ ଲାଗିଲା । ଗରୁଣ୍ଡ ତଳେ ଥୋଇ ସେ କହିଲା, "ଜମା, ତୋର ତ ଖୁବ୍ ସାହସ !"

ମୁହଁ ଶୁଖାଇ ଜମା କହିଲା, "ମୋର କୁହେଁ ରେ ବାଉରିଅ—ତୋର।"

ଆଜି ଦିନେ ବର୍ଷସହାଳୁ ଜମା ଏକୁଟିଆ ବାଡ଼ିକୁ ଯାଇ ଅନ୍ୟମନସ୍କ ଭାବେ ସୁଦୂର ଆକାଶକୁ ଚାହିଁଛି, ପଛୁ ଆଜ୍ ବାଉରିଅ ଆସି ତାର କାନ୍ଧ ଟାଣିଲା । ଜମା ଚମକି ଚାହିଁଲା, ସେ ହସୁଛି । ଜଣ ମନରେ ପାଞ୍ଚ ସେ ଚାଲି ପଳେଇ ଗଲା ଖମାର ଭିତରକୁ ।

ସେହି ଦିନରୁ ଜମା କେବେ ଏକୁଟିଆ ରହେ ନାହିଁ । ବାଉରିଅ ଆସି ତାକୁ କେତେ କଅଁଳ କଥା କହିଯାଏ, ତା ପାଇଁ କେତେ ପାଇଟି କରିଯାଏ । ସେ ହସି କରି ପଦେ କହିଲେ, ଜମା ମଧ୍ୟ ହସି କହେ; କିନ୍ତୁ ତାକୁ ପାଖକୁ ଆସିବାର ସୁବିଧା ଦିଏ ନାହିଁ । ଘର ଘରେ କାମ କରୁଛି । ନିଜର ତ ସ୍ୱାଧୀନତା ନାହିଁ । ବାଧ୍ୟ ହୋଇ କେବେ ଯଦି ସେ ଏକୁଟିଆ କାହିଁ ଯାଏ, ସେ ଦେଖେ ପଛରେ ତାର ବାଉରିଅ ମୁହଁ ଶୁଖାଇ ଚାହିଁଛି । କେବେ କେବେ ବା ଅନ୍ଧାରରେ ତାର ପଛେ ପଛେ ଆସି ଧୀରେ ଧୀରେ ଜମା କାନରେ କହେ, "ତୁ ଭାରି ସୁନ୍ଦର ଜମା--- !"

ଜମା ଶୁଣେ, ପେଟ ଭିତରେ ତାର ତାରୁଣ୍ୟ ଉମଉଜେ । ତଥାପି ସେ କିଛି କହେ ନା, କିଛି କହିପାରେ ନା । ଲାଜରେ କି ଭୟରେ ସେଠାରୁ ସେ ଚାଲି ଆସେ, ନିଜକୁ ନିଜର ତାରୁଣ୍ୟକୁ ଲୁଚାଇବାକୁ, ବାଉରିଅର ଅବୁଝା ଶୁଖିଲା ପ୍ରାଣରେ ହତାଶାର ଦାରୁଣ ଆଘାତ ଦେଇ ତାର ସବୁ ଶକ୍ତି, ସବୁ ଆଶା, ସବୁ ଉତ୍ତେଜନାକୁ ନିର୍ଘାତ ନିଷ୍ପେଷ୍ଟ କରିବାକୁ ।

ସବୁ ଦିନେ ପ୍ରଚ୍ଛ ମୁହୂର୍ତ୍ତରେ ଧୁଇଁଛି ପ୍ରାଣର ଲୁଚକାଳି ଖେଳ ଚାଲି-ଥାଏ, ବଡ଼ ଗୋପନରେ । ଦୁହେଁ ଦୁହିଁଙ୍କର ମନ କଥା ବୁଝନ୍ତି, ଅନ୍ତର ବୁଝେ, ମନ ବୁଝେ, ସଂସାର ବୁଝେ ନା । ଜଣେ ଜୀବନର ସର୍ବସ୍ୱ ଦାନ କରି ଅନ୍ୟ ଜଣକର କରୁଣା ଭିଖାରୀ, ଜୀବନକୁ ଅର୍ଘ୍ୟ ଦେଇ ପଦେ ମିଠା କଥା ଶୁଣିବାକୁ ଆକୁଳ ହୋଇ ଚାହିଁ ରହିଥାଏ; କିନ୍ତୁ ଅନ୍ୟ ଜଣେ ହୃଦୟ ଭିତରେ ଯୌବନ–ଦେବତାର ପୂଜା ପାଇବାର ଆଗ୍ରହ ଦେଖି ମଧ୍ୟ କି ଆଶାରେ କେଜାଣି, କି ଚିନ୍ତାରେ କେଜାଣି, ବଡ଼ କଷ୍ଟରେ, ବଡ଼ ଅନିଚ୍ଛାରେ

ମୁହଁ ଫେରାଏ । ତାରୁଣ୍ୟ ତାର ବଳାତ୍କାର କରି ଉଠେ । ସେ ମୁହଁ ପୋଛି ଆଖିରୁ ଲୁହ ପୋଛେ ।

ଉମା ଭୟ କରେ ଏଇଥି ସକାଶେ । ବାଉରିଆ ଡାକ ଶୁଣି ସେ ଚମକିଲା । ମନ ହେଲା ପଦାକୁ ଆସିବାକୁ । ମନ ଭାବିଲା, "ନା ଏଇ ଧୂଆଁ ଭିତରେ ରୁଦ୍ଧ ହେବ ପଛେ ପିଠ ନାହିଁ, ବାଉରିଅର ଆଶା-ଆକାଙ୍କ୍ଷା ବାଢ଼ଇବା ହସଟିକି ଦେଖିବାକୁ, ଉତ୍କଣ୍ଠିତ ଦୀର୍ଘଶ୍ୱାସ ଦେଖି, ପିପାସାକୁଳ ଆଖି ଦିଓଟି ଚାହିଁ, ନିଦ୍ରିତ ତାରୁଣ୍ୟକୁ ଜାଗରିତ କରିବାକୁ ।" ଭରା ଯୌବନ ତାର ଆଦେଶ ଦେଲା ପରା ! ତଥାପି ସେ ଗଲା ନାହିଁ । ତାର ଗୋଡ଼ ଚଳିଲା ନାହିଁ । ସହସା ଜଗୁ ଭାଇର ରୂପ ଆସି ତାର ମନେ ପଡ଼ିଲା । ଜଗୁ ଭାଇ କଣ ସତେ ତାକୁ ଭୁଲିବଣି ? ଉମା ଆଖି ବନ୍ଦ କରି, ଧୂଆଁରୁ ପରିତ୍ରାଣ ପାଇବାକୁ ଝରକା ବାଟେ ମୁହଁ ଗଳାଇ ପଦାକୁ ଚାହିଁଲା ।

ପୁଣି ବାଉରିଆ ଡାକିଲା, "ଆରେ ଉମା, ମହନ୍ତ ମହାରାଜ ଡକାଇଛନ୍ତି— ।"

ଉମା ଜାଣେ, ବାଉରିଆ କେବେ ମିଛ କହେ ନାହିଁ । ମହନ୍ତ ଡକାଇଛନ୍ତି ଶୁଣି ସେ ଆଉ ଅନ୍ୟଥା କରି ପାରିଲା ନାହିଁ । ଯାହାର ଅନ୍ନ ଖାଇ ସେ ପ୍ରାଣ ଧରିଛି, ତାଙ୍କର ଆଦେଶ ସେ ଭାଙ୍ଗିବ କପରି ? ସେ ଝରକା ବାହାରୁ ମୁଣ୍ଡ ଟାଣି ଆଣୁ ଆଣୁ ହଠାତ୍ ତାର ଆଖି ଆଗରେ ଯେଉଁ ରୂପଟି ପଡ଼ିଲା, ସେ ତାକୁ ଚାହିଁ ରହିଲା ଅବାକ୍ ହୋଇ ।

ଅବିକଳ ଜଗବନ୍ଧୁ ପରି ଜଣେ କିଏ; କିନ୍ତୁ ଦେହ ଦୁର୍ବଳ, ମୁହଁଟି ଶୁଖି କଳା ପଡ଼ିଛି । ମୁଣ୍ଡର ବାବୁରି ବାଳ ସବୁଦିନ ପରି ଆଜି ମଧ୍ୟ ଫୁର୍ ଫୁର୍ ହୋଇ ଉଡ଼ୁଛି । ଟୋକା ଭିତର ଦେଇ ଚାଲି ଯାଉଛି ସେ ଗୋଟାଏ ଲକ୍ଷ୍ୟରେ, କୁଆଡ଼କୁ ମୁହଁ ଫେରାଉ ନାହିଁ । କେବଳ କାଖରେ ପକାଇଥିବା ବଳ ଟେଙ୍ଗାଟିକୁ ବେଳେ ବେଳେ ଏପାଖ ସେପାଖ କରୁଛି । ଉମା ଚିହ୍ନେଇ ଚାହିଁଲା । ସେ ଯେତିକି ଅନାଇଲା, ତାର ମନର ଧାରଣା ସେତିକି ଦୃଢ଼ତର ହେଲା । ତାର ପ୍ରାଣ ଅଧୀର ହୋଇ ପୁଲକରେ ନାଚିଉଠିଲା । ନିଶ୍ଚୟ ଜଗୁ ଭାଇ ହେବ ! ସେ ଅନ୍ୟ କିଛି ଭାବିବାକୁ ବେଳ ପାଇଲା ନାହିଁ । ବାଉରିଆକୁ ପଠାଇ ଡାକିବା ପାଇଁ ହୃଦୟର ଆବେଗ ସମ୍ଭାଳି ନ ପାରି

ସେ ଘର ଭିତରକୁ ପଦାକୁ ଆସିଲା । ବାଉଳିଆର ହାତ ଧରି ସାମାନ୍ୟ ହସିଲି ତରତର ହୋଇ କହିଲା, "ଶୁଣ ବାଉଳି, ମୋ ସଙ୍ଗେ ଭିତରକୁ ଆ ତ ଚାଲ୍ ।..."

ଉମାର ଏପରି ବ୍ୟବହାର ଦେଖି ବାଉଳିଆ ତ ତାଟଙ୍ଗା ହୋଇଗଲା; କିନ୍ତୁ କିଛି କହି ପାରିଲା ନାହିଁ । ଉତ୍ତର ଦେବା ଆଗରୁ ଉମା ତାର ହାତ ଧରି ଶେଷଘର ଭିତରକୁ ଟାଣି ନେଇଗଲା । ସେ ଯନ୍ତ୍ରଚାଳିତ ପରି ଧୂଆଁ ଭିତରେ ଶେଷଘରେ ପଶିଲା । ଉମା ତାକୁ ଝରକା ପାଖକୁ ନେଇ ବଡ଼ ଆକୁଳ ହୋଇ କହିଲା, "ଦେଖ ବାଉଳି, ସେ ଯେଉଁ ଲୋକଟି ଠେଙ୍ଗାଟିଏ କାନ୍ଧରେ ପକାଇ ଯାଉଛି, ତୋଟା ଭିତରେ... ।"

ବାଉଳିଆ ଇଆଡ଼କୁ ସିଆଡ଼କୁ ଚାହିଁ ରୁଦ୍ଧ କଣ୍ଠରେ କହିଲା, "କାହିଁ ?"

ଉମା ଅସମ୍ଭାଳ ହୋଇ ବାଉଳିଆ ଆଗକୁ ଯାଇ, ଉଦ୍ବେଗଭାବରେ ତାର କୋଳକୁ ଲାଗି ଠିଆହୋଇ, ମୁହଁ ପାଖରେ ମୁହଁ ଯୋଡ଼ି କହିଲା, "ଏଇ କିଏ ?" କିନ୍ତୁ ତାର କଳ୍ପିତ ଜଗୁ ଭାଇ ଗଛ ଉହାଡ଼ରେ କାହିଁ ଛପିଗଲାଣି । ସେ ଆକୁଳ ଦୃଷ୍ଟିରେ କ୍ଷଣକାଳ ଅପେକ୍ଷା କରି ଏଣେ ତେଣେ ଦୃଷ୍ଟି ପକାଇ ହତାଶରେ ଦୀର୍ଘଶ୍ୱାସ ଛାଡ଼ିଲା । ଦୁଇ ଆଖିରୁ ଦରଦର ହୋଇ ଲୁହ ଝରିପଡ଼ିଲା ।

ବାଉଳିଆ କିନ୍ତୁ ତାର ଜଗୁ ଭାଇକୁ ଦେଖିଲା ନାହିଁ କି ଉମା ଆଖିର ଲୁହ ଦେଖି ପାରିଲା ନାହିଁ । ଉମାର ସ୍ପର୍ଶ ପାଇ ତାର କାମନା ଚଳଚଞ୍ଚଳ ହୋଇଉଠିଲା । ହିତାହିତଜ୍ଞାନ, ଲଜ୍ଜା, ଭୟ ତାହାର ତାଡ଼ନାରେ ହତବୁଦ୍ଧି ହୋଇ ପଳାଇଲେ କାହିଁ ! ସେ ଭାବିଲା, ଏତେ ଦିନରେ ତାର ତପସ୍ୟା ସିଦ୍ଧ ହୋଇଛି । ଉମା ତାକୁ ହୃଦୟ ଦେଇ ଭଲ ପାଇଛି; ନୋହିଲେ ସେ ଏପରି ପରିହାସ କରିବାକୁ ପଦାରୁ ହାତ ଧରି ଟାଣି ଆଣନ୍ତା କାହିଁକି ? ଉମା ଚମକିପଡ଼ି ଗୁଞ୍ଜି ଯିବାକୁ ଚେଷ୍ଟା କରି ଶେଷକୁ ତାର ଛାତି ଉପରେ ଭିଡ଼ି ହୋଇଗଲା । କ୍ରୋଧରେ ଅନ୍ଧ ହୋଇ ସେ ଯେପରି କଣ କହିବାକୁ ଯାଉଛି; ପଦାରୁ ବୁଢ଼ୀ ମା ଡାକିଲା—"ଆଲୋ ଉମା, ମହନ୍ତ ଡାକୁଛନ୍ତି ଲୋ...।"

ବାଉରିଆ ଭୟରେ ଉମାକୁ ସଙ୍ଗେ ସଙ୍ଗେ ମୁକ୍ତ ଦେଲାରୁ ଉମା ବ୍ୟଗ୍ର ଭାବରେ ଉତ୍ତର ଦେଲା, "ଯାଉଚ୍ଛୁ ରାଧୀ ମା···।" କଥା କହୁ କହୁ ତାର କଣ୍ଠସ୍ୱର ଥରିଉଠିଲା । ସେ ମୁହଁରେ ଲୁଗା ଦେଇ ପଦାକୁ ଆସି କହିଲା, "ଓଃ ! କି ଧୂଆଁ । ଫୁଙ୍କି ଫୁଙ୍କି ପ୍ରାଣ ଯିବ ଲେ ରାଧୀ ମା···।"

ରାଧୀ ମା ବୁଢ଼ୀ ବ୍ୟସ୍ତ ହୋଇ କହିଲା, "କଞ୍ଚା କାଠ ପରା ··।"

ଉମା ଯେ ତାର ଆଖିରେ ଧୂଳି ଦେଇ ନିଜର ମାନ୍ ରଖି ପାରିଛି, ଏଥିପାଇଁ ମନେ ମନେ ଖୁସି ହୋଇ କହିଲା, "ହଁ, କଞ୍ଚା କାଠ । ବାଉରିଆ ତେଣେ ଫୁଙ୍କି ହୋଇ ମଲାଣି ।" ହଠାତ୍ ଏ ଥମି କହିଲା, "ଆରେ ବାଉରିଆ, ତେଣେ ଚୁଲିରେ ମୁଣ୍ଡକୁ ମୋହିଲୁ କି ରେ । ତୁ ବାହାରିକୁ ଗୁଲିଆ । ରାଧୀ ମା ଚୁଲି ଜଳାଇ ଦେବ ।"

ବାଉରିଆ ତ ଭୟରେ ଗୋଟାସାରା ଥରୁଥିଲା । କିପରି ସେ ଘର ଭିତରୁ ପଦାକୁ ଆସି ଆତ୍ମରକ୍ଷା କରିବ, କେବଳ ସେହି କଥା ଚିନ୍ତା କରୁଥାଏ । ଉମାର କଥା ଶୁଣି ସେ ମନେ ମନେ ଭାରି ଖୁସି ହୋଇ ଭଙ୍ଗା ସ୍ୱରରେ କହିଲା, "କଞ୍ଚା କାଠ । ଓଃ ରେ ଧୂଆଁ ।"

"ଗୁଲି ଆ ତୁ, ମୋ ଚୁଲି ଖରାପ କରନା...!" ଉମା କହିଲା ।

ବାଉରିଆ କମ୍ପିତ ପଦରେ ଘର ଭିତରୁ ବାହାରି ଆସି ନିଇଠା ମୁହଁରେ କଣ୍ଠ ଥରାଇ କହିଲା । "ତୁ ଯା, ରାଧୀ ମା ମୁଁ ବି ହାରିଲି...।"

ରାଧୀ ମା ସେପଘର ଭିତରକୁ ଗଲା ।

ଉମା ଆଉ କିଛି ନ କହି ଆଗେ ଆଗେ ଗୁଲିଲା । ତାର ଭାବନାର ଅନ୍ତ ଆଜି ଅନ୍ତ ନାହିଁ । ଜନ୍ମ ଭାଇ ବୋଲି ଯାହାକୁ ମନେ କରିଥିଲା, ହୁଏ ତ ସେ ଜନ୍ମ ଭାଇ ନୁହେଁ । ତାର କଥା ସର୍ବଦା ଭାବି ଭାବି ଉମାର ଆଜି ଭ୍ରମ ହୋଇଛି । ନଟପୁରର ନାମଜାଦା ମହାଜନ ଲକ୍ଷପତିର ପୁଅ, ସେ ବାହୁଁକ ଘର ଛାଡି ଏପରି ମଳିନ ବେଶ ରୁକ୍ଷ କେଶ ହୋଇ ଏତେ ଦୂରକୁ ଆସିବ ? ନା, ତାର ବୁଝିବାର ଭୁଲ ହୋଇଛି । ଆଉ, ସେ ମୁହୂର୍ତ୍ତିକର ଉତ୍ତେଜନା ପାଇଁ, ଗୋଟିଏ ଅଜାଣତ ପ୍ରମାଦ ପାଇଁ, ଜଣକର ମନରେ ନିଆଁ ଜାଳିଛି, ନିଜେ ମଧ୍ୟ ସେହି ଜଳନ୍ତା ନିଆଁର ତାଉରେ ପଡ଼ି କଲଙ୍କିତ ହୋଇଛି । ସବୁ ଦୋଷ ତାର । ସେ ବାହୁଁକ ଜଣେ ଅପରିଚିତ,

ଉଦ୍ଭ୍ରାନ୍ତ, ତରଳ ପ୍ରାଣ ଯୁବକର ହାତ ଧରି ଟାଣିଲା ? କାହିଁକି ସେ ତାର ଦେହକୁ ଦେହ ଲଗାଇ, ମୁହଁକୁ ମୁହଁ ଯୋଡ଼ି ଠିଆ ହେଲା କବିତାର ହୋଇ ? ତାକୁ ପରିହାସ କରିବାର ବା କି ଅଧିକାର ଥିଲା ତାର ? ଯେଉଁ ଲୋକଟା ଭୟରେ ଭୟରେ ପାଖରୁ ଅପସରି ରହୁଥିଲା, ଅଜି କି ସାହସରେ ସେ ଏ ନୂଆ ଅଭିନୟ କରିଲା ? ନା, ବାଉରିଆ ଦୋଷୀ ନୁହେଁ । ସେତି ତାରି ପରି ଜଣେ ଉଦ୍ଭ୍ରାନ୍ତ ଯୁବକ । ଅନୁକୂଳ ପବନ ପାଇଲେ ତାର ପ୍ରାଣ-ତରୀ ସହଜରେ ଭାସି ଯିବାର କଥା । ଦୋଷ ବାଉରିଆର ନୁହେଁ, ବରଂ ତାରି ନିଜର ।

ବାଉରିଆ ଭାବୁଛି, ସେ ନିଶ୍ଚୟ ଭାଗ୍ୟବାନ୍ । ଜମା ଯେତେବେଳେ ନିଜେ ନିଜେ ତାକୁ ନିମନ୍ତ୍ରଣ କରିଛି, ତାର ଆଉ ଭାବିବାର କି ପ୍ରୟୋଜନ ? ତାର ମନ କଥା ନିଶ୍ଚୟ ଫଳିବ, ସେ ଯାହା କହିବାକୁ ଚାହିଁ ଥିଲା ଏଥର କହିଲେ କିଛି କ୍ଷତି ନାହିଁ ।

କିଛିଦୂର ଯାଇ ସେ କହିଲା । "ଜମା, ମହଜନ୍ତି କାହିଁକି ଡକାଇଛନ୍ତି ଜାଣୁ ?"

ଜମା ଦୁଃଖ ମିଶ୍ରିତ ସ୍ୱରରେ କହିଲା, "କାହିଁକି ?"

"ତତେ ପଗୁରିବେ···ଛତର ବନ୍ଦ ହେଉଛି କି ନା । ଧାନ ଗୁଡ଼ିକ ତ ଆଉ ବେଶି ନାହିଁ । ଯାହା ଅଛି, ଅମର ଏଠାକାର ଖରଚମାନଆ ରଖି, ବାକୀତକ ଲୋକଙ୍କ ଭିତରେ ବାଣ୍ଟି ଦେଇ ଛତର ଭାଙ୍ଗିବେ ।" ସରକାର ତ ଠାଏ ଠାଏ ଅନ୍ନଛତ୍ର ଖୋଲିଲେଣି, ଆଜ କି ଖୋଲିବେ । ଲୋକଙ୍କର ଭାବନା କଣ ? ସେମାନେ ଆଇତ ହୋଇଯିବେ ଯେ···।"

"ମତେ କଣ ପଗୁରିବେ ରେ··· ?"

"ତୁ ଏଠି ରହିବୁ ନୂଆ ଫସଲ ହେବା ଯାଏ ନା ପୁଣି ମଠକୁ ଯିବୁ ।"

"ଯେଉଁଠି ରହିଲେ ତ କାମ କରି ମୁଠିଏ ଖାଇବା କଥା । କେହି ତ ବସି ଖାଇବାକୁ ଦେବ ନାହିଁ ।"

ଟିକିଏ ରହି ବାଉରିଆ କହିଲା, "ଜମା, ତୁ କଣ ପୁଣି ଯିବାକୁ ମଙ୍ଗିବୁ-ହଇ ଲେ ।"

"ତୋର ସେଥିରେ କଣ ଥାଏ ରେ ?"

ବାଉରଥା ଝବ୍ରତ ହେଲା, ସତେ କି ତାର ଆଶା-ଉତ୍ସାହ ଅନୁକୂଳ ବତାସରେ ଉଡ଼ି ଅସ୍ତ୍ର ଆସୁ ମଝି ଦରିଆରେ ସହସା ନିମଜ୍ଜିତ ହେବ । ସେ ଧୈର୍ଯ୍ୟ ଧରି କହିଲା, "ପୁଣି ପିବାକୁ ତୁ କେବେ ମଙ୍ଗିବୁ ନାହିଁ ଉମା, ମୁଁ କହୁଛି, ତୋର ଏଠି କିଛି ଅସୁବିଧା ହେବ ନାହିଁ···।"

ଉମା ନିରୁତ୍ତର ରହିଲା ।

ବହେଁ ଅସି ମହନ୍ତ ମହାରାଜାଙ୍କ ଶୋଇଲା ଘର ଆଗରେ ମିଳିଲେ । ବାଉରଥା ଘର ବାହାରେ ପିଣ୍ଡାରେ ଠିଆ ହେଲା । ଉମା ଘର ଭିତରକୁ ଗଲା । ମହନ୍ତ ଖଟ ଉପରେ ତକିଆରେ ଶୋଇ ଉପରକୁ ଚାହିଁ କଣ ଚିନ୍ତା କରୁଥିଲେ । ଉମାକୁ ଦେଖି ଟିକିଏ ବୁଲାଇ ହସ ହସ ହୋଇ ପଚାରିଲେ, "କୁଆଡ଼େ ଥିଲୁ ଏତେ ବେଳଯାଏ ମା ! ମୁଁ ତତେ କେତେବେଳୁ ଡାକୁଛି ।"

ଉମା ମୁହଁ ତଳକୁ କରି କହିଲା, "ସେବାଶ୍ରମରେ ।"

"ଓ, ତୋର ସେ ଅନାଥ ପୁଅମାନଙ୍କ ପାଇଁ ସେବାଇ କରୁଥିଲୁ । ଏ ବୁଢ଼ା ପୁଅର ଡାକବି ଶୁଣିଲୁ ନାହିଁ ତତେ ? ଆଚ୍ଛା ହେଉ, ଆଇଲୁ ମୋ ପାଖକୁ ତୁ···।"

ଉମା ଧୀର ପଦ ଶବ୍ଦରେ ଚାଲି ଖଟ ପାଖକୁ ଯାଇ ଠିଆହେଲା । ଏପରି କଅଁଳ କଥା ସେ ଆଜ କାହାରି ମୁହଁରୁ କେବେ ଶୁଣି ନ ଥିଲା । ମହନ୍ତ କହିଲେ, "ଠିଆ ହେଲୁ କାହିଁକି ମା, ବସ ମୋ ପାଖରେ । ଉମା ସଙ୍କୁଚିତ ହୋଇ ପାଖରେ ଟୋକି ତଳେ ବସିଲା । ଯାହାକୁ ସେ ନିଜର ପିତା ବୋଲି ଭାବେ, ସାକ୍ଷାତ୍ ଦେବତା ବୋଲି ଗ୍ରହଣ କରେ, ତାଙ୍କର ଅମାନ୍ୟ ହେବାକୁ ସେ ଇଚ୍ଛିଲା ନାହିଁ ।"

ମହନ୍ତ କହିଲେ, "ତୁ ତ ଜାଣୁ, ଆମର ଏ ଅନ୍ନଛତ୍ର ଅଛଠୁ ବନ୍ଦ କରାଯାଉଛି । ଲୋକେ ସିଧା ନେଇ ଆଜ ବାଦ ହୋଇ ଯେ ଯୁଆଡ଼େ ଚାଲି-ଯିବେ । ତମେମାନେ ମୋର ଅଶ୍ରିତ । ଯିବା ଆଗରୁ ତମର ଆଉ କେତେ ଦିନ ପାଇଁ ଚଳିବାର ବନ୍ଦୋବସ୍ତ କିଛି କରିଯିବି ।"

ଉମା ତୁନି ହୋଇ ବସି ଚଟଣା ଉପରେ ନଖରେ ଗାର କାଢ଼ୁଥିଲା । କେତେ କଣ ଭାବି ସେ ଗୁରୁକଣ୍ଠରେ କହିଲା, "ବାବା, ମୋତେ କଣ

ଆପଣ ଏଠି ଛାଡ଼ିଯିବାକୁ ଇଚ୍ଛା କରୁଛନ୍ତି ?" ତାର ଦୁଇ ଆଖି ଅଶ୍ରୁ-ଢ଼ୋଇଆସିଲା, "ମୋର ମା ମୋତେ ଛାଡ଼ି ସେହି ଦଳଠୁ ଚୁଆଡ଼େ ଚାଲିଗଲା...।"

"କୁଆଡ଼େ ଚାଲିଗଲା କିଛି କହିଗଲା ନାହିଁ ?"

"ନା, ତା ସଙ୍ଗରେ ସେହି ଦଳକୁ ମୋର ଆଉ ଦେଖା ହୋଇ ନାହିଁ । ଆପଣଙ୍କ ଗୋଡ ତଳେ ଆପଣଙ୍କ ଆଶ୍ରାରେ ଛାଡ଼ି ସେ ନିଶ୍ଚିନ୍ତ ହୋଇ ଚାଲିଯାଇଛି । ଆପଣ କି ମୋତେ···।"

"ସେଥିପାଇଁ ତ ତୋର କାମରେ ବାଧା ଦେଇ ମୁଁ ତତେ ଡକାଇଛି ମା ! ତୋ ଇଚ୍ଛାଟି କଣ, ମୋତେ ଖୋଲି କହିଲୁ, ଏଇଠି ରହିବୁ କି ମୋ ସଙ୍ଗରେ ପୁଣି ଯିବୁ", ମହନ୍ତ କହିଲେ ।

"ବାବା, ମୁଁ କଣ ଆପଣଙ୍କ ସେବା କରି ପାରିବ ନାହିଁ ?" ଉମା ପଚାରିଲା ।

ମହନ୍ତ ସାମାନ୍ୟ ହସି କହିଲେ, "ନିଶ୍ଚୟ ପାରିବୁ ଉମା ! ତୋର ଇଚ୍ଛା କଣ ମୁଁ ବୁଝିବାକୁ ଚାହିଁଥିଲି । ଜାଣିଛୁ କି ନା, ତୋର ଇଚ୍ଛା ବିରୁଦ୍ଧରେ ତୋ ମନରେ ଦୁଃଖ ଦେଇ କୌଣସି ବିଷୟ ମୁଁ କରନ୍ତି କିପରି ? ଅଚ୍ଛା, ତୁ ଆଜି ଯିବାକୁ ପ୍ରସ୍ତୁତ ରହ । ରାତିରୁ ଉଠି ବଳଦ ଗାଡ଼ି ଛାଡ଼ ଦେବା । ବୁଝିଲୁ ? ତୋର ବ୍ୟସ୍ତ ହେବା ଦରକାର ନାହିଁ । ଏ କେଇଟି ଦିନ ଭିତରେ ତୁ ତୋ ଗୁଣରେ ତୋର ଏହି ପିଲା ପୁଅଟିକୁ ଏକାଥରକେ ବଶ କରି ନେଇଛୁ । ସେ କି ତୋତେ ଦୂରରେ ଛାଡ଼ି ଏକୁଟିଆ ରହିପାରେ ଲୋ ବୁଢ଼ୀ !" ମହନ୍ତ ମହାରାଜ ଗୋଞ୍ଜାରେ ତାର ମୁଣ୍ଡ ଆଉଁସିଲେ । ଉମା ଲାଜରେ ଡାହାଣ ହାତରେ ମୁହଁ ଘୋଡ଼ାଇଲା ।

ବାବା କହିଲେ, "ତୁ ଏବେ ଯା ଲୋ ଉମା··। କଣ ପରା କରୁଥିଲୁ ତେଣେ······।"

ଉମା ଧୀରେ ଧୀରେ ଖଟ ଉପରୁ ତଳକୁ ଓହ୍ଲାଇ ମହନ୍ତଙ୍କ ଗୋଡ଼ର ଧୂଳି ମୁଣ୍ଡରେ ମାରି ଘର ଭିତରୁ ବାହାରି ଆସିଲା ।

ସଞ୍ଜବେଳେ ବାଉ ପଟେ ଉମାକୁ ଏକୁଟିଆ ଦେଖି ବାଜିରଥା ଆଖିର ଲୁହ ପୋଛି କହିଲା—"ସତରେ ତୁ ଚାଲିଯାଉଛୁ ଉମା ?"

ଉମା ବାଉରିଆକୁ ଦେଖି ନସ୍ତ ହୋଇ ପଛକୁ ହଟିଆସିଲା କିନ୍ତୁ ତାର ବିଷଣ୍ଣ ମୁହଁ ଦେଖି ତାର ହୃଦୟର ସବୁ କାରଣ ଉଭେଇଗଲା । ମନ-ଦୁଃଖରେ ସେ କହିଲା, "ଯହିଁ ଗଲେ ତ ପେଟକୁ ମୁଠାଏ ଖାଇବା କଥା । ଏଠି ରହୁ ମୋର ଲାଭ କଣ ?"

ବାଉରିଆ ଚମକିତ ହୋଇ ଅଟକେଇ ଅଟକେଇ କହିଲା, "ନା, ଲାଭ କିଛି ନାହିଁ ··· ।" ଟିକିଏ ରହି ପୁଣି କହିଲା, "ମୋ କଥା ଟିକେ ବୁଝନ୍ତୁ ଉମା, ମୁଁ କଣ କରିବ ? ତୁ ମହନ୍ତଙ୍କୁ ମୋ ପାଇଁ କହିଲେ ସେ ତୋ କଥା ଭାଙ୍ଗି ପାରିବେ ନାହିଁ । ମୋତେ ବି ସାଙ୍ଗରେ ନେଇଯିବେ ।" ବାଉରିଆ ଉମାର ତୋଷ ମୁହଁକୁ ଚାହିଁରହିଲା । ଏ କେଇଟା ଦିନରେ ଉମାର ରୂପ ଏକାଥରକେ ବଦଳିଗଲାଣି । ସୁସ୍ଥରେ ରହି ତାର ପୂର୍ବ ସ୍ୱାସ୍ଥ୍ୟ, ପୂର୍ବ ଚେହେରା ଫେରି ଆସିଲାଣି । ବୟସ ସଙ୍ଗେ ସଙ୍ଗେ ଯୌବନଟା ତାର ଦିନକୁ ଦିନ ଢଳ ଢଳ ହୋଇଉଠୁଛି, ମୁହଁଟି ଦର୍ପଣ ପରି ଝଲସି ଉଠୁଛି । ସୁନ୍ଦରର ଆଖି-ଓଠର ମନ-ଭୁଲାଣି ଚାହାଣିଟା ତାର ଦିନୁ ଦିନ ବଢ଼ି ତୀକ୍ଷ୍ଣ ବଢ଼ି ଉଗ୍ର ହୋଇଉଠୁଛି ।

ଉମା ଭ୍ରୂଲତା ଟେକି ପଚାରିଲା, "ତୋର କଣ ପୁରୀ ଯିବାକୁ ଇଚ୍ଛା ?"

ବାଉରିଆ ଲୁହଭରା ଆଖିରେ କହିଲା, "ନା, ତୁ ଯୁଆଡ଼େ ଯିବୁ ସେଇଠିକି ମୋର ଇଚ୍ଛା । ନାହିଁ କର ନା ଉମା, ତୋର ଗୋଡ଼ ଧରୁଛି, ନାହିଁ କର ନା... ।" ବାଉରିଆ ତଳେ ଅଣ୍ଠେଇ ପଡ଼ି ଉମାର ଦୁଇ ପାଦ ଧରି ଆକୁଳଦୃଷ୍ଟିରେ ତାକୁ ଚାହିଁ ତାର ଉତ୍ତର ମାଗିଲା । ଉମାର ମନ ତରଳିଗଲା । ସେ ଆଖିର ଲୁହ ପୋଛି କହିଲା, "ମୁଁ ପର ଗୁଡ଼ିଆ ଘର ପିଲା ବାଉରି, ତୁ ଗଉଡ଼ ଘର ପିଲା···। ତୁ କଣ ମୋତେ··· । ନା, ଅସମ୍ଭବ । ବୃଥା ଆଶା ତୋର । ନିଜକୁ ଅଉ ଜଳେଇ ପୋଡ଼େଇ ମାର ନା ରେ ବାଉରିଆ, ଗୋଟାଏ ଭ୍ରମରେ ପଡ଼ି ଅଉ ଧାଣ୍ଡି ହନା ତୁ—ଯା...।" ଏତିକି କହି ଉମା ଆଖିରେ ଲୁଗା ଦେଇ ବାଙ୍କୁଳ ପରି ଘର ଭିତରକୁ ପଶିଗଲା ।

ବାଉରିଆ ମୁଣ୍ଡରେ ହାତ ଦେଇ ମୁହଁ ପୋତି ସେଇଠି ବସି ରହିଲା ।

## —ଅଣତିରିଶ—

ଗାଁମୁଣ୍ଡ ପୁରୁଣା ମନ୍ଦର ପାଖରେ ଅନେକ କାଙ୍ଗାଳ ବସିଛନ୍ତି। ଜଗୁ ସେଇଠି ଅଟକି ଠିଆ ହେଲା । ଉଦ୍ଦେଶ୍ୟ— ଏହିମାନଙ୍କଠାରୁ ଗାଁର ସବୁ ହାଲଚାଲ ବୁଝିବ । ଦୁଃଖୀରଙ୍କିଙ୍କୁ ସାହାଯ୍ୟ କରିବାକୁ ଦରିଦ୍ର ଛଡ଼ା ଆଉ କେହି ହାତ ବଢ଼ାଇବେ ନାହିଁ । ଚାଲି ଚାଲି ସେ ଥକି ପଡ଼ିଥିଲା । ଅନେକ ଦିନ ହେବ ଖିଆପିଆ ହୋଇ ନାହିଁ । ଦୁର୍ବଳତାରୁ ଦେହ ଥରୁଛି । ତଣ୍ଟି ଶୁଖି ଅଠା ଅଠା ହେଲାଣି । ଟିକିଏ ଦମ ନ ନେଇ ଆଗକୁ ଯିବା ଅନ୍ୟାୟ । ଜଗୁ ମନ୍ଦିର ପାଖ ବରଗଛ ତଳେ ବସିଲା ।

ଗୋଟାଏ ଛଦ୍, ଗୋଟାଏ ଉଦ୍ଦେଶନାରେ, ସୁନ୍ଦର ପଟ୍ଟନାୟକଙ୍କ ଘର ଛାଡ଼ି ଆସିବାର ଅନେକ ଦିନ ହୋଇଗଲାଣି । ଗାଁ ଗାଁ ବୁଲି ବୁଲି, କାମ ଖୋଜି ଖୋଜି ନାୟୁାନ୍ତ ହେଲା । ଏପରି ସମୟରେ କାମ କରୁଛି କିଏ, କାମ ମିଳୁଛି କାହିଁ ? ତହିଁରେ ପୁଣି ବର୍ଷାଦିନ ମାଡ଼ି ଆସିଲାଣି । ବାହାରର ସବୁ କାମ ପ୍ରାୟ ବନ୍ଦ ହେଲାଣି । ଜଗୁ ପରି ପିଲା—କାମ ବିଷୟରେ ଘାସକୁ ଛୋଟ, ପାଳକୁ ଲମ୍ବ । ଖାଲି ଗାଁ ଗାଁ ବୁଲିବାହିଁ ତା ପକ୍ଷରେ ସାର ହେଲା । ସହଜରେ ମୁଠିଏ କାହିଁ ଖାଇବାକୁ ପାଇଲା ନାହିଁ ।

ସୁନ୍ଦର ବାବୁଙ୍କ ଘରେ ମୂଲ ଲାଗି ଯେତକ ପଇସା ସେ ଏତେ କଷ୍ଟରେ ସଞ୍ଚୟ କରି ରଖିଥିଲା, ସେତକ ବି ତାର କୌଣସି କାମରେ ଲାଗିଲା ନାହିଁ । ଆଗରୁ ତ ବ୍ରାହ୍ମଣମାନେ ଡିନ ବର୍ଷ ଦୁର୍ଭିକ୍ଷ ପଡ଼ିବ ବୋଲି ଲୋକରେ ପ୍ରଚାର କରିଥିଲେ । ବୁଦ୍ଧିମାନ ଲୋକେ ଆଗରୁ ସାବଧାନ ହୋଇ ଧାନଚାଉଳ ଯାହାଠି ଯାହା ଥିଲା, ସବୁ ଲୁଚାଇ ରଖିଲେ । ଧାନ ଚାଉଳ ଦୋକାନ ସବୁ ଉଠିଗଲା, ନୋହିଲେ ବନ୍ଦ ହୋଇଗଲା । ଲୋକେ ଅଣ୍ଟାରେ ଟଙ୍କା ଧରି ବାର ଗାଁ ବାର ଦୁଆର ବୁଲିଲେ ବି ପାଉନାହାନ୍ତି କିଏ ? ପେଟଭିକାରେ ଟଙ୍କାଜଉଡ ଗୋଟିବାଇଲେ ପ୍ରାଣ ରହିବ ନାହିଁ ତ । "ଅଲ୍ଲ ମୋହର ନିଜ ସୁରୁ ଉଭିବ କେତେ ଦୁ ପଗ୍ଇୁ" ଏ କଥା କିଏ ନ ଜାଣେ ? ବିଶେଷତଃ ଜଗୁ ପ୍ରବାଦଟିର ସତ୍ୟାସତ୍ୟ ସେ ଅଞ୍ଚଳରେ ପଞ୍ଚ ଉପଲବ୍ଧି କଲା ଶେଷକୁ ।

ଇଚ୍ଛା ଥିଲା, କାଳଖୋଲା କାମ କି ରାସ୍ତାଘାଟ କାମ କରିବାକୁ ଲୋକଙ୍କ ସଙ୍ଗରେ କଷ୍ଟକ କି ରମ୍ପା ଚଳାଇବ । ଖବର ପାଇଲା, ସେଠାକାର ଅବସ୍ଥା ବଡ଼ ଶୋଚନୀୟ । କେଉଁ ଏବେ ଆଜକାଲି ଲୋକ ଅଭାବ । ଯେତେ ଲୋକ ନିଯୁକ୍ତ କରିବାର କଥା, ସେମାନେ ଆଗରୁ ନିଯୁକ୍ତ କରି-ସାରିଛନ୍ତି । ନୂଆ ଲୋକଙ୍କୁ କାମ ଦିଆଯାଉ ନାହିଁ । ଯେଉଁମାନେ ନିଯୁକ୍ତ ହୋଇ ଆଗରୁ କାମ କରୁଛନ୍ତି, ସେମାନଙ୍କୁ ତ ସବୁବେଳେ ମୁଠାଏ ମିଳୁ ନାହିଁ, ଅଧିକା ଲୋକ ଯାଇ କଣ କରିବେ ? ଗଦାଏ ବାଟ ! ରାସ୍ତା-ଘାଟ କିଛି ନାହିଁ । ଅଣିଆ ଅଣିଆ ଗହୀର କେଉଁ ଗୁଳି ଗୁଳି ଏତେ ବାଟ ଯାଇ ହତାଶ ହୋଇ ଫେରିବା କି ଦରକାର ?

କିନ୍ତୁ ସେ ଆଶା ଅନେକ ଦିନରୁ ପରିତ୍ୟାଗ କରିଥିଲା । ଆହା ! ଅଣ୍ଟାରେ ପଇସା ମାତ୍ର ଗାଁ ଗାଁ ବୁଲି ଖାଇବାକୁ ମୁଠାଏ ପାଇଲା ନାହିଁ । ପିଣ୍ଡରେ ପ୍ରାଣ, ଦେହରେ ଶକ୍ତି ଥାଉଁ ଥାଉଁ ଇନ୍ଦ୍ରିୟମାନେ ଅଚଳ ନ ହେଉଣୁ ସେ ତ ଭିକ୍ଷା କରିବ ନାହିଁ, ଚୋରି କରିବ ନାହିଁ ବୋଲି ପ୍ରତିଜ୍ଞା କରିଥିଲା, ଏବେ କରେ କଣ ?

ଗୋଟିଏ ଗାଁରେ ବାଧ୍ୟ ହୋଇ ତାଙ୍କୁ ଭିକ୍ଷା କରି ଥରେ ମୁଠିଏ ଖାଇବାକୁ ହେଲା । କାହିଁ ଗୋଡ଼ କଣା ନାହିଁ । ହେଉ, ଅଛି କଣ ? ମରଦ ପିଲା । ଖାଇପିଇ ମୁହଁ ହାତ ପୋଛିଲେ ସବୁ ସଫା । କିଏ ଦେଖୁଛି, କିଏ ଜାଣୁଛି ? ଥରକରୁ ଦି ଥର ହେଲା । ଖାଇବାର ଲୋଭ ପାଇବାର ଲୋଭ ତ ସହଜ ନୁହେଁ । ତା ପରେ ମାଗି ଖାଇବା ହେଲା ତାର ଅଭ୍ୟାସ, ତାର ପେଷା । ମାଗିଖାଇ ଯଦି ପେଟ ପୂରୁଥାନ୍ତା, ଦେଶର ଅଧେ ଲୋକ ମଶା ମାଛି ପରି ଏ ଦୁର୍ଭିକ୍ଷରେ ମରିଥାନ୍ତେ କାହିଁକି ? କିନ୍ତୁ ଆଜି ଅନ୍ନଛନ୍ନ ଖୋଜି ବୁଲୁଥାନ୍ତା କାହିଁକି ?

ଆଜି କିନ୍ତୁ ଭାବୁଛି, ସୁନ୍ଦର ବାବୁଙ୍କ ଘର ଛାଡ଼ିବା ତା ପକ୍ଷରେ ମୋଟେ ଉଚିତ ହୋଇ ନାହିଁ । ଭାତଥାଳି ପାଖରୁ ଥରେ ଉଠି ଆସିଲେ ଆଉ ସେ ଭାତ ପାଇବାର ଆଶା ନ ଥାଏ । ଏବେ ଉପାୟ କଣ ?

କିଏ ଜଣେ ଟଳି ଟଳି ଆସି ତାର ଆଗରେ ଠିଆ ହେଲା—ହାଡ଼ମୟ ଦେହ । ଫୁଙ୍କି ଦେଲେ ଟଳି ପଡ଼ିବ । ଲୁଗା ପଟାକନ୍ଥିରେ ଅଣ୍ଟାରେ ଖଣ୍ଡେ

ଗୃହ ଅଞ୍ଚଳ ଚୌଡ଼ାର ଛିଣ୍ଡା ବନା ଗୁଡ଼ା ହୋଇଛି ଖାଲି ପଡ଼ିଅଛି ପାଇଁ, ନୋହିଲେ ସେ ପୂର୍ଣ୍ଣ ଲଙ୍ଗଳା । ତା ପଛରେ ଦୁଇଟି ପିଲା, ଆଠ ଦଶ ବର୍ଷର ହେବେ ଅଣ୍ଡ ଗୋଟିଏ ଗଛ ତଳୁ ଆସି ଠିଆହେଲେ । ଦେହଯାକ ଲଙ୍ଗଳା । ଦେହଯାକ ଦୁର୍ବଳ ।

ଜଗୁ ମୁଣ୍ଡ ଟେକି ଚାହିଁଲେ । ପରର ଦୁଃଖ ଦେଖି ସହାନୁଭୂତି ଦେଖାଇବାର ବେଳ ବିତିଗଲାଣି । ଯିଏ ଯାହା କରୁଛି, ଯିଏ ଯାହା ପଚାରୁଛି, ସବୁ ନିଜର ସ୍ୱାର୍ଥ ପାଇଁ । ଜଗୁ କଅଁଳେଇ ପଚାରିଲେ, "ତମ ଘର କେଉଁଠି ଭାଇ...?"

ଲୋକଟି ଧୀରେ ଧୀରେ ତାର ଦୁର୍ବଳ ହାତଟି ଥରାଇ ଥରାଇ ଉପରକୁ ଟେକି ଗୋଟିଏ ଦିଗକୁ ଦେଖାଇ ଅସ୍ପଷ୍ଟ ଭାଷାରେ କହିଲା, "ଅକାଳ ମୁଲକରେ ବାବା—।"

"ସେଠି କଣ ଖାଇବାକୁ କିଛି ମିଳୁ ନାହିଁ ?"

ମୁଣ୍ଡ ହଲାଇ ବୁଢ଼ା ନାହିଁ କରି କହିଲା, "ପିଇବାକୁ ତ ଟୋପାଏ ପାଣି ନାହିଁ ...।"

ଜଗୁ କହିଲେ, "ତମର ରକ୍ତଶୋଷା ସରକାରମାନେ କଣ କରୁଛନ୍ତି ?"

ଲୋକଟି କହିଲା, "ଶୋଇଛନ୍ତି ବାବା, ଆରାମରେ ନିଶ୍ଚିନ୍ତରେ । ତାଙ୍କୁ ତ ଆଉ ଭୋକ କରୁ ନାହିଁ ।"

"ମଶାଣିର ଶବସିକା ଭିତରେ କାଦ ହେଉଛି ତାଙ୍କୁ ? ନା, ଉପରେ ଛଞ୍ଚାଣ ଚେର୍ଲି କରି ଆଖି ବୁଜି ପଡ଼ିଛନ୍ତି ସବୁ !"

"ହୋଇଥିବ ବାପ !"

"ମଶାଣି ଭିତରେ ତାଙ୍କ ଚର ଅନୁଚରଙ୍କ ଚଲ ବୁଲିବାର ବେଳ ପଡ଼ିଛି ! ବେଶ୍ ଦ ପଇସା...!"

"କାହିଁକି ? ଉଣ୍ଡାର ଗୃହଜଳ ବିକି ଧନରେ ଆମ ଅଞ୍ଚଳ ମୁଲକର ଖଜଣାଖାନା ପୂରିଗଲାଣି । ନୋହିଲେ ଆମ ଦେଶ ଛାଡ଼ି ବିଦେଶର ପ୍ରେତ ଦଳ ବଢ଼ାଇବାକୁ ପିଲାଛୁଆ ଘେନି ଆସନ୍ତୁ କାହିଁକି ? ଏଠି ବାବା ସରକାର ଛନ କେଉଁଠି ଜାଣ ?"

ଜଗୁ କହିଲେ, "ଆଠ ପାଞ୍ଚ କୋଶ ହେବ । ଗୋପରେ...।"

ଇଚ୍ଛା ଥିଲା, ନାଲଖୋଳା କାମ କି ରାସ୍ତାଘାଟ କାମ କରିବାକୁ ଲୋକଙ୍କ ସଙ୍ଗରେ କଣ୍ଟକ କି ରମ୍ପା ଚଳାଇବ । ଖବର ପାଇଲା, ସେଠାକାର ଅବସ୍ଥା ବଡ଼ ଶୋଚନୀୟ । କେଉଁ ଏବେ ଆଜିକାଲି ଲୋକ ଅଭାବ । ଯେତେ ଲୋକ ନିଯୁକ୍ତ କରିବାର କଥା, ସେମାନେ ଅଗରୁ ନିଯୁକ୍ତ କରାସାରିଛନ୍ତି । ନୂଆ ଲୋକଙ୍କୁ କାମ ଦିଆଯାଉ ନାହିଁ । ଯେଉଁମାନେ ନିଯୁକ୍ତ ହୋଇ ଅଗରୁ କାମ କରୁଛନ୍ତି, ସେମାନଙ୍କୁ ତ ସବୁବେଳେ ମୂଠାଏ ମିଳୁ ନାହିଁ, ଅଧିକା ଲୋକ ଯାଇ କଣ କରିବେ ? ଗଦାଏ ବାଟ ! ରାସ୍ତାଘାଟ କିଛି ନାହିଁ । ଅଣିଆ ଅଫିଆ ଗହୀର ଭେଇଁ ଗୁଳି ଗୁଳି ଏତେ ବାଟ ଯାଇ ହତାଶ ହୋଇ ଫେରିବା କି ଦରକାର ?

ଜଗୁ ସେ ଆଶା ଅନେକ ଦିନରୁ ପରିତ୍ୟାଗ କରିଥିଲା । ଆହା ! ଅଣ୍ଟାରେ ପଇସା ମାତ୍ର ଗାଁ ଗାଁ ବୁଲି ଖାଇବାକୁ ମୂଠାଏ ପାଇଲା ନାହିଁ ! ପିଣ୍ଡରେ ପ୍ରାଣ, ଦେହରେ ଶକ୍ତି ଥାଉଁ ଥାଉଁ ଇନ୍ଦ୍ରିୟମାନେ ଅଚଳ ନ ହେଉଣୁ ସେ ତ ଭିକ୍ଷା କରିବ ନାହିଁ, ଚୋରି କରିବ ନାହିଁ ବୋଲି ପ୍ରତିଜ୍ଞା କରିଥିଲା, ଏବେ କରେ କଣ ?

ଗୋଟିଏ ଗାଁରେ ବାଧ୍ୟ ହୋଇ ତାଙ୍କୁ ଭିକ୍ଷା କରି ଥରେ ମୁଠିଏ ଖାଇବାକୁ ହେଲା । ଲାଜ ଗୋଡ଼ ଜଣା ନାହିଁ । ହେଉ, ଛାଡ଼ କଣ ? ମରଦ ପିଲା । ଖାଇପିଇ ମୁହଁ ହାତ ପୋଛିଲେ ସବୁ ସଫା । କିଏ ଦେଖୁଛି, କିଏ ଜାଣୁଛି ? ଥରକରୁ ଦି ଥର ହେଲା । ଖାଇବାର ଲୋଭ ପାଇବାର ଲୋଭ ତ ସହଜ ନୁହେଁ । ତା ପରେ ମାଗି ଖାଇବା ହେଲା ତାର ଅଭ୍ୟାସ, ତାର ପେଷା । ମାଗିଖାଇ ଯଦି ପେଟ ପୂରୁଥାନ୍ତା, ଦେଶର ଅଧେ ଲୋକ ମଣା ମାଛି ପରି ଏ ଦୁର୍ଭିକ୍ଷରେ ମରିଥାନ୍ତେ କାହିଁକି ? ଜଗୁ ଆଜି ଅନ୍ନଛଏ ଖୋଜି ବୁଲୁଥାନ୍ତା କାହିଁକି ?

ଆଜି ଜଗୁ ଭାବୁଛି, ସୁନ୍ଦର ବାବୁଙ୍କ ଘର ଛାଡ଼ିବା ତା ପକ୍ଷରେ ମୋଟେ ଉଚିତ ହୋଇ ନାହିଁ । ଭାତଥାଳି ପାଖରୁ ଥରେ ଉଠି ଆସିଲେ ଆଉ ସେ ଭାତ ପାଇବାର ଆଶା ନ ଥାଏ । ଏବେ ଉପାୟ କଣ ?

କିଏ ଜଣେ ଠେଲି ଠେଲି ଆସି ତାର ଆଗରେ ଠିଆହେଲା—ହାଡ଼ମୟ ଦେହ । ଫୁଙ୍କି ଦେଲେ ଠେଲି ପଡ଼ିବ । ଲୁଗା ପଟାକନ୍ଥିରେ ଅଣ୍ଟାରେ ଖଣ୍ଡେ

ଗୃହ ଅଙ୍ଗନ ଚୌହଦିର ଛଣ୍ଡା ଢନା ଗୁଡ଼ା ହୋଇଛି ଖାଲି ପଡ଼ିଅଛି ପାଇଁ, ନୋହିଲେ ସେ ପୂର୍ଣ୍ଣ ଲଙ୍ଗଳା । ତା ପଛରେ ଦୁଇଟି ପିଲା, ଅଠ ଦଶ ବର୍ଷର ହେବେ ଅଜି ଗୋଟିଏ ଗଛ ତଳ୍ ଆସି ଠିଆହେଲେ । ବଡ଼ହିଁଟାକ ଲଙ୍ଗଳା । ସାନହିଁଟାକ ଦୁର୍ବଳ ।

ଜଗୁ ମୁଣ୍ଡ ଟେକି ଚାହିଁଲା । ପରର ଦୁଃଖ ଦେଖି ସହାନୁଭୂତି ଦେଖାଇବାର ବେଳ ଗଡ଼ିଗଲାଣି । ଯିଏ ଯାହା କରୁଛି, ଯିଏ ଯାହା ପଚାରୁଛି ବୁଝୁଛି, ସବୁ ନିଜର ସ୍ୱାର୍ଥ ପାଇଁ । ଜଗୁ କଅଁଳେଇ ପଚାରିଲା, "ତମ ଘର କେଉଁଠି ଭାଇ...?"

ଲୋକଟି ଧୀରେ ଧୀରେ ତାର ଦୁର୍ବଳ ହାତଟି ଥରାଇ ଥରାଇ ଉପରକୁ ଟେକି ଗୋଟିଏ ଦିଗକୁ ଦେଖାଇ ଅସ୍ପଷ୍ଟ ଭାଷାରେ କହିଲା, "ଅନାଗ୍ରି ମୁଲକରେ ବାବା—।"

"ସେଠି କଣ ଖାଇବାକୁ କିଛି ମିଳୁ ନାହିଁ ?"

ମୁଣ୍ଡ ହଲାଇ ବୁଢ଼ା ନାହିଁ କରି କହିଲା, "ପିଇବାକୁ ତ ଟୋପାଏ ପାଣି ନାହିଁ ...।"

ଜଗୁ କହିଲା, "ତମର ରକ୍ତଶୋଷା ସଇତାନମାନେ କଣ କରୁଛନ୍ତି ?"

ଲୋକଟି କହିଲା, "ଶୋଇଛନ୍ତି ବାବା, ଆରାମରେ ନିଶ୍ଚିନ୍ତରେ । ତାଙ୍କୁ ତ ଅଜି ଭୋକ କରୁ ନାହିଁ !"

"ମଶାଣିର ବଣ୍ଟିଭିକା ଭିତରେ ନିଦ ହେଉଛି ତାଙ୍କୁ ? ନା, ଉପୁରେ ଛଟାଗାଳ ଚେଇଁ କରି ଅଙ୍ଗ ବୁଝି ପଡ଼ିଛନ୍ତି ପରା !"

"ହୋଇଥିବ ବାପ !"

"ମଶାଣି ଭିତରେ ତାଙ୍କ ଚର ଅନୁଚରଙ୍କୁ ତଥ ବୁଝିବାର ବେଳ ପଡ଼ୁଛି ! ବେଶ୍ ଦି ପଇସା...!"

"କାହିଁକି ? ଭଣ୍ଡାର ଗୃହର ବନ୍ଦି ଧନରେ ଆମ ଅନାଗ୍ରି ମୁଲକର ଖଜଣାଖାନା ପୂରିଗଲାଣି । ନୋହିଲେ ଆମ ଦେଶ ଛାଡ଼ି ବିଦେଶର ପ୍ରେତ ଦଳ ବଢ଼ାଇବାକୁ ପିଲାଛୁଆ ସେଠି ଆସନ୍ତୁ କାହିଁକି ? ଏଠି ବାବା ସରକାର ଛଡ଼ କେଉଁଠି ଜାଣ ?"

ଜଗୁ କହିଲା, "ଆଠ ପାଞ୍ଚ କୋଶ ହେବ । ଗୋପରେ...।"

ବୁଢ଼ା ଭ୍ରୂଲତା ଟେକି ବସ୍ମିତ ହୋଇ କହିଲା, "ପାଞ୍ଚ କୋଶ ! ଓଃ, ଆଜି ଚାଲି ହେବ ନାହିଁ ! ନା...ଏଇ ଗାଁରେ ମହନ୍ତ ଯେଉଁ ଛତର ଖୋଲିଥିଲେ, ଧାନ ଚାଉଳ ସରିଲାଣି ବୋଲି ଅଢେଇ ତାକୁ ବନ୍ଦ କରି ଦେଇଛନ୍ତି । ଲୋକେ ସବୁ ଗୋପ ଯିବାକୁ ବସିଛନ୍ତି ।..."

ଜଗୁ ମନେ ମନେ ଅଶ୍ରୁାଧିକ ହୋଇ କହିଲା, "ଏଠି ତମର କିଛି ଅସୁବିଧା ହୋଇ ନ ଥିବ ତ !"

"କାହିଁକି ବାପା, ସେମାନେ ତ ଆମକୁ ଭାତ ଦେଲେ ନାହିଁ । ତାଙ୍କ ନିଜ ଇଲାକାର ଲୋକଙ୍କୁ ଦେଉଛନ୍ତି । ଆମେ ଅଣଠାପନ ଗୁଡି ଗୁଡି ରହୁଛୁ । ଆମ ସାଙ୍ଗରେ ଭାଗ ନେବାକୁ ଗାଁରେ ପଲେ କୁକୁର ଅଛନ୍ତି ପରା... ଅମ ଭଗାରି... !"

ଜଗୁ ଅକୂଳ ଚାହାଣିରେ ତାର ମୁହଁକୁ ଚାହିଁଲା । ବଢ଼ଲା ପରି ମୁଣ୍ଡ ଭିତରେ ତାର କେତେ ଚିନ୍ତା ଖେଳିଗଲା । ସେ କହିଲା, "ଏଥର ଆଉ କିଛି କଷ୍ଟ ହେବ ନାହିଁ ତମର । ଗୋପ ଯାଏ ଯାଇ ପାରିଲେ ହେଲା ।"

ନିଳ୍ପ ରହି ଜଗୁ ପଚାରିଲା, "ଛତରକୁ ବାଟ କଏ—?"

"ଏଇ କଣ" କହି ବୁଢ଼ା ବେକ ନୁଆଁଇ ଭ୍ରୂଲତା ଟେକି ହୋଲା ନଚାଇ ଆଖିରେ ବାଟ ଦେଖାଇଦେଲା । ଜଗୁ ଆଉ କିଛି ପଚାରିଲା ନାହିଁ । ବୁଢ଼ା ତା ନିଜ ଜାଗାକୁ ଫେରିଗଲା ।

ସେହି ଗଛ ଛାଇରେ ଜଗୁ ଟିକିଏ ଶୋଇପଡ଼ିଥିଲା । ଉଠିଲା ବେଳକୁ ବେଳ ଗଡ଼ିଲାଣି । ଦୂରରୁ ଛତର ଆଡ଼ୁ ଲୋକଙ୍କର କୋଳାହଳ ଶୁଭୁଛି । ସେ ଉଠି ବସିଲା । ମନ୍ଦିର ପାଖରେ ବସିଥିବା କାଙ୍ଗାଳଗୁଡ଼ିକ କେଉଁଆଡ଼େ ଚାଲି-ଗଲେଣି । ଚାରିଆଡ଼କୁ ଆଖି ପକାଇଲା, କେହି କୁଆଡ଼େ ନାହିଁ । ଜଗୁ ଉଠି ଠିଆ ହେଲା । ଆଜି ଯେ କୌଣସିମତେ ମୁଠିଏ ଖାଇବାକୁ ଯୋଗାଡ଼ ନ କଲେ, କାଲି ସକାଳୁ ଗୋପ ଯାଇ ହେବ ନାହିଁ ।

ସେ ଛତର ଉଦ୍ଦେଶ୍ୟରେ ଯିବାକୁ ବସିଲା । ମଲା, ଗାମୁଛାଟା କଏ ନେଲା ? ସେ ଏପାଖ ସେପାଖ ଚାହିଁଲା । ନା, ଆଉ ମିଳିବ ନାହିଁ । ଶୋଇଲା ବେଳେ ସେ ଗାମୁଛାଟି ଦେହରେ ପକାଇ ଶୋଇଥିଲା । ନିଦ ଅବସ୍ଥାରେ ବୋଧହୁଏ କେହି କାଙ୍ଗାଳ ସେ ଖଣ୍ଡି ଉଠାଇ ନେଇଛି । ତାର ମନରେ

ଦୁଃଖ ହେଲା । ପିଣ୍ଡର ଲୁଗାଟି ଛଡ଼ା ବର୍ତ୍ତମାନ ଅନ୍ୟ ତାର କିଛି ସମ୍ବଳ ନାହିଁ । ଚଳିବ କିପରି ?

ଛତରକୁ ଗଲା ।

ମଠ ଆଗରେ ଅନେକ ଲୋକ ଜମା ହୋଇ କୋଳାହଳ କରୁଛନ୍ତି । ମହନ୍ତଙ୍କ କର୍ମଚାରୀମାନେ ଜଣ ଜଣ କରି ଗୁଡ଼ଳ ବାଣ୍ଟି ଟଙ୍କା ଫେରସ୍ତ ନେଉଛନ୍ତି । ଗୁଡ଼ଳ ପାଇ ମଧ୍ୟ କେତେ କେତେ ପାଇବାକୁ ଆପତ୍ତି ଅଭିଯୋଗ କରି ଚିତ୍କାର କରୁଛନ୍ତି; କିନ୍ତୁ ତାଙ୍କର କଥା କେହି ଶୁଣୁ ନାହିଁ । ଜଗୁ ଏପରି ଅବସ୍ଥା ଦେଖି ମଧ୍ୟ ଥରେ ପାଖକୁ ଯାଇ ଗୁଡ଼ଳ ମୁଠାକ ପାଇଁ କାକୀ ପାତିଲା । ଜଣେ କର୍ମଚାରୀ ଟଙ୍କା ଫେରସ୍ତ ଗୁହାଁରୁ ସେ ମୁଣ୍ଡ ହଲାଇ ଟଙ୍କା ତାର ନାହିଁ ବୋଲି ଜଣାଇଦେଲା ।

ବଣ୍ଟନକାରୀ ମୁଣ୍ଡ ହଲାଇ କହିଲା, "ଟଙ୍କା ଫେରାଇ ନ ଦେଲେ ସିଧା ମିଳିବ ନାହିଁ···।"

ଜଗୁ ଏକଥା ଆଗରୁ ଜାଣିଥିଲା; ତଥାପି ନାସ୍ତି ବଚନ ଶୁଣି ସତେ କି ତା ହୃଦୟ ଭାଙ୍ଗିପଡ଼ିଲା । ଇଚ୍ଛା ହେଲା, ତାର ଦେହର ସବୁ ଶକ୍ତି ପ୍ରୟୋଗ କରି ବଣ୍ଟନକାରୀର ତଣ୍ଟି ଚିପି ମାରିଦେବ । ତା ପରେ ଯେତେ ଇଚ୍ଛା ଗୁଡ଼ଳ ନେଇ ପଳାଇଯିବ । କିନ୍ତୁ ତାର ବିଦ୍ରୋହୀ ଭାବନାରେ ବାଧା ଦେଲା ତାର ବିବେକ । ସେ ଡଳୁ କାକୀ ଉଠାଇ ମନଦୁଃଖରେ କୋଳାହଳକାରୀ ଲୋକଙ୍କ ଠେଲୁ ଆସି ଭୁନ ହୋଇ ଠିଆହେଲା ।

ପିଣ୍ଡା ଉପରେ ମହନ୍ତ ମହାରାଜ ବସିଛନ୍ତି ହୋଇଛନ୍ତି । ଲୋକଙ୍କର ବିକଳ କୋଳାହଳ ଶୁଣି ସତେ କି ଅଜ ସେ ମୂକ ବଧିର ପାଲଟି ଯାଇଛନ୍ତି । ଜଗୁ କରୁଣ ନୟନରେ ତାଙ୍କର ଭାବଗମ୍ଭୀର ମୂର୍ତ୍ତିକୁ ଗୁହିଁ ରହି ଚିନ୍ତା କଲା, ଏତେ ଲୋକଙ୍କୁ ମୃତ୍ୟୁମୁଖରୁ ଯେ ଉଦ୍ଧାର କରିଛନ୍ତି ସେ ଧନ୍ୟ । ଜଣେ ଅପରିଚିତକୁ ଅବହେଳା କଲେ ତାଙ୍କର ଦେବତ୍ୱ ହାନି ହେବ ନାହିଁ । ସେ ଫେରିବାକୁ ମନସ୍ଥ କଲା । ଦେଖାଯାଉ, ଲୋକ ଭିଡ଼ କମିଲେ ଯଦି ଅନ୍ୟ କୌଣସି ଉପାୟରେ କିଛି ଖାଦ୍ୟ ଲବ୍ଧ ହୋଇପାରେ । ସେ ତାର ଅଣ୍ଟାରେ ହାତ ମାରିଲା । ପଇସାଟିକ ପୂର୍ବ ପରି ଖୋସା ହୋଇଛି । ମୁହଁ ଟେକି ପୁଣି ମହନ୍ତଙ୍କ ଆଡ଼କୁ ଗୁହିଁଲା । ଦେଖିଲା,

ମହନ୍ତଙ୍କ ଅତି ନିକଟରେ ଜଣେ ବାଳିକା, ଦେବୀ ପ୍ରତିମା ପରି ରୂପ-ଟିଏ ହୋଇ ଗମ୍ଭୀର ଭାବରେ ବାଙ୍ଗାଳମାନଙ୍କୁ ଚାହିଁ ରହିଛି । ମୁଖରେ କଥା ନାହିଁ । ବେଳେ ବେଳେ କେବଳ ତାର ନାକପୁଡ଼ା ଓ ଓଠ ଦୁଇଟି ଥରି ଉଠୁଛି ! ଆଖି ଛଳ ଛଳ ହେଉଛି ।

ସେ ସବୁ କଥା ଭୁଲି, କ୍ଷଣକ ପାଇଁ ସବୁ ଚିନ୍ତା ମନରୁ ନିର୍ବାସିତ କରି, ଏକଚକ୍ଷୁରେ ସେହି ସୁନାଯୌବନାକୁ ଅନାଇଁ ରହିଲା ।

କେତେବେଳକେ ମହନ୍ତ ମୁହଁ ଖୋଲି ତାକୁ ଚାହିଁ କଣ କହିଲେ । ସେ ମଧ୍ୟ ତାର ଚାରୁ ରକ୍ତ ଅଧର ଥରାଇ କଣ ଉତ୍ତର ଦେଇ ଧୀରେ ଧୀରେ ସେଠାରୁ ଚାଲିଗଲା । ଜଗୁର ମୋହ ଭାଙ୍ଗିଲା । ସେ ଆଖି ଫେରାଇ ଦୀର୍ଘଶ୍ୱାସ ଛାଡ଼ି ମନକୁ ମନ ପଚାରିଲା, "କିଏ ? ଜମୀ ?" ତାର ଦୁଇ ଆଖି ଲୁହରେ ଭରିଗଲା । ଜମୀ ଏଠି ସୁଖରେ ଅଛି । ହା ପୋଡ଼ାକପାଳୀ ! ସେ ଭାଗ୍ୟ ତାର କାହିଁ ? ନା, ସେ ଜମୀ ନୁହେଁ, ଅନ୍ୟ କେହି ।

ହାତରେ ଆଖିର ଲୁହ ପୋଛି ଜଗୁ ସେଠାରୁ ଚାଲିଆସିଲା ।

ସଞ୍ଜବେଳେ ଖମାରଘରର ପଛପଟେ ଗୋଟାଏ ବେତ ବୁଦା ପଛରେ ଜଗୁ ସେପରି କାହାର ପ୍ରତୀକ୍ଷାରେ ବସିଛି । ବେଳେ ବେଳେ ଖମାର ଘର ଆଡ଼େ ଚାହୁଁଛି । ପୁଣି କଣ ମନରେ ଭାବି କେଜାଣି ଆଖି ଫେରାଇ ଲୋକଚକ୍ଷୁର ଅନ୍ତରାଳକୁ, ବୁଦା ପଛକୁ, ଘୁଞ୍ଚିଯାଇ ଲୀନ ହୋଇ ବସୁଛି । ଭାବୁଛି, କେହି ଯଦି ଚାକରବାକର ଆସେ, ତାକୁ ସେ ଅର୍ଥଲୋଭ ଦେଖାଇ ମୁଠାଏ ଭାତ ମାଗିବ । ଯଦି ସୁବିଧା ହୁଏ, ପଇସା ଦେଇ କିଛି ଖାଜଲ କିଣିବାର ଚେଷ୍ଟା କରିବ ।

ପରିଚିତ କଣ୍ଠସ୍ୱର ଶୁଣି ସେ ସହସା ଚମକି ଚାହିଁଲା । ନିକଟରେ, ଖମାରଘରର ଠିକ୍ ପଛପଟେ ଜମା, ନା, ସେହି ସ୍ୱର୍ଣ୍ଣପ୍ରଭ ଦେବୀପ୍ରତିମାଟି ଟିଏ ହୋଇ ଆଖିର ଲୁହ ପୋଛୁଛି । ପଦତଳେ ଜଣେ ଯୁବକ ଅଣ୍ଟୁ ମାଡ଼ି ବସି ତାର ପାଦ ଧରି କହୁଛି, "...ନାହିଁ କର ନା ଜମୀ... !"

ସେ ଆଉ ଧୈର୍ଯ୍ୟ ଧରି ବସି ପାରିଲା ନାହିଁ । ଜମୀ, ଜମା ! ତାର ସ୍ନେହର ଧାନଭଜଣୀ ଜମା ! ଏଥିରେ ଆଉ ସନ୍ଦେହ କଣ ? ସେହି ରୂପ, ସେହି ମୁହଁ, ସେହି ଢଙ୍ଗ ! କେତେଟା ଦିନର ଅଦେଖାରେ ସେ କଣ ଆଉ

ଭୁଲିଯାନ୍ତା ? ପରିବର୍ତ୍ତନ ତ ଆସିବାର କଥା । ସୁଖରେ ରହିଲେ ସଭିଙ୍କର ପରିବର୍ତ୍ତନ ଅସିବ ।

କିନ୍ତୁ ସେ ଯୁବକଟି କିଏ ? ସେ କାହିଁକି... ? ନା, ଜମା ନିକଟରେ ତାର ଅଜ ସଙ୍କୋଚ କଣ ? ଜମା ତାକୁ ଭଲ କରି ଜାଣେ । ଜମା ତାକୁ ଭଲ ପାଏ । ଭଲ ପାଏ ଜମା ? ତେବେ, ଏ ଯୁବକ... ! ଛି, ସେ କାଳେ ଯୋ ବାଟର ଭିକାରି, ଗଛତଳର କାଙ୍ଗାଳ ! କେଉଁ ଗୁଣ, କେଉଁ ସାହସ, କେଉଁ ଭରସାରେ ଜଗୁ ତାର ପ୍ରତିଦ୍ୱନ୍ଦୀ ହେବାକୁ ସମକଛି ! ଆରେ, ପାଗଳ ପରି ସେ କଣ ଭାବୁଛି ଏତେ ! ଜମା ତାର ଭଉଣୀ ଯେ । ସେ ଯାହା କରୁ, ଯାହାକୁ ଭଲ ପାଉ, ସେଥିରୁ ତାକୁ କଣ ମିଳିବ ? ସୁଖରେ ଥାଉ ସେ, ଏତିକି ମାତ୍ର ତାର ମନର କାମନା, ଅନ୍ତରର ଇଚ୍ଛା । ଆହା, ବାପ ମା-ଛେଉଣ୍ଡ ପିଲାଟି କେତେ କଷ୍ଟ ପାଇଛି ପିଲାଦିନୁ ! ଜଗୁ ଅଜ ଭିକାରି । ସେ ଜମାର ଆଗରେ ହାତ ପାତି ଭିକ୍ଷା ନ ଗୃହଁ, ପରକୁ ଖୋସାମଦ କରିବ କାହିଁକି ? ଏଇ କାଙ୍ଗାଳଟା ଯେ ତାର ଜଗୁ ଭାଇ, ଏତିକି ଜାଣି ପାରିଲେ ଜମା ନିଶ୍ଚୟ ତାକୁ ସହାନୁଭୂତି ଦେଖାଇବ ।

ଜଗୁ ବୁଦା ଉହାଡ଼ରୁ ବାହାରି ଅସିଲା ବଡ଼ ଉତ୍ତେଜିତ ହୋଇ ! ଆଖି କୋଣରେ ତାର ଲୁହ ବୁନ୍ଦା ଲାଗିରହିଛି । କିନ୍ତୁ ଅହା, ଏ କଣ ! ଜମା ଯେପରି ଅତି କରୁଣ କଣ୍ଠରେ କହୁଛି, "...ନିଜକୁ ଆଉ ଜାଳେଇ ପୋଡ଼େଇ ମାର ନା ରେ ବାଉରିଆ, ଗୋଟାଏ ଭ୍ରମରେ ପଡ଼ି... !"

ଜଗୁ ଗୃହିଁ ରହିଲା ।

ବଉଦର ଅନ୍ତରାଳରେ ପୁନେଇଁ ଜହ୍ନ ଲୁଚିଗଲା ପରି ବାଳିକା କ୍ଷିପ୍ରଗତିରେ ଘର ଭିତରକୁ ପଶିଗଲା । ଯୁବକ ବାଉରିଆ ଲୁହଭରା ଆଖିରେ ସେହିଠାରେ ପୂର୍ବ ପରି ବସି ରହିଥାଏ ।

ଜଗୁର ବ ଗୋଡ଼ ଅଉ ଚଳିଲା ନାହିଁ । ସେ ବାଉରିଆକୁ ଗୃହିଁ ଭାବିବାକୁ ଲାଗିଲା । ଅନ୍ତର ଭିତରେ କିଏ ଯେପରି ଉପହସିତ ହୋଇ ତାକୁ କହିଲା, "ଜମା ତୋତେ ଭୁଲି ନାହିଁ ରେ ଜଗୁ ! ଜମା ତୋତେ ଭୁଲି ପାରେ ନା !"

ଜଗୁ ବାଉରିଆର ନିକଟକୁ ଆସିଲା ।

ବାଜରିଆ ଆଗରେ ଅପରିଚିତ ଲୋକକୁ ଦେଖି ସନ୍ତୁ ହୋଇ ଉଠି ଠିଆହେଲା । ଆହା ! ଲୋକଟା ଯେ ତାର ସବୁ ଲାଜ ଦେଖିଛି । କଣ ମନେ କରିଥିବ ସେ ! କେଜାଣି ବା ସମସ୍ତଙ୍କ ଆଗରେ କଥାଟା ରାଷ୍ଟ୍ର କରିଦେବ । ତାର ଦୁର୍ବଳତା ଜାଣି ଲୋକେ ତାକୁ ଘୃଣା କରିବେ, ପରିହାସ କରିବେ । ମହାନ୍ତଙ୍କ କାନରେ ପଡିଲେ ହୁଏ ତ ତାର ଦାନାପାଣି ଉପରେ ବାଧା ଆସିବ ।

ବାଜରିଆ ଲାଜରେ ଭୟରେ ଆଗନ୍ତୁକର ମୁହଁକୁ ଚାହିଁ ପାରିଲା ନାହିଁ । ଧୀରେ ଧୀରେ ଆଖିରୁ ଲୁହ ପୋଛି, ସେ ଦ୍ରୁତବେଗରେ ତା ଆଗରୁ ପ୍ରସ୍ଥାନ କଲା । ବାଡ କବାଟକୁ ଭିତରୁ ଭଲ କରି ବନ୍ଦ କରି ସେ ମନକୁ ମନ ହସି କହିହେଲା ··"ଉଃ, ଏଇ ଲୋକଟାକୁ ଦେଖି ଜମା ସେପରି ବ୍ୟସ୍ତ ହୋଇ ପଳାଇଲି ପରି ! ନୋହିଲେ, ସେଦିନ ସେ କଳେ ତାର ହାତ ଧରି... ! ଜମା ତାକୁ କଷ୍ଟଯୁ ଭଲ ପାଏ । ସେ ମୂର୍ଖଟା କଛୁ ବୁଝି ପାରିଲା ନାହିଁ । ଜମା ଲୁଚିଆ ପିଲା କ ନା··· !"

ବାହାରେ ମୂକ ପରି ଠିଆ ହୋଇ ଜଗୁ ବାଡ଼ କବାଟକୁ ଚାହିଁ ଗୋଟିଏ ଦୀର୍ଘଶ୍ୱାସ ଛାଡିଲା । ଆଜ ସିନା ଦେଖା ହେଲା ନାହିଁ, କାଲି କଷ୍ଟଯୁ ହେବ । ଜମା ତାକୁ ଚାହିଁବ... ।

ମୂହୂର୍ତ୍ତିକ ପାଇଁ ଜଗୁ ତାର ଅନନ୍ତ କ୍ଷୁଧା ଭୁଲିଯାଇଥିଲା ପରି !

—ତିରିଶ—

ଦୁଇ ଦିନ ପରେ ସକାଳ ଓଳି ମହାନ୍ତଙ୍କ କଟେରି ଘର ଆଗ ଆମ୍ବଗଛ ତଳେ ବସି ଜଗୁ ଆକାଶ ପାତାଳ କେତେ କଣ ଭାବୁଛି । ବାଜରିଆ ଆସି ତାର ଚିନ୍ତାରେ ବାଧା ଦେଇ କହିଲା, "ମୁଁ ଅଳ ପୁଷି ଗୁଳିଲି ଜଗୁ । ଏଥର ତୁ ତୋର ନିଜ କଥା ସମ୍ଭାଳ ।"

ଜଗୁ ବିସ୍ମିତ ହୋଇ ପଚାରିଲା, "କାହିଁକି... ?"

ବାଜରିଆ କହିଲା, "କାହିଁକି, ଏ କଥା ତୋତେ କଣ କହିବ । ତୁ ସବୁ ଜାଣୁ । କ ଅବେଳାରେ କାଲି ସକାଳେ ଉଠି ତୋର ମୁହଁ ଚାହିଁଲି; ତୁ

ମୋତେ ଉମାର ସବୁ କଥା ଆଗ ବଲ୍ଲପଞ୍ଚ କହିଲୁ, ସେତେବେଳୁ ଏଠି ଆଉ ମୋର ମନ ଲାଗୁ ନାହିଁ । ସବୁବେଳେ ତାର ରୂପ ଦେଖିବାକୁ, ତାର କଥା ଶୁଣିବାକୁ ମନଟା ଭାରି ଛଟପଟ ହେଉଛି ।”

ଜଗୁ ଅନ୍ୟମନସ୍କ ଭାବରେ କହିଲା, “ହୁଁ... ।”

“ଆଚ୍ଛା, କହ ତ, ମୋର ଯିବାଟା କଣ ମୋତେ ଉଚିତ ହେଉ ନାହିଁ ? ମୋତେ ଦେଖିଲେ ସେ କଣ ଖୁସି ହୋଇ ମତେ ଭଲ ପାଇବ ନାହିଁ ?”

ଜଗୁ ଭିତରେ ଭିତରେ ଜଳିବାକୁ ଲାଗିଲା । ମୁହଁରୁ ଖସିଗଲା ପୁଣି ସେହି ଅନ୍ୟମନସ୍କ ‘ହୁଁ’ ଟା ।

ବାଉରିଆ ଉତ୍ସାହିତ ହୋଇ କହିଲା, “ତେବେ ମୁଁ ଗଲିଲି ଭାଇ ! ତୋ ଦୁଃଖ କଥା ଶୁଣି ତୋତେ ମୁଁ ଦୁଇ ଦନ ହେବ ଯେ ମୁଠିଏ ଭାତ ଖାଇବାକୁ ଦେଉଥିଲି, ସେ କଥା କେମିତି ଜାଣି ପାରି ଗୁମାସ୍ତା ମୋ ଉପରେ ଭାରି ବଗିଡ଼ିଛି । ମୁଁ ପୁଣି ଗୁଲିଗଲେ, ତୋତେ ଏଠି କେହି ପଚାରିବେ ନାହିଁ । ତା ଆଗରୁ ତୁ ତୋର ବାଟ ଦାଟି ଗୋପ ଗୁଲି ଯା ।”

“ଆଚ୍ଛା, ମୁଁ ଯଦି ତମ ସଙ୍ଗରେ ପୁଣି ଯାଏ , ସେଠି କାମ କରି ମୁଠାଏ ଖାଇବାକୁ କଣ ଲୋକେ ଦେବେ ନାହିଁ ?” ଜଗୁର ଉଦ୍ଦେଶ୍ୟ ଥିଲା ଅନ୍ୟ ପ୍ରକାର । ଉମା ବଡ଼ ଲୋକର ଆଶ୍ରା ଧରିଛି । ଉମାର ଦୟା ଉପରେ ନର୍ଭର କରି ଯଦି ସେ ଏ ଯାହାରୁ ରକ୍ଷା ପାଇପାରେ । ସେ ତ ଉମାକୁ ଭୁଲି ପାରି ନାହିଁ । ଉମା କଣ ତାକୁ ଏତେ ଶୀଘ୍ର ଭୁଲିଯାଇଥିବ ? ଦେଖିଲେ ତାର ଦୟା ହେବ ନାହିଁ ?

ବାଉରିଆ କିଛି ଉତ୍ତର ଦେବା ପୂର୍ବରୁ ଗୁମାସ୍ତା ତେଣୁ ଗର୍ଜନ କରି ଆସି ନାଲି ଆଖି ଦେଖାଇ କହିଲେ, “ବାଉରିଆର ମତି ବଗିଡ଼ିଗଲାଣି । ମୁଠାଏ ସୁଖରେ ଖାଇବାକୁ ପାଇଲାରୁ ହୁଣ୍ଡା ଗଜଡ଼ ଟୋକାର ମନ ମୋଟ ହେଲାଣି । କ ରେ, କାମଧାମ ଛାଡ଼ି ସକାଳୁ ଯାଇ ଛତର କାଙ୍ଗାଳଟା ସାଙ୍ଗରେ କଣ ଫୁସ୍ ଫୁସ୍ ହେଉଛୁ... ।”

ବାଉରିଆ ଟିକିଏ ଅଡ଼ ହୋଇଯାଇ, ମୁଣ୍ଡ ନୁଆଁଇ ବାଳ କୁଣ୍ଡାଇ-ବାକୁ ଲାଗିଲା । ଗୁମାସ୍ତା ଜଗୁକୁ ଲକ୍ଷ୍ୟ କରି ଆରମ୍ଭ କଲେ, “ଆମର ତ ଛତର ବନ୍ଦ ହେଲା । ତମେ ସବୁ ସରକାରି ଛତର ଗୋପକୁ ସିଧା ସିଧା ଗୁଲିଯିବ । ଏଠି ଲଙ୍ଗର ପଙ୍ଗର ହେଲେ... ।”

"ଅଜ୍ଞ ମୁଁ ତ କାନ୍ଥଠୁଁ ଗୁଳସାଆନ୍ତିଣି । ମୋତେ ଆପଣଙ୍କର ଏଇ ବାଉଟଆ...।"

"ଅଃକୋଇଛ ନା !" କହି ଗୁମାସ୍ତା ଦାନ୍ତ ଚିପି ବାଉଟିଆ ପିଠିରେ ଖୁବ୍ ଜୋରରେ ଚଟପଟାଘାତ କରି ବକିବାକୁ ଲାଗିଲେ, "ଏଠି ତୋପାଇ ଫୋଲାଫାଙ୍କତା ଘାଲ ଦେଖିଛୁ ପର୍ବ ! କରେ ସେ ଚୋର ଭଲ ନା ଭଗ୍ବାନର ନା ଭଲଣୋଇଁ, ହାଇ ରେ... !"

ବାଉଟିଆ ଭୟରେ ତଟସ୍ଥ ହୋଇ ଦି ପାଦ ପଛକୁ ଘୁଞ୍ଚି ପ୍ରତିବାଦ କରି କଣ କହିବାକୁ ଓଠ ଥରାଇବାକୁ ଲାଗିଲା । ଜଗୁ ତାର ମନ କଥା ବୁଝିପାରି କହିଲା, "ମୋତେ ପୁଷି ସଙ୍ଗରେ ନେଇଯିବାକୁ ।"

ଗୁମାସ୍ତା, "ହୁଁ, ପୁଷି ଯିବ । ପୁରୀରେ ତା ବାପ ଅଛି ।"

ଜଗୁ, "ଅଜ୍ଞ ନା, କଏ ଗୋଟିଏ ପିଲା ପରି ମହାନ୍ତଙ୍କ ସଙ୍ଗରେ ଯାଇଛି ।"

ଗୁମାସ୍ତା, "କଏଁରେ ବାଉଟିଆ ?"

ଜଗୁ—"ଉମା, କଏ ।"

ହସି ହସି ଗୁମାସ୍ତା କହିଲେ, "ଓଃ, ବୁଝିଲି । ଅରେ ଗୁଡ଼ିଆଣୀ ଟୋକୀର ରୂପ ଦେଖି ବେହିଆ ପାଗଳ ହୋଇଛୁ । ହା ! ହା ! ଯିବ ତା ଗୋଡ଼ ଧୋଇ ପାଣି ପିଇ ମୁକ୍ତ ହେବାକୁ ! ଅରେ ହୁଣ୍ଡା, ତୋ ବାପା ପରି ତାକୁ ସାଙ୍ଗରେ ନେଇଛୁ । ତାଠି ଅଛି ! କରେ ଯାହା ଲଖି ଯେ, ସେ ତାକୁ ସଙ୍ଗରେ ନେଇ ଯାଇଛି । ତୁ ଏଠି ଛଟପଟ ହୋଇ ମୁଣ୍ଡ ପିଟିହେଲେ କଣ ହେବ ? ବାମନ ହୋଇ ଚାନ୍ଦକୁ ହାତ ବଢ଼ାଉଛୁ ରେ... ।"

ବାଉଟିଆ କୋଧରେ ଥରେ ଜଗୁ ଆଡ଼କୁ ଗୁହିଁ ମନେ ମନେ କହିଲା, "ନମକ୍‌ହାରମ୍, ରଙ୍ଗ ତତେ ଦେଖୁଛି ।" କିନ୍ତୁ ପ୍ରକାଶ୍ୟରେ କିଛି କହି ପାରିଲା ନାହିଁ । ତାର ମନ କଥା ତାର କାର୍ଯ୍ୟପନ୍ଥା ଯେ ସବୁ ଜଣା ପଡ଼ିଯାଇଛି, ଏହି କଥା ଭାବି ମନଦୁଃଖରେ ସେ ଧୀରେ ଧୀରେ ସେଠାରୁ ପ୍ରସ୍ଥାନ କଲା । ଗୁମାସ୍ତା ମଧ୍ୟ ତାର ପଛେ ପଛେ ଗଲେ ।

ଜଗୁ ସେହି ଗଛମୂଳରେ ବସି ଭାବିବାକୁ ଲାଗିଲା, ଜୀବନ ରକ୍ଷା ପାଇଁ ଜମୀ ଶେଷକୁ ଏ ହୀନତା ମଧ୍ୟ ସ୍ୱୀକାର କରିବାକୁ ପଛାଇଲା ନାହିଁ । ବୁଢ଼

ଦେବସେବକ ମହନ୍ତର ଶରୀରବିନୋଦନ ପାଇଁ ହସି ହସି ସେ ପୁଣି ଗଲା, ନରକ ପଥର ଯାତ୍ରୀ ହୋଇ। ଅନ୍ଧକାର ବିପାକରେ ପଡ଼ିଲେ ଜୀବନ ବଞ୍ଚାଇ ରଖିବାକୁ ମଣିଷ ଭଲ ମନ୍ଦ କିଛି ଦେଖେନି ନାହିଁ; ପାପପୁଣ୍ୟ, ନ୍ୟାୟାନ୍ୟାୟ କିଛି ବିଚାରେ ନାହିଁ , ମାନମର୍ଯ୍ୟାଦା, ସ୍ୱତନ୍ତ୍ରତ୍ୱ ବା ନାରୀତ୍ୱକୁ ସହଜରେ ପଛରେ ପକାଇ ଅଗତି ବିପଦ, ଅଗତି ପ୍ରତିବନ୍ଧକକୁ ଡେଇଁ ପାର ହୋଇଯିବାକୁ ବସେ।

ହୁଏ ତ ଉମା ତାହାହିଁ କରୁଛି। ଅନ୍ୟ ସେ ବି ଯଦି ପାଇଲୁ ଅଧିମିକାର ଉଚ ମୁଣ୍ଡକୁ ତଳକୁ କରି ନିଜର ମନୁଷ୍ୟତ୍ୱକୁ ପଛରେ ପକାଇ ଚାଲିବାକୁ ଚେଷ୍ଟା କରୁଥାନ୍ତା, ଆଜି ଗଛମୂଳରେ କାଙ୍ଗାଳ ହୋଇ ମୁଠାଏ ଅଇଁଠା ଭାତ ପାଇଁ କୁକୁର ପରି ପର ମୁହଁକୁ ଚାହିଁ ରହି ନ ଥାନ୍ତା। ସାମାନ୍ୟ ଗୋଟାଏ ଧମକଣା, ଅପମାନସୂଚକ ପଦେ କଥା, ସହି ନ ପାରି ସେ ପଟ୍ଟନାୟକଙ୍କ ଘର ଛାଡ଼ିଅସିଛି। କେଡ଼େ ଭୁଲ। ଜଣେ ଅପରିଚିତ କାଙ୍ଗାଳ ବୁଢ଼ାକୁ ସହାନୁଭୂତି ଦେଖାଇ ସେ ତାର ସମ୍ବଳ ଗାମୁଛାଟିକୁ ହରାଇଛି। ତଥାପି ଶିଖିବ ନାହିଁ ସେ !

ଉମା ବୁଦ୍ଧିମତୀ, ତାକୁ ଦୁର୍ଭାଗ୍ୟରେ ଏହି ମହାଶିକ୍ଷା ଦେଇ ଯାଇଛି, ନିଜର ଜୀବନଠାରୁ ବଳି ଅତି ପ୍ରିୟ ଅତି ଅପଣାର ଆଉ କିଛି ନାହିଁ। ଜୀବନ ଧରି ରଖିବାକୁ, କେବଳ ସ୍ୱାର୍ଥ ପାଇଁ ମଣିଷର ସଦ୍‌ଗୁଣ, ମଣିଷର ମହାନୁଭବତାକୁ ଅକ୍ଳେଶରେ ପରିତ୍ୟାଗ କରିବାକୁ ହେବ। ପ୍ରିୟଜନର ଦେହରକ୍ତରେ ହାତ ପଖାଳି ସହସ୍ର ମାନବର ହୃତ୍‌ସ୍ପନ୍ଦନକୁ ଗୋଡ଼ରେ ଦଳି ଆଗକୁ ଯିବାକୁ ହେବ।

ଜଗୁ କେତେଜାଣି କାହା ଉପରେ କ୍ରୁଦ୍ଧ ହୋଇ ଉତ୍ତେଜିତ ହୋଇ-ଉଠିଲା। ପେଟର ଜାଳା ସହି ନ ପାରି ଉମା ମରିଛି। ଉମା ଆଜି ପ୍ରେତିନୀ ହୋଇଛି। ଜଗୁ ମଧ୍ୟ ଅଜିଠାରୁ ମରିବ। ଜଗୁର ପ୍ରେତାତ୍ମା ସଇତାନ୍ ହୋଇ ଦରିଦ୍ର ମାନବର ଦୁର୍ବଳ ଜୀବନ ତଥା ମହାଦୁର୍ଭିକ୍ଷକୁ ଉପହାସ କରିବ ଉପେକ୍ଷା କରିବ।

ଜଗୁ ଗଛମୂଳରୁ ଉଠିଲା। ତାର ପରମ ବନ୍ଧୁ, ବାଉଁ ଖଣ୍ଡି କାନ୍ଧରେ ପକାଇ ସେ ଏକମୁହାଁ ହୋଇ ଆଗକୁ ଚାଲିଲା। ସେ ସବୁ କଥା, ସବୁ

ଚନ୍ତା ଭୁଲଲ୍ଲ । ମନ ଭିତରେ ଅଜଣା ବିଦ୍ରୋହ ଯେପରି ତାକୁ ବାରମ୍ବାର କାହିଁ ଉତ୍ସାହିତ କରିବାକୁ ଲାଗିଲା---କିଏ ଆଜି ମରିବ ରେ ! କିସର ପ୍ରେତାତ୍ମା ଆଜି ମାନବର ଦୁର୍ବଳତାକୁ ପାଦରେ ଦଳି ମହାପରୀକ୍ଷାର ଅଗ୍ନିମାର୍ଗରେ ନୂତନ ଯାତ୍ରୀ ହୋଇ ବାହାରିଛି । ସେ ଗୃହେଁ ନା ଧର୍ମ, ସେ ଗୃହେଁ ନା ଶାନ୍ତ, ସେ ଗୃହେନା ସତ୍ୟ, ପବିତ୍ରତା, ମୁକ୍ତି । କେବଳ ଗୃହେଁ ବିଦ୍ରୋହ ସେ କେବଳ ଗୃହେଁ ଜୀବନ, ଜୀବନ । ତାହାହିଁ ତାର ମଣିଷ ଜନ୍ମର ସାର୍ଥକତା, କାମ୍ୟ । ତାହାହିଁ ତାର ଯୌବନର ଯନ୍ତ୍ରଣା ଭିତରେ ଏକମାତ୍ର ସୁଖର ଆନନ୍ଦର ଜ୍ୟୋତିକଣା; ମଣିଷ ଜନ୍ମର ସବୁ ଜଞ୍ଜାଳ ଭିତରେ ସେହି ଜୀବନହିଁ ତାର ଏକମାତ୍ର ଅଯାଚିତ ପୁରସ୍କାର ।

## —ଏକବିଂଶ—

ନିସ୍ତବ୍ଧ ଖରା । ଗୁଲି ଗୁଲି କିଏ କ୍ଲାନ୍ତ ହୋଇପଡ଼ିଲାଣି । ଅଦେଖା ବାଟ । ଯେତେ ଗୁଲିଲେ ବି ବାଟ ସରୁ ନାହିଁ । ଯାହାକୁ ପଗୃରୁଛି ସେ କହୁଛି , ଗୋପ ଆଉ ମୋଟେ ପାଞ୍ଚ କୋଶ । ଅଧୀର ହୋଇ ସେ କେତେ ଗାଁଗଣ୍ଡା ପାରି ହୋଇ, କେତେ ମଶାଣି କେତେ ଗହ୍ୱର ଅତିକ୍ରମ କରି ଆସିଲାଣି ? ତଥାପି କଣ ପାଞ୍ଚ କୋଶ ହୋଇ ନାହିଁ ? କେଜାଣି ବା ବାଟ ଭୁଲିଛି । କାହାକୁ ପଗୃରିବ ?

ସେ ବାଟ କଡ଼ ଗଛମୂଳରେ ଠିଆ ହୋଇ ଗୁରି ଆଡ଼କୁ ଗୃହିଁଲା । କାହାର ଦେଖା ପାଇଲା ନାହିଁ । ଅବଶ ଯବନ ଦେହରେ ସୁଦୂର ଗାଁ ଆଡ଼ୁ କାହାର ବିକଳ କାନ୍ଦଣା ଭାସି ଆସୁଛି ନାରୀକଣ୍ଠରେ । ଆଗରେ ଗହ୍ୱର ବଣ । ତାରି ଭିତରେ ବାଟ ପଡ଼ିଛି । ଆଖି ଯାଉ ନାହିଁ । ଦୂର ଦିଗ୍‌ବଳୟରୁ ଅନ୍ୟ ଗୋଟିଏ ଗାଁର ଗଛପତ୍ର ଅନ୍ଧାରିଆ ଦିଶୁଛି । ତାକୁ ଏହି ଭୀଷଣ ଖରା-ସମୁଦ୍ର ପାରି ହୋଇ ନିର୍ଜନ ଗହ୍ୱର ଭିତରେ ଯିବାକୁ ହେବ । ମଝିରେ ଗଛବୃକ୍ଷର ଚିହ୍ନ ନାହିଁ । ଅବଶ ହୋଇ ପଡ଼ିଲେ ଆଶ୍ରୟ ନେବ କାହା ତଳେ ?

ନା, ଅଉ ଯାଇ ହେବ ନାହିଁ । କିଏ ହତାଶ ହୋଇ କପାଳରୁ ଝାଳ ପୋଛିଲା । ମୁହଁ ଫେରାଇ ଦେଖିଲା, ଟିକିଏ ଦୂରରେ ଗୋଟିଏ

ଗଛମୂଳରେ କେତେ ଜଣ ସ୍ତ୍ରୀପୁରୁଷ ବସି କଣ କରୁଛନ୍ତି । ସେ ମନରେ ଅଶା ବାନ୍ଧି ସେମାନଙ୍କ ନିକଟକୁ ଯିବାକୁ ଯାଉଥିଲା । ସେହି ଲୋକଙ୍କ ପାଖରୁ ନିଶ୍ଚୟ ବାଟଘାଟର ଖବର ମିଳିବ, ପାଖ ଗାଁର ହାଲଚାଲ ମଧ୍ୟ ବୁଝାପଡ଼ିବ ।

ଜଗୁ ଲୁଗା କାନିରେ ଦେହର ଝାଳ ପୋଛି ସେମାନଙ୍କ ପାଖକୁ ଗଲା । ସେ ଯାହା ଦେଖିଲା, ନିଜର ଆଖିକୁ ବିଶ୍ୱାସ କରି ପାରିଲା ନାହିଁ । ଗୋଟିଏ ତେନ୍ତୁଳିଗଛ ମୂଳରେ ସ୍ତ୍ରୀପୁରୁଷ ପିଲାଛୁଆ ମିଶି ପ୍ରାୟ ପଚିଶ ଜଣ ଲୋକ ବସିଛନ୍ତି । ଆଖ ପାଖ ଗଛମୂଳରେ ମଧ୍ୟ କେହି କେହି ଅଧାଶୁଆ ଠାଣିରେ ବସିଛନ୍ତି । ଅତି ଅଳ୍ପ ଲୋକଙ୍କ ଦେହରେ ଲୁଗା ବା ଛିଣ୍ଡା କନା ଅଛି; ନୋହିଲେ ପ୍ରାୟ ସମସ୍ତେ ଲଙ୍ଗଳା । ଦେହର ହାଡ଼ ଶିରା ଗଣି ହେଉଛି । ଦୁର୍ବଳତାରୁ ଚଳ ପ୍ରଚଳ ହେବା ଯେପରିକି ସେମାନଙ୍କ ପକ୍ଷରେ ଅସମ୍ଭବ । ସେମାନଙ୍କ ଚାହାଣି ଭିତରୁ ଭୟ ଦୁଃଖ ନୈରାଶ୍ୟ ଫୁଟି ବାହାରୁଛି ।

ଜଗୁ ଜଣ ଜଣ କରି ସମସ୍ତଙ୍କୁ ଚାହିଁଗଲା । ବାଟରେ ସେ କେତେ କେତେ କାଙ୍ଗାଳ ଦେଖି ଆସିଛି; କିନ୍ତୁ ଏପରି କାଙ୍ଗାଳ ଦଳ ସେ କେଉଁଠି ଦେଖି ନାହିଁ । ଲୋକେ ମେଟବଳକାଳରେ ବିଲରୁ ଘାସ, ଗଛରୁ ପତ୍ର ଛିଣ୍ଡାଇ ସିଝାଇ ଖାଇବାର ସେ ଅନେକ ଥର ଦେଖିଛି; କିନ୍ତୁ ସେମାନଙ୍କର ଦୈହିକ ଅବସ୍ଥା ଏପରି ଶୋଚନୀୟ ଦେଖିବା ତାର ମୋଟେ ମନେ ନାହିଁ । ସତେକି କେଉଁ ମଶାଣି ଛାଡ଼ି ପ୍ରେତ ଦଳ ସାକ୍ଷାତ୍ ଆସି ଉପସ୍ଥିତ ।

ଜଗୁ ନିରିଖି ଚାହିଁଲା । ନିଜର ସବୁ ଦୁଃଖ କଷ୍ଟ ଭୁଲି ସେ ଭାବିବାକୁ ଲାଗିଲା । ଅହା, ମଣିଷ କଣ ଜନ୍ମ ହୋଇଥାଏ ଏହିପରି କଷ୍ଟ ସହିବାକୁ ? ଏହାହିଁ କଣ ଭଗବାନଙ୍କର ଇଚ୍ଛା ? ଏହାହିଁ କଣ ଭଗବାନଙ୍କର ଉଦ୍ଦେଶ୍ୟ ? ମଣିଷକୁ ଯନ୍ତ୍ରଣାରେ ଛଟପଟ କରି, ମଣିଷର ରକ୍ତମାଂସ ଶୋଷି ଟିକି ଟିକି କରି ତାର ପ୍ରାଣକୁ ସମାଧି ଆଡ଼କୁ ଟାଣି ନେବାରେ ତାଙ୍କର କି ଆନନ୍ଦ ହୁଏ ?

ଜଗୁର ବ୍ୟଥିତ ମନ ବିଦ୍ରୋହୀ ହୋଇଉଠିଲା । ଦେବତା ଯଦି ମଣିଷର ଦୁଃଖସୁଖ ନ ଦେଖେ, ମଣିଷ କାହିଁକି ତାକୁ ମନରେ ଆଣିବ ? ନିଜର ବେଷ୍ଟନୀ ଭିତରେ ମଣିଷ ଯାହା ଉପଯୁକ୍ତ ମନେ କରେ, ନିଜର

ଅନନ୍ଦ ପାଇଁ ସେ ତାହାହିଁ କରେ । ପାପପୁଣ୍ୟ, ନ୍ୟାୟାନ୍ୟାୟର ପ୍ରଶ୍ନ ଉଠିବାର ନୁହେଁ । ତେବେ ଦେବତା ସଙ୍ଗରେ ମଣିଷର ସମ୍ପର୍କ କଣ ? ସେ କାହିଁକି ଦେବତା ଉପରେ ନିର୍ଭର କରି ରହିବ । ଜନ୍ମିଛି ନିଜର ବୁଦ୍ଧି, ନିଜର ଶକ୍ତି ସାମର୍ଥ୍ୟରେ ସୁଖରେ ବଞ୍ଚି ରହିବାକୁ ଚିରଦିନ । କର୍ମପନ୍ଥାର ପ୍ରମାଦ ଦୋଷରୁ ସେ କଷ୍ଟ ପାଇ ମରେ, ତା ପାଇଁ ଅନ୍ୟମାନେ କଷ୍ଟ ପାନ୍ତୁ, ମରନ୍ତୁ । ସବଳ ଯେ ସେ ଦୁର୍ବଳର ଛାତି ଉପରେ ଚଢ଼ିଲେ ସ୍ୱାର୍ଥ ପାଇଁ । ଏହାହିଁ ଯଦି ପ୍ରକୃତିର ନିୟମ, ସେ କାହିଁକି ପରର ଦୁଃଖ ଦେଖି ଦୁଃଖରେ ମରିଯିବ ରହିବ ? ବଞ୍ଚି ରହିବାକୁ ଇଚ୍ଛା କଲେ ଏହାଦ୍ୱାରା କେତେ ଦୁର୍ବଳ ମଣିଷକୁ ଗୋଡ଼ରେ ଦଳଦେଇ ଯିବାକୁ ହେବ । ଦୁଃଖ ଅନୁକମ୍ପା ମଣିଷର ପ୍ରଧାନ ଦୁର୍ବଳତା ।

ଜଗୁ ଦୁଃଖରେ ଅଖିରୁ ଲୁହ ପୋଛିଲା । କୋମଳ କଣ୍ଠରେ ପାଖର ଲୋକଙ୍କୁ ପଚାରିଲା, "ଭାଇ, ଏଠି ପାଣି ମୁଢ଼ାଏ ପିଇବାକୁ ମିଳିବ କେଉଁଠି ?"

ଲୋକଟି ମୁଣ୍ଡ ହଲାଇ ନାହିଁ କରି ଗଛ ଉପରକୁ ଚାହିଁଲା ।

ଜଗୁ ତାର ଉଦ୍ଦେଶ୍ୟ ବୁଝି ନ ପାରି ଉପରକୁ ଅନାଇଲା । ଗଛ ଉପରେ ଦୁଇ ଜଣ ଦୁର୍ବଳକାୟ ଲୋକ ବସି କଅଁଳ କଅଁଳ ଡେଙ୍ଗୁଳି ପତ୍ର ଛିଣ୍ଡାଇ ପେଲୁଥାଉଛନ୍ତି । ଜଗୁ ତାର ମନକଥା ବୁଝି ପାଖ ହାତପାହାଣିରୁ କେତୋଟି ପତ୍ର ଛିଣ୍ଡାଇ ପାଟିରେ ପକାଇଲା । ଟିକିଏ ରହି ଅନ୍ୟ ଜଣେ ଲୋକକୁ ପଚାରିଲା, "ପାଖ ଗାଁ କେତେ ଦୂର ଏଠିକି ?"

ଲୋକଟି ଧୀରେ ଧୀରେ କହିଲା, "ଆଗରେ ।"

"ଦୋକାନବଜାର ଅଛି ?"

"ଲୋକେ ଗାଁ ଛାଡ଼ି ପେଟ ପାଇଁ ଯିଏ ଯୁଆଡ଼େ ପଳାଇଛନ୍ତି । ଗାଁ ଶ୍ମଶାନ ହୋଇଛି । ଦୋକାନ କେଉଁଠୁ ଆସିବ ?"

"ଅଛି, ପାଣି ମୁଢ଼ାଏ—।"

"ଦୋଷବୁ ପଡ଼ିଛି ରେ ଭାଇ ! ହଇଜାରେ ଗାଁର ଲୋକେ ସଫା ହୋଇଗଲେଣି । ଘରଦ୍ୱାର ତାଟି ବନ୍ଦ । ପାଣି ମୁଢ଼ାଏ ଦେବ କିଏ ? ଦେଖି ଦେଖି ଆସୁଛୁ, ସବୁ ଗାଁର ଅବସ୍ଥା ଏକାପରି । କାହାକୁ ଉଲ ଡାକିଲେ ଶରଣ ନେବୁ ? ଘରେ ଘରେ ମୁର୍ଦ୍ଦାର ସଢ଼ୁଛନ୍ତି ।"

"ଲୋକେ ସବୁ ଗଲେ କୁଆଡ଼େ ?"

ଉପରକୁ ଆଖି ଟେକି ସେ କହିଲା, "ଉପରକୁ ! ପ୍ରଭୁଙ୍କ ଇଚ୍ଛା...।"

ଜଗୁ ପଚାରିଲା, "ତୁମେ ସବୁ କୁଆଡ଼ୁ ଆସିଲ ? ଯିବ କୁଆଡ଼େ ?"

ଜଣେ ସ୍ତ୍ରୀଲୋକ ବିରକ୍ତ ହୋଇ କହିଲା, "ସେଥିରୁ ତତେ କଣ ମିଳିବ ପୁଅ ? ତୁ ତୋର ବାଟ ଦେଖ ।"

ତା କଥାରେ କାନ ନ ଦେଇ ଲୋକଟି କହିଲା, "ଆମେ ଅନେକ ଦୂରରୁ ଆସିଛୁଁ । ଗୋପ୍‌ରେ କେଉଁଠି ମଗ୍ର ସରକାରୀ ଛତର ଖୋଲିଛି ?"

ଜଗୁ କହିଲା, "ହଁ, ମୁଁ ବି ତ ଛତର ଖୋଜି ବାହାରିଛି । ଗୋପ କେତେ ବାଟ ଆଉ ?"

'ଜାଣେ ନା ! ଏଇ ଗହ୍ୱାର ମଝିରେ ବାଟ—!"

ସ୍ତ୍ରୀଲୋକଟି ସନ୍ଦେହରେ ଜଗୁକୁ ଚାହିଁ କହିଲା, "ତୁ ଯାଉନୁ ସେଇ ବାଟେ ।"

ଜଗୁ ତାକୁ ଲକ୍ଷ୍ୟ କରି କହିଲା, "ଖରାରେ ଧାଇଁ ଧାଇଁ ଆସି ଛାଇ ତଳ ଦେଖି ଟିକିଏ ଠିଆ ହୋଇଯାଇଛି । ତୋର ତ କିଛି କ୍ଷତି କରୁ ନାହିଁ ମୁଁ ? ମୋତେ ତଡ଼ିବାରେ ଲାଗିଛୁ କାହିଁକି ?"

ସ୍ତ୍ରୀଲୋକଟି ଉତ୍ତର ଦେବା ଆଗରୁ ତାହା ପାଖର ଲୋକ କହିଲା, "କମ୍ ଗୁଣ କି ତାର ! ପୁଅଗେରସ୍ତକୁ ଯିଏ ପେଟ ପାଇଁ ନିଜ ହାତରେ ବିଷ ଦେଇଛି, ତାକୁ ତ ଭଲ ଲୋକେ ଗଣେଇବେ । କହେ, ତୋର କଣ ଅଛି ?"

"ଆହା ରେ, ଚୂଲିପଶା ଖୁବ୍ ଭଲ ଲୋକ ! କି ରେ ମୁଁ ତ ପୁଅ ଗେରସ୍ତକୁ ଜୀବନରୁ ମାରି ଆସିଛି ଛତରକୁ, ତାଙ୍କର ଦୁଃଖ ମୁଁ ଦେଖିବି ନାହିଁ କି ମୋ ଦୁଃଖ ସେମାନେ ଦେଖିବେ ନାହିଁ । ତୁ କୋଉ ଭଲ କାମଟା କରି ଆସିଛୁ ?"

ଜଗୁ ଜିଜ୍ଞାସୁ ନୟନରେ ତାକୁ ଚାହିଁଲା ।

ସ୍ତ୍ରୀଲୋକଟି କହିଲା, "ମାଛେଇଜଣ୍ଡ ପିଲା ଦିଓଟିଙ୍କୁ ଛାଡ଼ି ଛତରରେ ପଶିଲୁ ପରା । ସେ ଦିଓଟି ଆଜି ବାରଦ୍ୱାର ଶୁଣ୍ଠିପିଣ୍ଡା ହେଉଥିବେ...।"

"ତୋ ପରି ମୁଁ କିଛି ବିଷ ଦେଇ ନାହିଁ ତ ?"

"ବିଷ ଦେଇ ମାରି ଅସିବାଠୁଁ କଣ ଖାଅନ୍ତା ଚଳେଇ କରିବାକୁ ବାଟ ମଝିରେ ଅପନ୍ତରାରେ ଛାଡ଼ି ଅସିବା ଭଲ ? କ ରେ ପୁଅ, କହୁନୁ କାହିଁକି ?"

ଜଗୁ ଅଉ କହିବ କଣ ? ଗମ୍ଭୀର ହୋଇ ଭାବିବାକୁ ଲାଗିଲା । ସମସ୍ତେ ତ ମଣିଷ, ପ୍ରଭେଦ କଣ ! ଜୀବନ ପାଇଁ, ପେଟ ପାଇଁ, କୁଳଲକ୍ଷ୍ମୀ ସତୀ ସାଧ୍ୱୀ ହିନ୍ଦୁ-ଲଳନା ଅକ୍ଲେଶରେ ସ୍ୱାମିପୁତ୍ରଙ୍କୁ ବିଷ ଦେଇପାରେ, ମନୁଷ୍ୟ ତାର ଅଙ୍କଗତ ପୁତ୍ରକନ୍ୟାଙ୍କୁ ନିଃସଙ୍କୋଚରେ ବାଟରେ ବସାଇ ଲୁଚି ଲୁଚି ପଳାଇ ଅସିପାରେ । ଏତିକରେ ଶେଷ ହୋଇ ନାହିଁ । ଭଲ କରି ଆଲୋଚନା କଲେ ପ୍ରତ୍ୟେକ କାଙ୍ଗାଳର ଜୀବନ ସଙ୍ଗେ ଏହିପରି କେତେ କେତେ ଅଭୁତ ଇତିହାସ, ଅଶ୍ରୁତପୂର୍ବ ଘଟଣା ସଂଯୋଜିତ ଥିବାର ଜଣାପଡ଼ିବ । ତେବେ ଜଗୁ ପଚାରିବ କାହିଁକି ? ଜୀବନ ପାଇଁ ସେ ମଧ୍ୟ ନରକର ଦ୍ୱାର ଉଦ୍‌ଘାଟନ କରିବ, ସବୁ ଦୁର୍ବଳତାକୁ ପଛରେ ପକାଇ ଆଗକୁ ଚାଲିବ ।

ଜଗୁ ଅଉ ସେମାନଙ୍କ ଆଡ଼କୁ ଚାହିଁଲା ନାହିଁ । ବିପଟ ଗଦାଗରୁ ସେପାରିକୁ ଚାହିଁ ପଚାରିଲା—"ଗୋପାଳ ଏଇ ବାଟ ତ ?"

କିଏ ଜଣେ କହିଲା—"ହଁ... ।"

ସେ ଅଉ ଅପେକ୍ଷା କଲା ନାହିଁ । ଦେହର ମନର ସବୁ କ୍ଳାନ୍ତିକୁ ଉପେକ୍ଷା କରି ନିଦାଘ ଖରାର ତୀବ୍ର ପ୍ରତିବାଦ ନ ମାନି ସେ ଅଗକୁ ଚାଲିଲା । ଯେ କୌଣସିମତେ ସଞ୍ଜ ଅଗରୁ ଉପଯୁକ୍ତ ସ୍ଥାନରେ ପହଞ୍ଚିବାକୁ ହେବ । ଖରା ତରିକୁ ଡରି ବସି ରହିଲେ ଶେଷକୁ ତାକୁହିଁ ତ କଷ୍ଟ ସହିବାକୁ ପଡ଼ିବ ।

ମଣିଷର ସବୁ ଶକ୍ତି, ସବୁ ସାହସ ପ୍ରକୃତି ନିକଟରେ ପରାହତ ହୁଏ ସିନା । ଜଗୁର ତାହାହିଁ ହେଲା । ଗଦାର ଭିତରକୁ ଖଣ୍ଡେ ଦୂର ଯାଇ ସେ ଅତି କ୍ଳାନ୍ତ ହୋଇପଡ଼ିଲା । ବଳ ବାଟ; ଟେଳା ହୁଡ଼ ଡେଇଁ ଡେଇଁ ଅଉ ସେ କେତେ ବାଟ ଯାଇପାରନ୍ତା ? ବେଳକୁବେଳ ସୂର୍ଯ୍ୟର ଉତ୍ତାପ ପ୍ରଖରତର ହେଉଛି । ତଳ ଭୂଇଁ ମଧ୍ୟ ନିଆଁ ପରି ତାତିଗଲାଣି । ଯୁଆଡ଼କୁ ଚାହିଁଲେ ଆଖି ପାଉ ନାହିଁ; ସାହସ ପାଉ ନାହିଁ । କରିବ କଣ ! ଲୋକ କଥା କିଏ

ପଗୃରେ । ଶୋଷରେ ହଂସା ଉଡ଼ୁଛି, ତଣ୍ଟି ଶୁଖି ଅଠା ଅଠା ହେଉଛି । ଆଖି ଆଗରେ ଶହ ସହ ଜୁଳୁଜୁଳିଆ ପୋକ ଭାସି ଯାଉଛନ୍ତି ।

ସେ ଅଧ ବାଟରେ ଠିଆ ହୋଇ ହତାଶାକୁଳିତ ପ୍ରାଣରେ ଆଗକୁ ଗୃହିଁଲା । ଖଣ୍ଡେ ଦୂର ଛଡ ବିଲ ମଝିରେ, ଆକାଶରେ କେତୋଟି ମାଛରଙ୍କା ଚଢ଼େଇ ମଧ୍ୟ ତଳକୁ ତଳ, ଏକଲକ୍ଷ୍ୟରେ ଗୃହିଁ ଦର ହାଲୁଉଛନ୍ତି । ଜଗୁ ଅଣାନ୍ତ ହୋଇ ଭାବିବାକୁ ଲାଗିଲା, ପାଣି ନ ଥିଲେ ମାଛରଙ୍କା ଚଢ଼େଇ ଉଡ଼ନ୍ତେ ନାହିଁ । କିଛିଦିନ ତଳେ ଯେଉଁ ବର୍ଷା ହୋଇଥିଲା,ତାହାର ଫଳରେ ହୁଏତ ବର୍ଷଣା ପାଣି ଗହ୍ୱର ମଝିରେ ଥିବା କୌଣସି ଖାଲରେ ଜମି ରହିଛି ।' ଯାହା ହେଉ, ସେଥିରୁ ମୁନ୍ଧେ ନ ପିଇଲେ ଆଜି ପ୍ରାଣ ରହିବ ନାହିଁ !

ବାଟ ଭାଙ୍ଗି ସେ ବିଲ ମଝିଏ ମଝିଏ ସେହି ଆଡ଼କୁ ଲକ୍ଷ୍ୟ କରି ଚାଲିଲା । ମଣିଷ ଆଶାରେ ଆଶାରେ ଅକ୍ଲେଶରେ ଆକାଶକୁ ଉଡ଼ିପାରେ । ମୁନ୍ଧେ ପାଣି ଆଶାରେ ଜଗୁ ଆଜି ଗହ୍ୱର ବିଲର ଢେକାଭୁଷା ମାନିଲା ନାହିଁ । ନୂଆ ଉତ୍ସାହରେ ଦିଗୁଣ ବେଗରେ ସେ ଧାଇଁବାକୁ ଲାଗିଲା । ସେ ଯେତିକି ପାଖକୁ ଆସୁଥାଏ, ତାର ଉତ୍କଣ୍ଠା ସେତିକି ବଢ଼ୁଥାଏ, ପାଣି ପିଇବାର ଇଚ୍ଛା ତାର ମନରେ ସେତିକି ବଳବତୀ ହେଉଥାଏ ।

ଯାହା ହେଉ, ଶେଷକୁ ସେ ପାଣି କୂଳକୁ ଆସିଲା । ତାର ମନ କଥା ଯେ କାର୍ଯ୍ୟରେ ଫଳିଛି, ଏହି କଥା ଭାବି ସେ ଆନନ୍ଦରେ ଅଧୀର ହୋଇ ପଡ଼ିଲା; କିନ୍ତୁ ହା ଭଗବାନ । ସେ ପାଣି ଖାଲକୁ ଗୃହିଁ ଯାହା ଦେଖିଲା, ତାର ଦେହ ସାରା ଭୟରେ ଘୃଣାରେ ଥର ଉଠିଲା ।

ଗହ୍ୱର ମଝିରେ ଗୋଟିଏ ଛୋଟ ଖାଲ । ବର୍ଷା ପାଣିରେ ପୂର୍ଣ୍ଣ । କେତେ ଦିନର ବନ୍ଧ ପାଣି । ଉପରେ ସର ପଡ଼ିଛି । ଚାରି ପାଖରେ ପଙ୍କ, କୂଳକୁ କିଛି ଦୂର ଛଡ ଦଣ୍ଡା ଫୁଲ ଶାଗୁଣା ଝାଲ ଆଡକୁ ଏକଧ୍ୟାନରେ ଗୃହିଁ ବସିଛନ୍ତି । ଗୋଟାଏ ବଲୁଆ କେଜାଣି କାହିଁକି କିଛି ଦୂରରେ ଇଙ୍ଗର-ଟଙ୍ଗର ହେଉଛି । ସେମାନଙ୍କୁ ହୁରୁଡେଇବାକୁ ଜଗୁ ତାର ଚୌହାତୀ ଠେଙ୍ଗାଟା ଉପରକୁ ଟେକି ଜୋରରେ ତଳେ ପିଟି ଗୋଟାଏ ଚୀତ୍କାର କଲା । ଶାଗୁଣା ଦଳ ଏପାଖ ସେପାଖକୁ ଗୃହିଁ ଚକ୍କର ଦେଇ ଉପରକୁ ଉଡ଼ି-ପଳାଇଲେ । ବଲୁଆଟା ଲଙ୍ଗୁଳ ଯାକି ପଛକୁ ଗୃହିଁ ଗୃହିଁ ବିଲ ମଝିକୁ ଦଉଡ଼ ପଳାଇଲା ।

ଜଗୁ ମନରେ ସାହସ ବାନ୍ଧି ଟିପେଇ ଟିପେଇ ଖାଲ ପାଖକୁ ଗଲା । ତା ନାକରେ ବାଜିଲା ଗୋଟା ସଢ଼ା ଗନ୍ଧ । ସେ ନାକ ଟେକି ନିରୀକ୍ଷଣ କରି ଗୃଦ୍ଧ ଦେଖିଲା, ଶବ ମଝିରେ ମୁଣ୍ଡ ଗୋଟାଏ ଭାସୁଛି । ବନ୍ଧ ପାଣିର ସର ଭେଦ କରି ଉପରକୁ ସାମାନ୍ୟ ବାହାରିଥିବାରୁ ସହଜରେ ବାରି ହେଉ ନାହିଁ । ଜଗୁ ଘୃଣାରେ ପଛକୁ ହଟିଆସିଲା । ପୁଣି କଣ ମନରେ ଭାବି ଶବର ଚାରି ପାଖରେ ଘେରାଏ ବୁଲିଆସିଲା । ଗୋଟାଏ ଜାଗାରେ ଦେଖିଲା, ମଣିଷ ପାଦ ଖାଲ ଭିତରକୁ ପଡ଼ିଛି; କିନ୍ତୁ ଖାଲ ଭିତରୁ ବାହାରି ଆସିବାର ଫେରନ୍ତା ପାଦର ଚିହ୍ନ ନାହିଁ ।

ସେ ଆଗରୁ ଶୁଣିଥିଲା, ଲୋକେ ପାଣି ପିଇବାକୁ ପୋଖରୀ ଭିତରକୁ ଯାଉ ଯାଉ ଦୁର୍ବଳତାବଶତଃ ଗୋଡ଼ ଖସି, ଆଣ୍ଠୁଏ ପାଣିରେ ପଡ଼ି ଅନେକ ଜାଗାରେ ବୁଡ଼ିମରୁଛନ୍ତି । ଅଳ୍ପ ପାଣି ଅଛି, ଏ କଥା ଜାଣି ମଧ୍ୟ ଉଠିବାକୁ ଚେଷ୍ଟା କରିବାର ଶକ୍ତି ତାଙ୍କର ନାହିଁ । କେହି କେହି ମଧ୍ୟ ପଙ୍କ ଦେହରେ ଲାଖି ଶୁଖି ଶୁଖି ମରିବାର ସେ ଶୁଣିଛି । ପଙ୍କରୁ ଗୋଡ଼ ଉଠାଇ ଫେରି ଆସିବାର ଜୋର ତାଙ୍କ ଦେହରେ ନାହିଁ । ଜଗୁ ଏ ସବୁ କଥା ଅନେକ ଲୋକଙ୍କ ମୁହଁରୁ ଦେଖିଥିବାର ଶୁଣିଥିଲା; କିନ୍ତୁ ନିଜେ କେବେ ଆଖିରେ ଦେଖି ନ ଥିଲା । ଆଜି ଆଖି ଆଗରେ ଏମିତି ଦୃଶ୍ୟ ଦେଖି ସେ ଆଉ ଶୁଣା କଥା ଅବିଶ୍ୱାସ କରି ପାରିଲା ନାହିଁ । ଆହା, ଏହି ହତଭାଗ୍ୟ ଲୋକଟିର ଅବସ୍ଥା ହୁଏ ତ ଅଛି ଠିକ୍ ସେହିପରି ହୋଇଛି । ନୋହିଲେ ଶବଟାକୁ ଲୋକେ ଏତେ ଦୂର ବୋହି ଆଣି ଜାଣୁ ଜାଣୁ ଖାଲରେ ପକାଇ ଯାଆନ୍ତେ କି ଉଦ୍ଦେଶ୍ୟରେ ? ଆଣ୍ଠୁଏ ପାଣିରେ କେହି କେବେ ଆତ୍ମହତ୍ୟା ମଧ୍ୟ କରେ ନାହିଁ ।

ଶୋଷରେ ହଂସା ଉଡ଼ୁଛି । ଭଲ ମନ୍ଦ ବାରି ଘୃଣା କରିବାକୁ ବେଳ ନାହିଁ । ଉଦ୍‌ଉଦ୍‌ଦିଆ ଦି ପହରେ ଅସାଧ୍ୟ ବାଟ ଚାଲି ଖରାତରା ନ ମାନି ମୁଣ୍ଡାଏ ପାଣି ପିଇବାକୁ ଆଶା ମୁଖରେ ଆସିଛି । ପାଣି ମୁଣ୍ଡାଏ ପାଟିରେ ନ ଦେଇ ଫେରିଗଲେ ଅଧ ବାଟରେ ପ୍ରାଣ ଛାଡ଼ିଯିବ । କଣ କରିବ ! କୂଳରେ ବସି, ଧୀରେ ଧୀରେ ଉପର ସର ଆଡ଼େଇ, ସେ ଟିକେ ପାଣି ଆଣି ପାଟିରେ ପୂରାଇଲା; କିନ୍ତୁ ଉତ୍କଟ ଗନ୍ଧ ହେତୁ ଢୋକି ପାରିଲା ନାହିଁ । ଅଣ୍ଡି

ବୁଢ଼, ଶେଷକୁ ତୃଢ ତୃଢ କରୁ କେତେ ଢୋକ ପାଣି କୌଣସିମତେ ଉଦରସ୍ଥ କରି ସେ ଏକମୁହାଁ ହୋଇ ଖାଲ ପାଖରୁ ଖଣ୍ଡେ ଦୂର ଘୁଞ୍ଚି-ଆସିଲା । ପଚା ଗନ୍ଧଟା ତଥାପି ତାର ନାକ ଫଟାଉଥାଏ । ନା, ଆଉ ଏଠାରେ ଅପେକ୍ଷା କରିବା ଉଚିତ ନୁହେଁ । ଜୀବନ ବଞ୍ଚାଇବାକୁ ନରକର ସହାୟତା ଲୋଡ଼ିଛି ସେ, ଏଥର ସେହି ଜୀବନ ପାଇଁ ନରକ ଭିତରକୁ ଅବାଧରେ ପଶିବାକୁ ହେବ ତାକୁ । ସେ ଏକମୁହାଁ ହୋଇ ଦୂର ଗାଁର ଗଛକୁ ଲକ୍ଷ୍ୟ କରି ସିଧା ସିଧା ଗଞ୍ଜର ମଝିରେ ଗୃଲିଲା ।

ଗତ ବର୍ଷ ପରି ଏବର୍ଷ ମଧ୍ୟ ଧାନର ଅବସ୍ଥା ବଡ଼ ଶୋଚନୀୟ । ହଳ ଜଟ ବଳରେ ବହନ ପକାଇବାକୁ ଲୋକ ନାହାନ୍ତି, ବହାନ ମଧ୍ୟ ନାହିଁ । ଠାଏ ଠାଏ ଯେଉଁଠି ଧାନ ବୁଣା ହୋଇଛି, ବର୍ଷା ଅଭାବରେ କଷ୍ଟ ଖରାରେ ସେ ସବୁ ଅସି ଜଳିଯାଉ ଉପରେ । ଏ ଅବସ୍ଥାରେ ଲୋକଙ୍କର ଭବିଷ୍ୟତ ଆଶା ବି ମଳିନ ହୋଇଛି । ଶୀଘ୍ର ଯଦି ବର୍ଷା ନ ହୁଏ, ଧାନଗଛ ସବୁ ନିଷ୍ଟୟ ବଳରେ ମରିବ । ଏ ବର୍ଷ ଏ ଭୀଷଣ ଦୁର୍ଭିକ୍ଷରୁ ଯେଉଁମାନେ ବଞ୍ଚି ରହିବେ, ଅଗତ ବର୍ଷ ସେମାନଙ୍କର ଆଉ ନିସ୍ତାର ନାହିଁ । ଦେଶଟା ଶ୍ମଶାନ ହେବ, ପ୍ରକୃତିର ପ୍ରଳୟଲୀଳା ତେବେ ଯାଇଁ ଶେଷ ହେବ ! କଳ୍ପିତଦେବତା, ମନୁଷ୍ୟର ଭାଗ୍ୟବିଧାତାର ଅପାର କରୁଣା, ଅନନ୍ତ ଶକ୍ତିର ପୂର୍ଣ୍ଣ ପରିଚୟ ମିଳିବ ସେତିକିବେଳେ, ଯେତେବେଳେ ଶ୍ମଶାନ ଭିତରୁ ଅଳସପ୍ରକୃତି, ସହଜବିଶ୍ୱାସୀ, ସ୍ୱଚ୍ଛନ୍ଦକାମୀ, ଧର୍ମଭୀରୁ, ମୁମୂର୍ଷୁ, ଦୁଃସ୍ଥ ଓଡ଼ିଆର କରୁଣ ଚୀତ୍କାର ଅନ୍ତରୀକ୍ଷ ବିଦୀର୍ଣ୍ଣ କରିବ—“ଜାହି ମେ ପରମେଶ୍ୱର !”

—ବତିଶ—

ମହାନ୍ତ ମହାରାଜ ଉମାକୁ ଗୃହିଁ କହିଲେ, “ତୋର କିଛି ଅସୁବିଧା ହେଉ ନାହିଁ ତ ମା ?”

ଉମା ମୁହଁ ଟେକି ଗୃହିଁଲା । ଉଜ୍ଜ୍ୱଳ ଦୀପ ଆଲୁଅରେ ତାର ସୁନ୍ଦର ମୁହଁଟି ଝଲସିଉଠିଲା । ବର୍ତ୍ତୁଳ ଗଲୁକରେ ରକ୍ତରାଗ ଜଳୁଥାଏ । ସେ ଧୀରେ ଧୀରେ ପରିହିତ ନୀଳ ଶାଢୀର ଜରି ଧଡ଼ିକୁ ସାମାନ୍ୟ ଟାଣି କହିଲା, “ଅସୁବିଧା କଣ ହେବ ମୋର ? ଗରିବ ଘରର ଝିଅ ମୁଁ, ମୋତେ ଅଛି

ଏତେ ସୁଖରେ ରଖି ସବୁ ସୁବିଧା କରି କଷ୍ଟ ଦେଉଛ କାହିଁକି ବାବା ? ମୁଁ ପେଟଜ୍ୱାଳାରେ ପ୍ରାଣ ରଖିବାକୁ ଛତରକୁ ଗୋଡ଼ କାଢ଼ିଥିଲି । ତମେ ମୋତେ ଦୟା କରି ଘରେ ଆଶ୍ରୟ ଦେଇଛ । ତମର ସେବା କରି ମୁଠିଏ ଖାଇବାକୁ ପାଇଲେ ମୋର ଯଥେଷ୍ଟ ।''

ମହନ୍ତବାବା ସାମାନ୍ୟ ହସିଲେ । ତାଙ୍କର ପ୍ରୌଢ଼ ହୃଦୟର କେଉଁ ନିଭୃତ କୋଣରେ ବାତ୍ସଲ୍ୟର ସୂକ୍ଷ୍ମ ତନ୍ତ୍ରୀଟି ସମାନ୍ୟ ଥରିଉଠିଲା ! ଦେବତା ଅତିଥିର ସେବାବ୍ରତ ଅବଲମ୍ବନ କରି, ଅଟଳ ବ୍ରହ୍ମଚର୍ଯ୍ୟ ଘେନି ଜୀବନ ଯାପନ କରିବାକୁ ସେ ସଂସାରର ସବୁ ସୁଖ ଛାଡ଼ି ଆସିଥିଲେ । ଏତେ ସମ୍ପତ୍ତିର ସହସା ଅଧିକାରୀ ହୋଇ ସୁଦୀର୍ଘ ଜୀବନ ଉପରେ କେତେକେତେ ସୁଖଦୁଃଖର ବାତ୍ୟା ବହି ଗଲିଗଲା । ଦେବସେବା, ଅତିଥିସେବା ସଙ୍ଗେ ସଙ୍ଗେ ସଂସାରର କୌଣସି ସୁଖ କୌଣସି ଆନନ୍ଦ ଉପଭୋଗ କରିବାକୁ ଆଉ ବାକି ନାହିଁ । ପ୍ରଭୂତ ଅର୍ଥର ଅଧିକାରୀ ଯେ ତାର ଆଉ କେଉଁ କଥାରେ ଅଭାବ ?

କିନ୍ତୁ ଗୋଟିଏ ବିଷୟର ଅଭାବ ରହିଥିଲା ତାଙ୍କର । ଗୋଟିଏ କୋମଳ ସୂକ୍ଷ୍ମ ପ୍ରବୃତ୍ତି ଅଶାନ୍ତ ହୋଇ ତାଙ୍କ ପ୍ରାଣକୁ ବେଳେ ବେଳେ ମଥିତ କରୁଥିଲା । ସେହି ପ୍ରବୃତ୍ତିକୁ, ମନର ରହକୁ ସନ୍ତୁଷ୍ଟ କରିବାକୁ ଅନାଥିନୀ ଉମାକୁ ବାଟରୁ ଗୋଟାଇ ଆଣି ମନର ସ୍ୱପ୍ନପ୍ରତିମା, ବାତ୍ସଲ୍ୟର କ୍ରୀଡ଼ନକ କରି ଗଢ଼ିବାକୁ ଇଚ୍ଛା ବଳବତୀ ହେଲା ତାଙ୍କର । ସେ ଉମାକୁ କନ୍ୟାରୂପେ ବରଣ କରି ଅପୂର୍ଣ୍ଣ ଜୀବନକୁ ପୂର୍ଣ୍ଣ କରିବେ ବୋଲି ଭାବିଲେ ।

ମହନ୍ତ କହିଲେ, "ତୁ କାହାର ସେବା କରିବୁ ଜାଣୁ ମା ? ଯେଉଁ ଅଦେଖା ହାତର ଇଙ୍ଗିତରେ ତତେ ମୁଁ ମୃତ୍ୟୁଯାତ୍ରାରୁ, ନରକପଥରୁ ଗୋଟାଇ ଆଣିଛି, ସେହି ଶକ୍ତିମାନ୍ ପ୍ରତ୍ୟକ୍ଷ ଦେବତା ଲକ୍ଷ୍ମୀକାନ୍ତ ଦେଉଳରେ ବିଜେ ହୋଇଛନ୍ତି, ଦିନରାତି ତାଙ୍କର ସେବା ତୁ କରୁଥା । ତୋର ଭବିଷ୍ୟତ ତୁ ତାଙ୍କର ଗୋଡ଼ ତଳେ ଅନାଇଦେ । ସେ ସବୁ ବୁଝିବେ···।"

ରାତି ପ୍ରାୟ ଦୁଇ ଘଡ଼ି ହେବ । ମଠର ଦାସୀ ଟୋଗୋଟିଏ ବେଲାରେ ଅଧ ବେଲାଏ ହେବ ଘୋରା ଚନ୍ଦନ ହାତରେ ଧରି ସେଠାରେ ଉପସ୍ଥିତ

ହେଲା । ମହନ୍ତ ତାକୁ ଦେଖି କହିଲେ, "କିଏ ସେ ? ଲକ୍ଷ୍ମୀକାନ୍ତଙ୍କ ଛତ୍ରା-ଚନ୍ଦନ ! ବାଃ, ବସିଦେ ଥାଳ ଉପରେ ।"

ଦାସୀ ଉତ୍ତର ନ ଦେଇ ବେଲାଟି ଥାଳ ଉପରେ ସନ୍ତର୍ପଣରେ ରଖି-ଦେଲା । କେଜାଣି କାହିଁକି ଥରୁ ଅଖିରେ ଉମାକୁ ବାରମ୍ବାର ଚାହିଁ ମୁହଁ ମୋଡ଼ିବାକୁ ଲାଗିଲା ।

ମହନ୍ତ କହିଲେ, "ଆଲୋ ସୁଧୀ, ଦେଖ ତ ଏ ପିଲାଟିକୁ । କହିଲୁ, ସାକ୍ଷାତ୍ ଲକ୍ଷ୍ମୀ ପରି ଦିଶୁଛି ନା ?"

ଉମା ସୁଧୀକୁ ଚାହିଁଲା । ସୁଧୀ ଉଦ୍‌ଗତ ହସଟାକୁ ଚାପି ଧରି କହିଲା, "ହଁ, କାହୁଁ ପାଇଲେ... ?"

"ମୁଁ ପାଇବି କେଉଁଠୁ ? ଲକ୍ଷ୍ମୀକାନ୍ତ ତାଙ୍କର ସେବା କରିବାକୁ ନିଜେ ତାକୁ ପଠାଇ ଦେଇଛନ୍ତି ପରି ଲୋ ! ତୋ କାମ ଏଥର ଲାଘବ ହେବ... ।"

ସୁଧୀ ଗମ୍ଭୀର ହୋଇ ଭାବିବାକୁ ଲାଗିଲା, କେତେ କେତେ ଯେ ଲକ୍ଷ୍ମୀ ଏହିପରି ସହସା ଆବିର୍ଭୂତ ହୋଇ ଲକ୍ଷ୍ମୀକାନ୍ତଙ୍କର ଅନ୍ଧାର ଅଗଣାକୁ ରୂପରେ ଆଲୋକରେ ଆଲୋକିତ କରି ଶେଷକୁ ଅଜଣା ଅଶୁଣା ଦିନେ କାହିଁ ଅନ୍ତ-ର୍ହିତ ହୋଇଯାଇଛନ୍ତି । ଏ ବା କେତେ ? ନିଜର ଅତୀତ କଥା ଭାବି ସେ ଲମର୍ଷ ହେଲା । ବହୁ ବର୍ଷ ତଳେ ଯେତେବେଳେ ଯୌବନର ଉତ୍ତେ-ଜନାରେ ତାର ମନପ୍ରାଣ ଜାଗ୍ରତ ଚଞ୍ଚଳ ଥିଲା, ଯୌବନର ଲାବଣ୍ୟରେ ତାର ଅଙ୍ଗକାର ଶିଥିଳ ଦେହ ଚଳଚଳ ହୋଇ ଝଲସି ଉଠୁଥିଲା, ସେ ବାଳବିଧବା ହୋଇ ଭକ୍ତିପୂତ ଜୀବନ ଯାପନ କରିବାକୁ ମହନ୍ତ ମହାରାଜ ପରମ-ହଂସ ପରମାନନ୍ଦଙ୍କର ଅଭୟଚରଣ ତଳେ ଆଶ୍ରୟ ନେଇଥିଲା ।

ତାର ତରୁଣ ଜୀବନର ପଦସ୍ଖଳନ ପାଇଁ ଦାୟୀ କିଏ ? ସେ ଜାଣେ, ମହନ୍ତ ମଧ୍ୟ ଜାଣନ୍ତି । ଆଜି ମହନ୍ତ ବୁଢ଼ା ହୋଇଛନ୍ତି, ତାର ଯୌବନର ମଧ୍ୟ ଶେଷ ଭୁଟିଛି । ତଥାପି ତାର ସବୁ କଥା ଗୋଟି ଗୋଟି ହୋଇ ମନେ ଅଛି ତ ଆଜି ଯାଏ !

ସୁଧୀ ପଚାରିଲା, "କି ଘର ପିଲା ସେ...?"

ମହନ୍ତ କହିଲେ,"ଆଜି ଯାକେ ଜାଣିନୁ ? ସେ ତମେ କିଛି କହେ ନା ପରି... ?"

"ନା...।"

"ଆରେ,ସେ ଯଦ ହାଡ଼ିଘର ପିଲା ହୁଏ... ସେଥିରୁ କଣ ମିଳବ ? ମଣିଷ ହୁଅ ତ... ।"

ହସି ହସି ସୁଧୀ କହୁଲ, "ହଁ ମଣିଷ ପିଲା... !"

"ତୁ କଣ ତାକୁ ଝିଅ କର ପାରବୁ ନାହିଁ ?"

"ଆଉ ତମେ ?" ସୁଧୀ ସୁଗ ଅଭିମାନରେ କହୁଲ ।

"ସେ ତ ମୋର ବୁଢ଼ା ବଅସର ଝିଅଟା ଲେ...।" ମହାନ୍ତ ହସିଲେ ।

ସୁଧୀ କହୁଲ, "ତେବେ ତ ଭଲ । ତମର ଏ ଝିଅଟିକୁ...।"

"ତୁ ଏକା ଝିଅ ପର ପାଳଥିବୁ ; ପାଖରୁ କୁଆଡ଼େ ଛଡ ଦେବୁ ନାହିଁ ।"

ସୁଧୀ ଉମାର ମୁହଁକୁ ଥରେ ଚାହିଁଲା । କେଜାଣି କଣ ଭାବ ତାର ହାତ ଧର ସଜଳ ଆଖିରେ କହୁଲ, "ମୋର ଝିଅ ହୋଇ ପାରବୁ ଉମା...?"

ଉମା କଛ କହୁଲ ନାହିଁ ।

ମହାନ୍ତ କହୁଲେ, "ତା ନା ଉମା ନୁହେଁ ସୁଧୀ, ତା ନା ଲକ୍ଷ୍ମୀ ପରୁ ! ସେ ମୋର ମା । ତୁ ତାକୁ ଆଦର କଲେ ସେ ତୋର ଉପଯୁକ୍ତ ଝିଅ ହେବାରେ ତ୍ରୁଟି କରବ ନାହିଁ ।" ଉମାକୁ ଗୁହଁ କହୁଲେ, "ଯା ମା ଲକ୍ଷ୍ମୀ, ସୁଧୀ ସାଙ୍ଗରେ ଯା... ।"

ଉମା ମହାନ୍ତଙ୍କ କଥା ମାନ ସୁଧୀ ପଛେ ପଛେ ଗଲା । ମହାନ୍ତ ମୁହଁ ବୁଲାଇ ଆଖିରୁ ଲୁହ ପୋଛୁ, ଅନ୍ୟ ବାଟ ଦେଇ ଦାଣ୍ଡଖଞ୍ଜାକୁ ଗଲେ ।

ଦନ କେତୋଟାରେ ଉମା ନଜ ଗୁଣରେ ସୁଧୀକୁ ବଶ କରନେଲା । 'ମା ମା' ବୋଲ ସେ ସବୁବେଳେ ସୁଧୀର ପଛେ ପଛେ ଗୋଡ଼ାଇଥାଏ । ସୁଧୀ ତୁଣ୍ଡରୁ କଥା ନ ବାହାରୁଣୁ ସେ ଆଗ ବଳ ପଡ଼ ପାଞ୍ଚ ପାଇଟି କର ଯାଏ । ପାଇଟି ବୋଇଲେ, ସକାଳୁ ଉଠି ମଠର ଅଗଣା ଓଳାଓଳ, ଠାକୁର ବାସନ ମଜା, ଠାକୁରଙ୍କ ପାଇଁ ଚନ୍ଦନ ଘୋରୁ , ଦୁଇ ବେଳା ବଗିଚାରୁ ଫୁଲ ତୋଳ ଫୁଲ ଗୁନ୍ଥିବା ଇତ୍ୟାଦ । ରନ୍ଧାବଢ଼ା କାମ କରବାକୁ ପୂଜାରୀ ଅଛନ୍ତି । ବାସନକୁସନ ମାଜିବାକୁ ମଧ ବାହାରଆ ଲୋକ ଅଛନ୍ତି । ସେଥିକି ଏମାନେ ଲଗା ନୁହନ୍ତି । ଦୁଇ ବେଳା ଦୁଇ ମୁଠି ପ୍ରସାଦ

ସେବା କର ନାଷ୍ଟିକ୍ତରେ ହରିନାମ ନେବାକୁ ଯଥେଷ୍ଟ ବେଳ ମିଳେ । ଭିତର ଅଗଣାକୁ ଯିବାକୁ ତ ବାହାର ଲୋକଙ୍କୁ ମନା; ଆଉ କୌଣସି କଥାରେ ଭୟ ବା ସଙ୍କୋଚ କରିବାର କାରଣ ନାହିଁ ।

ଉମା ତ ରାତିରେ ରାଧୀ ପାଖରେ ଶୁଏ, ଦିନ ବେଳେ ବି ତାର ଘରେ ବସାଉଠା ଚଳପ୍ରଚଳ ହୁଏ । ସୁବିଧା ପାଇଲେ ବେଳ ଥିଲେ ସେ ରାଧୀର ବାରଣ ନ ମାନି ତା ଗୋଡ଼ରେ ହାତ ବୁଲାଏ । ରାଧୀ 'ନାହିଁ ନାହିଁ' କଲେ ବି ଗାଧୁଆବେଳେ ତା ପିଠିରେ ଗାମୁଛା ବୁଲାଇଆଣେ । ପୂଜା ପାଇଁ ଫୁଲ ତୁଳସୀପତ୍ର ଆଣି ଧୋଇଧାଇ ରଖେ । ରାଧୀ ପ୍ରସାଦ ନ ପାଇଲେ ଉମା ପାଟିରେ ପାଣି ଦିଏ ନାହିଁ ।

ସେବାରେ ତୁଷ୍ଟ ଅଟେ । ପର ହୋଇ କେହି ରହି ପାରେ ନାହିଁ । ନିଜକୁ ତଳକୁ ନୁଆଇଁ ଦେଲେ କଠିଣ ପାଷାଣର ଛାତି ତରଳିଯାଏ । ରାଧୀ ତ ମଣିଷ । ଉମାର ଗୁଣରେ, ଉମାର ଢଙ୍ଗଢାଙ୍ଗରେ ସେ ଅପେ ଅପେ କିଣି ହୋଇଗଲା । ତାର ସନ୍ଦେହୀ ମନଟା ବି କପରି ବଦଳିଗଲା । ସେ ବୁଝିଲା, ଉମାର ରୂପଟି ଯେପରି ସୁନ୍ଦର, ଗୁଣ ମଧ୍ୟ ସେହିପରି ସୁନ୍ଦର । ସରଳ ଶାନ୍ତ ଶିଷ୍ଟ ପିଲାଟି, ଲଜକୁଳୀ ଲତା—ଆଖି ଦେଖାଇଲେ ଝାଉଁଳି ପଡ଼େ । ସଂସାରର ଭଲମନ୍ଦ କିଛି ଜାଣେ ନାହିଁ । ଆହା ! ଏ ପିଲା ପୁଣି ଘର ଛାଡ଼ି ଦାଣ୍ଡକୁ ଆସିଲା କାହିଁକି ? ରାଧୀ ସାହସକରି ପଚାରି ପାରେ ନାହିଁ ।

ଦିନେ ରାତି ଅଧରେ, ମନ୍ଦିରର ଚନ୍ଦ୍ରପଟରେ ଗୋଟିଏ ଛୋଟ କୋଠରୀରେ, ତଳେ ଖଣ୍ଡେ ମଶିଣା ପାରି ରାଧୀ ଶୋଇଛି । ମୁଣ୍ଡ ଉପରେ ତାର ଝୁଲାମୁଣି । ତାର ଗୋଡ଼ ଦିଓଟି କୋଳରେ ରଖି ଉମା ଧୀରେ ଧୀରେ ଘଷିଦେଉଛି । ଗୋଡ଼ ତଳେ ରୁଖା ଉପରେ ପୁନ୍ନାଗ ତେଲର ଦୀପ ମିଞ୍ଜିମିଞ୍ଜି ହୋଇ ଜଳୁଛି । ରାଧୀ ମଧୁର କଣ୍ଠରେ କହିଲା, "ଶୋଇପଡ଼ । ଲକ୍ଷ୍ମୀ, ଆଉ... ।"

ରାଧୀର କଥା ନ ମାନି ଉମା ପୂର୍ବପରି ଘଷି ଦେବାକୁ ଲାଗିଲା ।

କେତେବେଳକେ ସେ ଆର୍ଦ୍ର କଣ୍ଠରେ ପଚାରିଲା, "ଆଚ୍ଛା ଲକ୍ଷ୍ମୀ, ଗୋଟିଏ କଥା ପଚାରିବି ?" ଉମା କହିଲା, "କାହିଁକି ମା, ମୋତେ କଣ ପଚାରିବାର ଅଧିକାର ତୋର ନାହିଁ ? ତୁ ସବୁଦିନେ ମୋତେ ଯେପରି

କଣ ପଗ୍ଭରୁ ପଗ୍ଭରୁ ହୋଇ ଆଉ ପଗ୍ଭରୁ ନା, ମୁଁ ଜାଣି ହୁନ ରହେ... ।"

"ସେତେ ନେ..., କାଳେ ତୋ ମନରେ ଦୁଃଖ ହେବ... !"

"ଦୁଃଖ ହେବ କାହିଁକି ? ମୁଁ ଯେ ଦୁଃଖ ଭିତରେ ବଢ଼ି ଅଛି... ।"

ସୁଧୀ ପଗ୍ଭରିଲା, "ଆଚ୍ଛା, ତୁ ତୋର ଘରଦ୍ୱାର ଛାଡ଼ି, ଏପରି ପିଲା ବୟସରେ ଏତେ ଦୂର ଦେଶ ବାଟକୁ ବାହାରିଲୁ କାହିଁକି ?"

ଉମା ମନେ ମନେ ହସି କହିଲା, "ଏଇଥି ପାଇଁ ମନରେ ମୋର କଷ୍ଟ ହେବ ? ପିଲାଦିନୁଁ ଯେତେ ଯେତେ କଷ୍ଟ ମୁଁ ଏଇ ଅଙ୍ଗରେ ସହିଛି, ଗୋଟି ଗୋଟି କରି ମୋର ମନେ ଅଛି । ସବୁ ତୋ ଆଗରେ କହୁଛି ଶୁଣ । ତୋ ଛଡ଼ା ମୋର ଦୁଃଖକାହାଣୀ ଆଉ କାହା ଆଗରେ କହିବି ? ମୋର ଆଉ କିଏ ଅଛି ?"

ଉମା ଧୀରେ ଧୀରେ ତାର ଅତୀତ ଜୀବନର ପୃଷ୍ଠା ଓଲଟାଇ ସବୁ-କଥା ନିଃସଙ୍କୋଚରେ ବର୍ଣ୍ଣନା କରିଗଲା । ପର ଆଗରେ ମନକଥା ଖୋଲି କହିଲେ ମନର ଦୁଃଖ କମିଯାଏ । ଉମା ତାର ଇତିହାସ କହି ମନର ଗୁରୁଭାର ଲାଘବ କଲା ।

ଶୁଣି ଶୁଣି ସୁଧୀ ଶେଷକୁ ଆଉ ଧୈର୍ଯ୍ୟ ଧରି ରହି ପାରିଲା ନାହିଁ । ସେ ଉଠିବସି ସଜଳ ଆଖିରେ ଉମାର ଅଶ୍ରୁସିକ୍ତ ମୁହଁକୁ ଗ୍ଭହିଁ କରୁଣ ସ୍ୱରରେ କହିଲା, "ମୋର ମନ ଭିତରେ ସନ୍ଦେହର ଗୋଟାଏ ଅନ୍ଧାରଆ-କୁହୁଡ଼ି ଡାଙ୍କି ରହିଥିଲା ମା ! ତୋ କଥା ଶୁଣି ମୋର ସବୁ ସନ୍ଦେହ ଦୂର ହୋଇଗଲା । ମା ମୋର, କାନ୍ଦୁଛୁ କାହିଁକି ?" ସେ ଉମାର ଆଖିରୁ ଲୁହ ପୋଛି ତାକୁ କୋଳକୁ ଆଉଜାଇ ତାର ପିଠି ଅଉଁସି କହିଲା, "କପାଳରେ ଯାହାର ଯାହା ଅଛି ନିଶ୍ଚୟ ଫଳିବ ଲେ ମା ।"

ଉମା ଧୀରେ ଧୀରେ ତା ମୁଣ୍ଡଟି ସୁଧୀର ଛାତିକୁ ଅଉଜାଇ ଗଦ୍‌ଗଦ କଣ୍ଠରେ କହିଲା, "ବାପ ମା ସମସ୍ତଙ୍କୁ ହରାଇ ମୁଁ ଆଜି ନିସ୍ୱଶ ହୋଇ ତୋର ଶରଣ ପଶିଛି । ଭବିଷ୍ୟତ୍‌ଟା ମୋର କେଉଁ ବାଟରେ ଯିବ, ମୁଁ ଜାଣେ ନାହିଁ... ।"

"କିନ୍ତୁ ମା, ଭବିଷ୍ୟତ୍ କଥା ଭାବି ତୁ କଣ ଏ ନରକ ଭିତରକୁ ମଠରୁ ଆସିଛୁ ? ଏଠାରେ ଦେବତା ନାହାନ୍ତି ଲୋ…। ଏଠା ନିର୍ମମ ରାକ୍ଷସର ଘର । ମୁଠିଏ ଖାଇବାକୁ ମିଳିବ ସତ; କିନ୍ତୁ ନରକ କୁଣ୍ଡରେ ଦିନରାତି ଘାଣ୍ଟି ହେବାକୁ ପଡ଼ିବ… ।"

ଉମା ଉଦ୍ବେଳିତ ହୋଇ କହିଲା, "ଏପରି କାହିଁକି କହୁଛୁ ତୁ ?"

ରାଧୀ କହିଲା, ଯାହା ଦୁଇ ଆଖିରେ ଦେଖିଛି, ଯାହା ନିଜ ଅଙ୍ଗରେ ସହିଛି, ତାହାହିଁ ତ କହୁଛି ଝିଅ ! ଯୌବନରେ ବିଧବା ହୋଇ ଶାନ୍ତି ଆଶାରେ, ମୁକ୍ତି ଆଶାରେ ମୁଁ ମଠରେ ଲକ୍ଷ୍ମୀକାନ୍ତଙ୍କର ଆଶ୍ରା ନେଇଥିଲି । ପେଟ ପାଇଁ ତ ଆସି ନ ଥିଲି । ମୁଠିଏ ଖାଇବାକୁ ମୋର ଅଚଳ ରହି ନ ଥାନ୍ତା । କିନ୍ତୁ ମା, ହେଲା କଣ ? ପ୍ରଲୋଭନ ତ ପଦେ ପଦେ ଟାଣି ରଖିଛି ମଣିଷକୁ । ଆନନ୍ଦ ବୋଲି, ସୁଖ ବୋଲି ଯାହାକୁ ମଣିଥିଲି, ସେହି ତ ମୋର ନରକଭୋଗ ଲୋ ମା ! ଜୀବନରେ ଶାନ୍ତି ପାଇଲି ନାହିଁ, ମୁକ୍ତି ତ ଦୂରର କଥା ।"

କାନ୍ଦି କାନ୍ଦି ଉମା ପଚାରିଲା, "ତେବେ କଣ ମୁଁ ବାଟର ଗଛମୂଳ ଛାଡ଼ି ଏଠାକୁ ଆସି ଭୁଲ କରିଛି ?"

ଅଟେଇ ଅଟେଇ ରାଧୀ କହିଲା, "ହଁ, ଭୁଲ୍ କରିଛୁ । ତୋ ପରି ଶହ ଶହ ଲୋକ ବାଟରେ ଗଛତଳେ ଆଶ୍ରା ନେଇଛନ୍ତି । ଯାହାର କାଳ ପୂରୁଛି, ସେ ମରୁଛି, ଗଛମୂଳେ ସଢ଼ୁଛି । ଯେ ମଲା, ସେ ଗଲା । ତାକୁ ଆଉ ହଇରାଣ ହେବାକୁ ପଡ଼ିଲା ନାହିଁ । କିନ୍ତୁ ଏଠି ଯେ ଜୀଅନ୍ତା କଲବଲ ! ସୁଖ ବୋଲି ମଣିବ ଯାହାକୁ, ସେହି ତ ନରକଯନ୍ତ୍ରଣା… ।"

ଅଧୀର ହୋଇ ଉମା କହିଲା, "ତେବେ ମୁଁ… ।"

"ମୋତେ ଛାଡ଼ି ପୁଣି ଗଛମୂଳକୁ ଫେରିଯିବାକୁ ତୋତେ ଦେବି ନାହିଁ ଲୋ ଲକ୍ଷ୍ମୀ । ବହୁଦିନ ପରେ, କେତେ ତପସ୍ୟା ଫଳରୁ ତୋତେ ମୁଁ ଝିଅ କରି ପାଇଛି । ତୁ ମୋର ପାଖେ ପାଖେ ଥା । ତୋର କୌଣସି ଭୟ କୌଣସି ଭାବନା ନାହିଁ ।"

ଉମା ଅବାକ୍ ହୋଇ ତାର ମୁହଁକୁ ଚାହିଁଲା ।

ରାଧୀ କହିଲା, "ବେଳ ବି ଅଛି ଗଡ଼ିଗଲାଣି । ମହନ୍ତବାବା ତୋତେ ଝିଅଠୁଁ ବଳି ଭଲ ପାନ୍ତି । ସେ ଚାହିଁଲେ ତୋର ଭବିଷ୍ୟତ୍ ଜୀବନକୁ ଉଜ୍ଜ୍ୱଳ କରାଇ ପାରିବେ । ସମୟ ଖରାପ । ଦେଶ ଟିକିଏ ଥାଇଛି ହେଉ; ଭଲ ଘର ଭଲ ବର ଦେଖି ମୁଁ ତୋତେ ନିଶ୍ଚୟ ସଂସାରକୁ ପଠାଇଦେବି । ତୋତେ ଏଠି ବେଶି ଦିନ ରହିବାକୁ ପଡ଼ିବ ନାହିଁ । ମନ ବ୍ୟସ୍ତ କର ନା ।"

ଉମା ଜାଣେ, କେବଳ ମହନ୍ତ ନୁହନ୍ତି, ମଠର ସମସ୍ତେ ରାଧୀକୁ ଭକ୍ତି କରନ୍ତୁ ବା ନ କରନ୍ତୁ ଅନ୍ତତଃ ଭୟ କରନ୍ତି । ମଠରେ ଆଶ୍ରୟ ନେବା ଆଜିକି ତାର ୨୫ ବର୍ଷରୁ ଅଧିକ ହେଲା । ସବୁ ହାଲଚାଲ ତାକୁ ଜଣା । ରାଧୀର ମାଟିକୁ ଡରି ଲୋକେ ସାହସ କରି ତା ସାଙ୍ଗରେ କଥାଭାଷା କରନ୍ତି ନାହିଁ । ସେ ଯାହା କହେ, ଯାହା କରେ, ସେଥିରେ କେହି ବାଧା ଦିଅନ୍ତି ନାହିଁ ।

ଉମା କହିଲା, "ମହନ୍ତବାବା ତ ମୋତେ ଦେବତା ପରି ଦିଶନ୍ତି ।"

ରାଧୀ ହସ ହସ ହୋଇ କହିଲା, "ସତରେ ସେ ଦେବତା ପ୍ରକୃତିର ଲୋକ । ତେବେ ମଣିଷ ହୋଇ ଦୁର୍ବଳତା ସମସ୍ତଙ୍କର ଥାଏ । ମଣିଷ ତ କିଛି ଦେବତା ନୁହେଁ ।...ମହନ୍ତଙ୍କର ଦୁର୍ବଳ ହେବାର ସମୟ ଗଡ଼ିଯାଇଛି । ପିତୃସ୍ନେହରେ ତାଙ୍କର ହୃଦୟ ପୂରିଗଲାଣି । ଏଣିକି ଆଉ କିଛି ଭୟ ନାହିଁ, ସଦାନନ୍ଦ ତ ମେଞ୍ଚିଡ ।... ନିଜେ ଭଲ ତ ଦୁନିଆ ଭଲ ଲୋ ଲକ୍ଷ୍ମୀ ! ନିଜେ ଭୁଲିଲେ ଦୁନିଆ ଭୁଲେ । ନିଅଁକୁ କେହି ହାତ ବଢ଼ାନ୍ତି ନାହିଁ କି ଅଲୁଅରେ କେହି ଚୋର କରିବାକୁ ଭରସନ୍ତି ନାହିଁ । ନିଅଁ ପରି ତେଜସ୍ୱୀନ୍, ଅଲୁଅ ପରି ନିର୍ମଳ ରହିଲେ ସବୁ ସଫା । ବୁଝିଲୁ ମା ?"

ରାଧୀର ଶେଷ କଥାଗୁଡ଼ିକ ଶୁଣି ମଧ୍ୟ ଉମା ବୁଝିବାକୁ ଚେଷ୍ଟା କଲା ନାହିଁ । ସଦାନନ୍ଦର ନାମ ଶୁଣି ସେ ଅନ୍ୟମନସ୍କ ହୋଇ ଭାବିବାକୁ ଲାଗିଲା । ଉମା ତାକୁ ପ୍ରାୟ ସବୁଦିନେ ଦେଖେ । ୨୦ ବର୍ଷର ସ୍ୱାସ୍ଥ୍ୟବାନ୍ ଯୁବକ । ସୁନାତାର ପରି ଦେହ, ସୁନ୍ଦର ରୂପ । କଥାଗୁଡ଼ିକ ହସି ହସି କେତେ ଧୀରେ ଧୀରେ କହେ । ଉମା ତାକୁ ଅନେକ ଥର ମହନ୍ତଙ୍କ ପାଖରେ ବସିଥିବାର ଦେଖି ଅଚ୍ଚ ହୋଇ ଫେରିଆସିଛି ।

ଉମା ପଚାରିଲା, "ସଦାନନ୍ଦ କିଏ ମା ?" ବେଳାଣି ତାହାଙ୍କ ସ୍ୱରମରେ ଶଙ୍କି ଗଲା । ତାର ମୁଖଭାବ ଲକ୍ଷ୍ୟ ନ କରି ବୁଧୀ କହିଲା, "ତୁ କଣ ଓଲମାଁଟା କି ଲୋ ! ଏତେ ଦିନ ଏଠି ରହିଲୁ ସଦାନନ୍ଦକୁ ଚହ୍ନିଲୁ ନାହିଁ ? ସେହି ପରା ମଠର ଅଧିକାରୀ, ଭାବି ମହନ୍ତ ଲୋ ! ମହନ୍ତବାବାଙ୍କ ନାତି ଭଣଜା । ପାଞ୍ଚ ବର୍ଷ ବୟସରୁ ଆସି ଏଠି ରହୁଛି, ମୋର ଚକୋଳରେ ଏତେଟିରୁ ଏତେ ହୋଇଛି, ଭାରି ଭଲ ପିଲା ।"

ଉମା କହିଲା, "ମହନ୍ତବାବାଙ୍କ ଭଣଜା ?"

ବୁଧୀ କହିଲା, "ଭଣଜା କିଏ, ପୁଅ କିଏ । ତୋର ତ ଭାଇ ଲେଖା ?" କହି, ସେ ବିଛଣାରେ ଶୋଇଲା । ଦୀପଟିକୁ ଫୁଙ୍କି ଲିଭାଇଦେଇ ପୁଣି କହିଲା, "ରାତି ପାହିବାକୁ ହେଲାଣି ଲକ୍ଷ୍ମୀ ! ଆ, ଏଇଠି ମୋ କୋଳରେ ଟିକିଏ ଶୋଇପଡ଼ ।"

## —ତେତିଶ—

ଛଅ କୋଶ ଆଗରୁ ଜଗୁ ଆସି ଗୋଟିଏ ଗାଁମୁଣ୍ଡରେ ପହଞ୍ଚିଲା । ଗୁଳି ଗୁଳି ଗୋଡ଼ ଧରିଗଲାଣି । ପାଦେ ଆଗକୁ ଯିବାକୁ ଶକ୍ତି ନାହିଁ । ଖରାରେ ସିଝି ଦେହ ମୁହଁ କଳାକାଠ ପଡ଼ିଗଲାଣି । ଭୋକ ମରି, ଦେହ ଝୋଲ ମାରି ଯାଉଛି । ବାଡ଼ ଖଣ୍ଡ କାନ୍ଧରେ ପକାଇ ଗୁଳିବାକୁ ବଳ ପାଉ ନାହିଁ । ଅବଶରୁ ଆଖି ମାଡ଼ିପଡ଼ୁଛି । ଗହିର ବାଟ ତତଲା ଭୂଇଁରେ ଗୁଳି ଗୁଳି ଗୋଡ଼ତଳ ରଙ୍ଗା ପଡ଼ିଯାଇଛି । ବାଟରେ ବାରମ୍ବାର ଝୁଣ୍ଟି, ଗୋଡ଼ ଅଙ୍ଗୁଳି ଅନେକ ସ୍ଥାନରେ ଖଣ୍ଡିଆ ହୋଇ ଧୂଳି ଲାଗି ପୋଡ଼ୁଛି । ତାର ଚାଲି ପହୁଞ୍ଚିବା ଜଗୁ ପକ୍ଷରେ ଯେପରି ଅସମ୍ଭବ ହେଲାଣି ।

ସେ ଗାଁମୁଣ୍ଡର ଗୋଟିଏ ଗଛତଳେ ବସିଲା । ଆଜି ଆଉ ଯାଇ ହେବ ନାହିଁ । ଏହିଠାରେ କୌଣସିମତେ ରାତି କାଟି ପର ଦିନ ଗୋପକୁ ଯିବାର କଥା । ଶ୍ରାନ୍ତି ଦୂର କରିବାକୁ ସେ ଗଛମୂଳ ଛାଇ ତଳେ ବସିଲା । ଦୁଇ ଆଣ୍ଠୁର ଦୁଇ ପାଖରେ ହାତ ଗୁଡ଼ାଇ, ତା ଉପରେ ମୁଣ୍ଡ ରଖି ଆଖି ବୁଜିଲା । ପବନ ଧୀରେ ଧୀରେ ତାର ଝାଳ କରକର ଦେହକୁ ଶୀତଳ କରିବାକୁ ଲାଗିଲା । ତାକୁ ନିଦ ହେଲା ।

ଖସ୍ର ଟେକ କମି ଆସିଲା । ହଠାତ୍ କୁକୁରଙ୍କର ଭୁଉଁଭୁଉଁ ଡାକରେ ତାର ନିଦ ଭାଙ୍ଗିଲା । ସେ ଉଠି ବାଡ଼ି ଖଣ୍ଡ ହାତରେ ଧରି ଠିଆ ହେଲା । ଓଃ, ବେଳ गଡ଼ିଗଲାଣି । ଗାଁ ଭିତରକୁ ଯାଇ କାହା ଘରେ ରାତିଟା କଟାଇବାର ବ୍ୟବସ୍ଥା ଆଗରୁ ନ କଲେ ବଡ଼ ଅସୁବିଧାରେ ପଡ଼ିବାକୁ ହେବ । ଟିକୁ ମଦୁଆଙ୍କ ପରି ଟଳି ଟଳି ଆଗକୁ ଚାଲିଲା । କୁକୁର ହଡ଼ା ସନ୍ଦେହରେ ଟିକୁକୁ ଚାହିଁ ଧାଇଁ ଧାଇଁ ବିପରୀତ ଆଡ଼େ ଚାଲିଗଲେ ।

କିଛିଦୂର ଯାଇ ସେ ଗୋଟିଏ ଅମ୍ବ ତୋଟା ଭିତରେ ପଶିଲା । ଚାରିଆଡ଼କୁ ଆଖି ବୁଲାଇ ଯେଉଁ ଭୟଙ୍କର ଦୃଶ୍ୟ ଦେଖିଲା, ତାର ଟାଣ ମନ ଦବିଗଲା । ଗୋଡ଼ ଆଗକୁ ନ ପଡ଼ି ଯେଉଁଠି ଥିଲା, ସେଇଠି ଅଟକିଗଲା । ଛାତି ଭିତରଟା ଥର ଥର ହୋଇ କମ୍ପିବାକୁ ଲାଗିଲା ।

ଅନ୍ଧାରିଆ ଘଞ୍ଚ ଅମ୍ବତୋଟାଟା; ଗଛପାଖରେ ଉଇ ହୁଙ୍କା; ତାର ଭିତରେ ବାଟ ପଡ଼ିଛି । ତୋଟା ମଝିରେ, ଗଛତଳେ ଗୋଟାଏ ଶବକୁ ବିଲୁଆକୁକୁର, ଶାଗୁଣା ଘେରି ଟଣାଟଣି କରୁଛନ୍ତି । ତୋଟାରେ ଏଣେ ତେଣେ ମଧ୍ୟ ଆଉ କେତୋଟି ଶବକୁ ସେହିପରି ବିଲୁଆକୁକୁର ଘେରି ବସିଛନ୍ତି ; ସ୍ତ୍ରୀ, ପୁରୁଷ, ବାଳକ ସମସ୍ତେ ଆଜି ସମଦଶାପନ୍ନ ହୋଇ ମରଣକୁ ବରଣ କରିଛନ୍ତି । ଭୀଷଣ ଦୁର୍ଭିକ୍ଷର ବିରୁଦ୍ଧରେ ତୁମୂଳ ସଗ୍ରାମ କରି ଶେଷକୁ ସେମାନେ ହାରିଯାଇ ହୋଇ ଅମ୍ବତଳେ ଦେଇଛନ୍ତି ଦୁର୍ଭିକ୍ଷ ରାକ୍ଷସର ସନ୍ତୁଷ୍ଟି ପାଇଁ । ପରାଜିତ ସେମାନେ ତଥାପି ସେମାନେ ବୀର ! ପ୍ରତିହିଂସା-ପରାୟଣ ବିଲୁଆକୁକୁର ସେମାନଙ୍କର ତ୍ୟକ୍ତ ମଲା ଦେହକୁ କ୍ଷତବିକ୍ଷତ କରି ମହା ଆନନ୍ଦରେ କୋଳାହଳ କରି ଖାଉଛନ୍ତି; ସେଥିକି ସେମାନଙ୍କର ଶୋଚନା କରିବାର ଅବସର ନାହିଁ ।

ବୀର ଓଡ଼ିଆ, ଅତୀତରେ ସେ ବିଜୟ ପାଇଁ, ମାନସମ୍ଭ୍ରମ ପାଇଁ ଅଜଣା ଦେଶର ଅଚିହ୍ନା ମଶାଣିରେ ଦେହ ମିଶାଇ ଦେଇଥିଲା ମଣିଷର ସଙ୍ଗେ ସଂଗ୍ରାମ କରି । ବୀର ଓଡ଼ିଆ , ଧନ ପାଇଁ ସୁଖ ପାଇଁ ସୁଦୂର ଦରିଆର ଅତଳ ଗର୍ଭରେ ଶୀତଳ ସମାଧି ନେଇଥିଲା ଦିନେ ପ୍ରକୃତି ସଙ୍ଗେ ସମର କରି । ଆଜି ସେହି ବୀର ଓଡ଼ିଆ, ସ୍ୱଦେଶର ପଥଘାଟ, ବନକାନ୍ତାର ସବୁଠାରେ ନିଜର ବିଜିତ ଦେହ ବିଛାଇ ଦେଇଛି ନିଜ ସଙ୍ଗେ

ନିଜର ଉଦର ସଙ୍ଗେ ସଂଗ୍ରାମ କରି । ସଂସାର ଆଖିରେ ସେ ଅଛି ଷଣ୍ଢୁ, କାପୁରୁଷ, ମେଣ୍ଢା; କିନ୍ତୁ ମରଣ ଆଖିରେ ସେ ପ୍ରଚଳପରାକ୍ରାନ୍ତ ଖାରବେଳ ! ସୁଖରେ ମରିବାକୁ ସେ ଆଜି ଚାହେଁ ନା । ସେ ଚାହେଁ ଯୁଦ୍ଧ—ଅବସ୍ଥା ସଙ୍ଗେ ନୁହେଁ, ମରଣ ସଙ୍ଗେ । କାରଣ ସେ ବୀର !

ଜଗୁ ଆଉ ଭୟ କରିବ କଣ ? ଦିନେ ତୁ ଏ ତ ତାକୁ ବି ଏହିପରି ଗଛମୂଳରେ ଶ୍ମାନଶୃଗାଳର ଆହାର୍ଯ୍ୟ ହୋଇ ଶୋଇବାକୁ ପଡ଼ିବ । ଯେତେବେଳେ ଯାହା ହେବାର ତ ହେବ ! ଆଗରୁଁ ଡରିହରି ପଳାଇବ କାହିଁକି ?

ସେ ଧୀରେ ଧୀରେ ତୋଟାର ଗୋଟିଏ ପାଖ ବାଡ଼ କଡ଼େ କଡ଼େ ଚାଲିଲା । ଉତ୍କଟ ପଚା ଗନ୍ଧରେ ତାର ନାକ ଫାଟିପଡ଼ୁଛି; ତଥାପି ସେ ମାନିଲା ନାହିଁ, ଅଟକି ରହିଲା ନାହିଁ, ନିଃଶବ୍ଦରେ ଏଣିକି ତେଣିକି ଚାହିଁ ଦ୍ରୁତପଦରେ ଆଗକୁ ଚାଲିଲା । ରକ୍ତମୁଖା କୁକୁରଗୁଡ଼ାକ ଭୟଙ୍କର ଆଖି ଦେଖାଇ ସନ୍ଦେହରେ ତା ଆଡ଼କୁ ଚାହିଁଲେ । ଶିଲୁଆଗୁଡ଼ା ମୁହଁ ବୁଲାଇ ସତେ କି ଜିଜ୍ଞାସୁ ନୟନରେ ତାର ମନକଥା ଜାଣିବାକୁ ଚେଷ୍ଟା କଲେ । ଜଗୁ ତଳକୁ ମୁହଁ କରି ଆଡ଼ ଆଖିରେ ସବୁ ଦେଖିଲା, ଭୟରେ ସର୍ବାଙ୍ଗରୁ ତାର ପ୍ରାଣ ଛାଡ଼ି ଆସିଲା ଯେପରି ! ଓଃ, ଯଦି ସେମାନେ ତାକୁ କାମୁଡ଼ିବାକୁ ଗୋଡ଼ାନ୍ତି ସେ କଣ କରିବ ? ସେ ତାର ଠେଙ୍ଗାଟିକୁ ଆହୁରି ଚିପି ଧରି, ଉପରକୁ—ଗଛକୁ ଚାହିଁଲା । ଆରେ, ପାଖରେ ଗଛ ଥାଉଁ ଥାଉଁ ସେ ଡ଼ରୁଛି କାହିଁକି ?

ତୋଟା ପାରି ହୋଇ ଜଗୁ ନିଶ୍ଚିନ୍ତରେ ନିଶ୍ୱାସ ମାରିଲା । ଆଗରେ ଗଛ ସନ୍ଧିରୁ ପାଖ ଗାଁର ଭଙ୍ଗା ମଥାନ ଦିଶିଲାଣି । ଏଥର ବେଳ ବୁଡ଼ିଲେ ସେ ଡରିବ ନାହିଁ । ସେ ଥରେ ପଛକୁ, ତୋଟା ଆଡ଼କୁ ଚାହିଁ, ଗାଁ ଗୋହିରିକୁ ଲକ୍ଷ୍ୟ କରି ଚାଲିଲା । ଖଣ୍ଡେ ଦୂର ଆସି ଦେଖିଲା, ଛୋଟ ଗୋଟିଏ ଖାଲରେ ଜଣେ ସ୍ତ୍ରୀଲୋକର ଶବ ପଡ଼ିଛି, ତା ପାଖରେ ଶିଲୁଆ କୁକୁର କେହି ନାହିଁ । ଖାଲ ଟିକିଏ ଦୂରରେ ଗୋଟାଏ ଡ଼ାମରା କାଉ ତା ଆଡ଼କୁ ଅନାଇ 'କା କା' ହୋଇ ସତେ କି ତାର ବନ୍ଧୁମାନଙ୍କୁ ନିମନ୍ତ୍ରଣ କରୁଛି । ଲୋକଟି ଯେ ପେଟ ଜାଳରେ ମରିଛି, ଏ କଥା ତାର ଦୁର୍ବଳ ଦେହ ଦେଖି

କେବଳ ଝୁଣ୍ଟାପଡ଼ୁଛୁ । ଦେହଗୁଡ଼ାରେ ପଞ୍ଜରାହାଡ଼ ଦୁଇ ପାଖ ଛଡ଼ା ମାଂସର ଦେଖା ନାହିଁ ।

ଜଗୁ ମୁହଁ ଫେରାଇ ଚାହିଁଲା । ବଡ଼ ଆଚମ୍ବିତ କଥା । ଏକା ଦାନରେ ଏତେ ଲୋକ ମରି ଶୋଇଲେ ! ଠାଏ ଠାଏ ପୁଣି ହାଡ଼ ଗଦା ହୋଇଛି । କେତେ ମଣିଷ ମୁଣ୍ଡ ବାଲିରେ ଠାଏ ଠାଏ ପଡ଼ି ସଡ଼ୁଛି, ମାଛି ବସି ଭଣ ଭଣ ହେଉଛନ୍ତି । ଝୁଣ୍ଟାଯାଉଛି, ଝରଣା ପରି ଗାଁରୁ ଲୋକ ପଦା କରିଦେଲାଣି । ଗାଁ ଲୋକେ ଛନ୍‌ଛଡ଼ର ହୋଇ ଯିଏ ଯୁଆଡ଼େ ପଳାଇଲେଣି କି କଣ, ଜୀଅନ୍ତା ମଣିଷର ଦେଖା ତ ଦୂରର କଥା, ପାଟି ମଧ୍ୟ ଶୁଭୁ ନାହିଁ । ଜଗୁ ବଡ଼ ଅସ୍ତବ୍ୟସ୍ତ ହୋଇ ପଡ଼ିଲା । ଜଣେ ଜୀବନ୍ତ ମଣିଷର ମୁହଁ ଦେଖିବାକୁ ତାର ମନ ଆକୁଳ ହେଲା । ଶୀଘ୍ର ଗାଁ ଭିତରକୁ ଯିବାକୁ ଗତି ଦ୍ରୁତତର କରିବାକୁ ଇଚ୍ଛା କଲା; କିନ୍ତୁ ଅବଶ ଗୋଡ଼ ତାର ଚଳିଲା ନାହିଁ ।

ଗାଁ ଗୋହିରି ଆରମ୍ଭ; ଡାହାଣହାତ କିଆବାଡ଼, ପୁରୁଣା ଭିତ ; ବାଁ ପାଖରେ ବେତ ବାଉଁଶ କଣ୍ଟା ବଣ । ମଝିରେ ସାମାନ୍ୟ ଖୋଲା ଜାଗା । ପାଖରେ ଗୋଟିଏ ଛୋଟ ନଡ଼ିଆଗଛ । ଜଗୁର ଆଖି ଯାଇ ସେଇଠି ପଡ଼ିଲା । ସ୍ତ୍ରୀଲୋକଟିଏ—ସ୍ୱାସ୍ଥ୍ୟ ମନ୍ଦ ନୁହେଁ । ଲଙ୍ଗଳା ହୋଇ, ସେହି ଗଛମୂଳରେ, ବେଢ଼ବୁଢ଼ା କଡ଼କୁ, ଚିତ୍ ହୋଇ ଶୋଇଛି । ତାର ମୁଣ୍ଡ ପାଖରେ ଦେଢ଼ ବର୍ଷର ପିଲାଟିଏ ବସି ତଳକୁ ଗୃହିଁ କଣ କରୁଛି । ଜଗୁ ବଡ଼ ବିଚାର ମନିଲା । ଜୀଅନ୍ତା ଲୋକ କି ଏପରି ଲଙ୍ଗଳା ହୋଇ ଅରମା ଜାଗାରେ ନିଶ୍ଚିନ୍ତରେ ଶୋଇ ପାରେ, ପ୍ରାଣାଧିକ ଶିଶୁଟିକୁ ଛାଡ଼ି । ତା ମନ ବୁଝିଲା ନାହିଁ । ସେ ବାଡ଼ରେ କଣ୍ଟାଗଛ ଆଡ଼େଇ ମୁଣ୍ଡ ନୁଆଁଇ ବାଡ଼ ପାରି ହୋଇ ପାଖକୁ ଗଲା ।

ଅପରିଚିତ ଲୋକଟିଏ ଦେଖି ଶିଶୁଟି ଭୟରେ ତା ମାଆର ଛାତି ଉପରେ ଶୋଇ, ଦୁଇ ହାତରେ ତାକୁ କୁଣ୍ଢାଇ ଧରିଲା । ସ୍ତନଟିଏ ମୁଖରେ ଦେଇ ସେ ଭୟରେ ଆଖି ବୁଜି ଶୋଇବାର ଛଳନା କଲା । ଠିକ୍ ସେତିକ-ବେଳେ, ବୁଢ଼ା ଉହାଡ଼ରୁ ଗୋଟିଏ ଶୃଗାଳ ଗଛପଦ ହଲାଇ ତୀବ୍ରବେଗରେ ଛୁଟି ପଳାଇଲା ।

ଜଗୁ ନିର୍ବାକ୍ ନିସ୍ପନ୍ଦ ହୋଇ ପାଖରେ ଠିଆହୋଇ ନାରୀ ଓ ତାର ଶିଶୁକୁ ଚାହିଁରହିଲା ଅତୃପ୍ତ ନୟନରେ । ଯୁବତୀ, ସୁରୂପା, ବିଧବା, ମରି ଶୋଇଛି ସମ୍ଭବତଃ ହଇଜାରେ । ପାଖରେ ଗୋଟିଏ ଷ୍ଟେସନ ପୁଡ଼ା ରଖା ହୋଇଛି—ଟିକିଏ ଦୂରରେ ଖଣ୍ଡେ ମଇଳା ଲୁଗା । ଦୁର୍ଗନ୍ଧ, ମାଛି ପଲ ଭଣ ଭଣ ହୋଇ ଶବଅଙ୍ଗେ ବସିଛନ୍ତି । ସାମାନ୍ୟ ଟିକିଏ ଶବ୍ଦରେ ଅବା ପବନରେ ଫଳାଫଳ ହୋଇ ଉଡ଼ି ପୁଣି ନିଜ ନିଜର ସ୍ଥାନ ପୂରଣ କରୁଛନ୍ତି । ସ୍ତ୍ରୀଲୋକଟିର ଆଖିକୋଣରେ ପିମ୍ପୁଡ଼ି ଧାର ଲାଗିଛନ୍ତି ! ତା ଛାତି ଉପରେ ଶିଶୁଟି ନିଶ୍ଚଳ ହୋଇ ପଡ଼ିଛି ଆଖି ବୁଜି । ବେଳେବେଳେ ଆଖି ଖୋଲି ମୁଣ୍ଡ ଟେକି ଚାହୁଁଛି । ଜଗୁକୁ ଦେଖି ଭୟରେ ପୁଣି ଆଖି ବୁଜି ମୁଣ୍ଡ ନୁଆଁଉଛି ।

ଜଗୁ କ୍ଷଣକ ପାଇଁ ନିଜର ଦୁଃଖଗ୍ଲାନି ଭୁଲିଗଲା । ସୁନ୍ଦର ଶିଶୁଟିକୁ ଚାହିଁ ତାର ପ୍ରାଣ କାନ୍ଦିଉଠିଲା । ଆହା ! ଶିଶୁଟିର ବୋଧହୁଏ ଆଉ କେହି ନାହିଁ । ତାର ଏକମାତ୍ର ଅବଲମ୍ବନ ସ୍ନେହମୟୀ ମାଟି ଆଜି ଚାଲିପଡ଼ିଛି । କିଏ ତାକୁ ଅସହାୟବିପଦରୁ ରକ୍ଷା କରିବ ? ଅନାଥ ପିଲାଟିକୁ ରକ୍ଷା କରି-ବାକୁ ପାଖ ଗାଁରେ କଣ କେହି ଲୋକ ନାହିଁ ? ଏହି ବାଟରେ ହୁଏତ ଅନେକ ଲୋକ ଯା ଆସ କରିଥିବେ । ଧୂଳି ଉପରେ ପାଦଚିହ୍ନ ପଡ଼ିଛି । ପିଲାଟି ସେମାନଙ୍କ ଆଖିରେ ପଡ଼ିଥିବ; କିନ୍ତୁ କେହି ତାକୁ ଉଦ୍ଧାର କଲେ ନାହିଁ । କାହାର ମନ ତରଳିଲା ନାହିଁ । ଲୋକେ ସ୍ୱାର୍ଥ ନେଇ ଏତେ ପାଗଳ !

ଜଗୁର ଆଖିରେ ଲୁହ ଆସିଲା । ଅବୋଧ ଶିଶୁ ! ଜୀବନମରଣ ଭଲମନ୍ଦ କିଛି ଜାଣେ ନାହିଁ । ମା ଛଡ଼ା ସଂସାରରେ ଅଉ କାହାରିକୁ ଚିହ୍ନେ ନାହିଁ । ମା ତାର ମରିଛି । ତଥାପି ସେ ମାର ଆଶ୍ରୟପ୍ରାର୍ଥୀ, ମାର ସ୍ନେହଭିକାରୀ । ମା ତାକୁ ଛାଡ଼ିଛି; ମାତ୍ର ସେ ତ ମାକୁ ଛାଡ଼ି ପାରୁ ନାହିଁ । କାଲି ଏତେବେଳକୁ ତାର ମାର ଜଡ଼ ପିଣ୍ଡଟାର ଅବଶିଷ୍ଟ କିଛି ନ ଥିବ । ସେ ମଧ୍ୟ ତାର ମା ସଙ୍ଗେ ସଙ୍ଗେ ଜୀବନ୍ତ ଆହାର ହେବ ନିଶାଚର ଜନ୍ତୁଙ୍କର । ସଂସାରରେ କେଇଟି ଦିନର ଖେଳ ତାର । ଏଇଥିପାଇଁ କଣ ତାର ଜନ୍ମ ! ଅବୋଧ । ନିର୍ବୋଧ ମଣିଷର ମନଗଢ଼ା ଦେବତାଙ୍କର ଏହାହିଁ କଣ ଇଚ୍ଛା, ଏହାହିଁ କଣ ଉଦ୍ଦେଶ୍ୟ !

ଦେବତାର ବିରୁଦ୍ଧରେ ଜଗୁର ମନ ବିଦ୍ରୋହୀ ହୋଇଉଠିଲା । ମଣିଷର ଭଲମନ୍ଦ, ପାପପୁଣ୍ୟ, ସୁଖଦୁଃଖ ବୁଝିବାକୁ ଦେବତା କେଉଁଠି ଅଛି କି ? ହୁଏ ତ ଦେବତା ମିଛ । ବିକୃତମସ୍ତିଷ୍କ, ଶୁଷ୍କପ୍ରାଣ, କଷ୍ଟେଷ୍ଟି, ଅନ୍ଧବିଶ୍ୱାସୀ ଦାର୍ଶନିକର କଳ୍ପନାବସ୍ତୁ, ଅଥବା ସମାଜଧର୍ମର ବିରୁଦ୍ଧାଚରଣ, ଆପଦଗ୍ରସ୍ତ, ଅନୁତପ୍ତ, ଦୁର୍ବଳପ୍ରାଣ ମଣିଷର ସାନ୍ତ୍ୱନା-ସହଚରୀ । ଦେବତା ମିଛ । ଦେବତା କଳ୍ପନା ! ଦେବତା ଯଦି ସତ୍ୟ, ଦେବତା ଯଦି ବାସ୍ତବ, ତେବେ ଦେବତା ଦୁର୍ବୋଧ୍ୟ । ଦେବତାର ମଣିଷ ସଙ୍ଗେ କିଛି ମାତ୍ର ସମ୍ବନ୍ଧ ନାହିଁ । ମଣିଷ ଦେବତା ଦେବତା ହୋଇ ପାଗଳ; କିନ୍ତୁ ଦେବତା କେବେ ମଣିଷର କଥା ଭାବେ ନାହିଁ ତ ! ନୋହିଲେ ନିଷ୍ପାପ, ସରଳ, ନିଃସହାୟ, ଦୁର୍ବଳ ଓଡ଼ିଆର ମୁଣ୍ଡରେ ଚଢ଼ିକି ପଡ଼ନ୍ତା କାହିଁକି ? ଅବୋଧ ଶିଶୁଟି ଉପରେ ଦେବତାର ଅଭିଶାପ ! ଆଶ୍ଚର୍ଯ୍ୟ !!

କର୍ମଫଳ, —ସତ୍ୟ ! କିନ୍ତୁ ଶିଶୁଟିର କର୍ମ ଯେ ମୋଟେ ଆରମ୍ଭ ହୋଇ ନାହିଁ ! ପୂର୍ବଜନ୍ମ ନିଶ୍ଚୟ ମିଛ ! ତାହାହେଲେ, ସଂସ୍କାର ପାଇଁ ଦେବଦତ୍ତ ଦଣ୍ଡ ଯଦି ଦୁଃଖଯନ୍ତ୍ରଣାକୁ ଧରିବାକୁ ହେବ, ତେବେ ଭୁକ୍ତଭୋଗୀ ତ କେଉଁ ପାପର ଦଣ୍ଡସ୍ୱରୂପ ତାର ଆଜି ଏ ଦଣ୍ଡ, ବୁଝି ପାରେ ନାହିଁ । ସଂସ୍କାର ହେବ କିଏ ? ଶିଶୁର ବା ସଂସ୍କାର ହେବ କଣ ? ପାପପୁଣ୍ୟ, ମିଛ, କଳ୍ପନା । ପାପପୁଣ୍ୟର ଗଠକ ମଣିଷ, ଦେବତା ନୁହେ । ତେବେ ଓଡ଼ିଆ ପାପପୁଣ୍ୟ ଧରି ବସି କଳ୍ପିତ ଦେବତାକୁ ଡ଼ରି, ତାର ଶିଶୁକୁ ମରଣ ପାଖକୁ, ଧ୍ୱଂସ ଆଡ଼କୁ ଜାଣି ଜାଣି ଠେଲି ଦେଉଛି କାହିଁକି ? ଯେଉଁଦିନ ଓଡ଼ିଆ ଦେବତାର ବିରୁଦ୍ଧରେ ଯୁଦ୍ଧ କରି ଶିଖିବ, ସେଇଦିନ ସେ ହେବ ମଣିଷ । ଦୁଃଖ ଦୁର୍ଦ୍ଦଶା ଦୁର୍ଭିକ୍ଷ ଅପସରି ରହିବ ତା ପାଖରୁ ।

ଜଗୁର ଆଉ ବୁଝି ବୁଝି ଭାବିବାର ସମୟ ନାହିଁ । ସନ୍ଧ୍ୟା ମାଡ଼ି ଆସୁଛି । ଜନମାନବର ଦେଖା ନାହିଁ । ହୁଏ ତ ତାକୁ ଶିଶୁଟିକୁ ମରଣ ମୁହଁରେ ଛାଡ଼ି ଗୁଳିଯିବାକୁ ହେବ; ଅଥବା ସାଙ୍ଗରେ ନେଇ ଉଦ୍ଧାର କରିବାର ଚେଷ୍ଟା କରିବାକୁ ହେବ । କିନ୍ତୁ ଶିଶୁଟିକୁ ସାଙ୍ଗରେ ନେଇ କଣ ଦେଇ ସେ ତାର ପ୍ରାଣ ବଞ୍ଚାଇବ । ନିଜ ରକ୍ଷଣ ଅସମ୍ଭବ ! ଶେଷକୁ ଖାଇବା ବିନା ଉଭୟେ ଏହିପରି ଦିନେ ଅପଘାତରେ ପଡ଼ି ଅବହେଳିତ ହୋଇ ମରିବେ ।

ଶିଶୁଟି ପୁଣି ଥରେ ମୁଣ୍ଡ ଟେକି ଭୟପୂର୍ଣ୍ଣ କରୁଣ ଚାହାଣିରେ ଜଗୁକୁ ଅନା-ଇଲା । ଜଗୁ ଆଉ ଚାହିଁବ କଣ ? ତାର ନିରୀହ କୋମଳ ଦୃଷ୍ଟିରେ ଜଗୁର କଠିଣ ପ୍ରାଣ ବିଗଳିତ ହେଲା । ସେ ଧୈର୍ଯ୍ୟ ଧରି ରହି ପାରିଲା ନାହିଁ । ମୃତ ନାରୀର ବକ୍ଷ ଉପରୁ ଶିଶୁଟିକୁ ଉଠାଇନେଇ କୋଳାଗତ କଲା । ତାର ଶୁଖିଲା ମୁଖରେ ଚୁମ୍ବନ ଦେଇ ତାକୁ ଛାତି ଉପରେ ଭିଡ଼ି-ଧରିଲା । ଚଳଚ୍ଚିତ୍ର ପରି ବେଣୁର ଛବି, ତାର କରୁଣାମୟୀ ଖୁଡ଼ୀ-ବୋହୂଙ୍କର ଛବି ଆଖି ଆଗରେ ନାଚିଗଲା । ଦୁଇ ଆଖି ଲୁହରେ ଢଳ ଢଳ ହେଲା । ଜଗୁ ଧୀରେ ଧୀରେ ତାର ମୁଣ୍ଡ ଆଉଁସି କଅଁଳ ସ୍ୱରରେ କହିଲା, "ତୋର ମା ତ ମରିଛି ରେ ବାବୁ...।"

କିନ୍ତୁ ପିଲାଟି କିଛି ବୁଝିଲା ନାହିଁ । ଅପରିଚିତ ଅଜଣାଙ୍କର ସ୍ନେହ ଆଦର, ମଧୁର କଥା ତାକୁ ଭୁଲାଇ ପାରିଲା ନାହିଁ । ବରଂ ତାର ମାର ଛାତି ଉପରୁ ଯେ ତାକୁ ଏପରି ଭାବରେ ଉଠାଇ ନେଇଛି ତାକୁ ସେ ଭଲ ଆଖିରେ ଚାହାନ୍ତା କାହିଁକି ? ସେ ଭୟରେ ଜଗୁର ମୁହଁକୁ ଚାହିଁ ମୁହଁ ଫଟାଇ କାନ୍ଦିବାକୁ ଲାଗିଲା । ଜଗୁ ଯେତେ ବୁଝାଇଲା, ଯେତେ ଆଦର ଯତ୍ନ କଲା, ସେ ମୋଟେ ଶୁଣିଲା ନାହିଁ । ଗୋଟାଏ ବ୍ୟଥା ଧରି ବିକଳ ସ୍ୱରରେ ଚୀତ୍କାର କରି ହାତଗୋଡ଼ ବାଡେଇବାକୁ ଲାଗିଲା । ଜଗୁ ତାକୁ କୋଳରେ ସ୍ଥିର କରି ଧରି ପାରିଲା ନାହିଁ । ପିଲାଟି ଅସ୍ଥିର ହୋଇ ବାରମ୍ବାର କୋଳରୁ ଓହ୍ଲାଇବାକୁ ଚେଷ୍ଟା କଲା । ଜଗୁ ତାକୁ ଛାଡ଼ିଲା ନାହିଁ ।

ଖରାରେ ବୁଲି ବୁଲି ସେ ତ କ୍ଳାନ୍ତ ହୋଇ ପଡ଼ିଥିଲା । ଭୋକ ଶୋଷରେ ଦେହ ଝୋଲା ମାରି ଯାଉଥାଏ । ଏଣେ ପୁଣି କେଜାଣି କାହିଁକି ପିଲାଟାର ଦେହ ଭକ୍‌ଭକ୍ ଗନ୍ଧ ଛାଡୁଥାଏ । ଜଗୁ ତାକୁ କାଖରୁ ଓହ୍ଲାଇ ତଳେ ଛାଡିଲା । ଶିଶୁଟି କାନ୍ଦ ବନ୍ଦ କରି ତାର ମା ପାଖକୁ ଧାଇଁ ତାର କୋଳରେ ମୁହଁ ଲୁଚାଇଲା । ଆହା ! ସନ୍ତାନର ଦୁର୍ଦ୍ଦଶା ଦେଖି ତାର ଶବ-ମାର ଦେହ ଚଳିଲା ନାହିଁ, ଆଦର କରି ସେ ଶିଶୁକୁ ପଦେ ମିଠା କଥା କହିଲା ନାହିଁ କି ଶିଶୁର ଦେହରେ ସ୍ନେହରେ ହାତ ବୁଲାଇଲା ନାହିଁ । ଶବଟି ସାମାନ୍ୟ ଥରି ଉଠି ପୁଣି ନିଶ୍ଚଳ ହେଲା ।

ଲଗୁ ପୁଣି ଭାବିବାକୁ ଲାଗିଲା, କାଣୁ କାଣୁ ସେ ତେବେ କଣ ସ୍ୱର୍ଗର ଫୁଲ ପରି ଶିଶୁଟିକୁ ଶବର ଅଣ୍ଟାରେ ଛାଡ଼ିଯିବ ? ଅବୋଧ ବାଳକ, କିଛି ବୁଝେ ନାହିଁ, କିଛି ଜାଣେ ନାହିଁ; ତା ପକ୍ଷରେ କାନ୍ଦିବା ତ ନିତାନ୍ତ ସ୍ୱାଭାବିକ; କିନ୍ତୁ ମଣିଷ ହୋଇ, ସେ କଠୋର ପାଷାଣ ଛାତି ନେଇ ଶିଶୁଟିକୁ ଛାଡ଼ିଯିବ ! ଅସମ୍ଭବ !

ଲଗୁ ପିଲାର ଡେଣା ଧରି ସାମାନ୍ୟ ଉଠାଇ କହିଲା, "ଆ ବାବୁ, ତୋର ମା ଯେ ମରିଛି !"

ତାର କଣ୍ଠ ରୁଦ୍ଧ ହେଲା, ସେ ଆଉ କହି ପାରିଲା ନାହିଁ । ଲୁହଭରା ଆଖିରେ ତାକୁ ଦୁନିଆଟା ଝାପସା ଦେଖାଗଲା । ସେ ଆଖିର ଲୁହ ପୋଛିଲା ।

ବାଳକ କୋଳରୁ ଉଠି ଶବର ମୁହଁ ପାଖକୁ ଗଲା । ଓଠ ଫଟାଇ ଶବଟିର ବିକୃତ ଭୟଙ୍କର ମୁହଁକୁ ଚାହିଁ, କଣ ଭାବି କେଜାଣି ଚୀତ୍କାର କରି କାନ୍ଦିଉଠିଲା । ବାରମ୍ବାର ଶବର ମୁହଁକୁ ଚାହିଁ ମୁହଁ ବୁଲାଇ ସେ ବେଳୁବେଳ ଅଧୀର ହୋଇ କାନ୍ଦିଲା । ମୁହଁରେ ତାର ଗୋଟିଏ କଥା— "ବୋଉ ଲୋ......!"

ଲଗୁ ଦୂରରେ ଠିଆ ହୋଇ ଗେହ୍ଲେଇ କହିଲା, "କାନ୍ଦ ନା ବାବୁ, ଚୁପ ହ...।"

ସେ ଚୁପ ହେଲା ନାହିଁ, ତାର ମୃତା ଜନନୀର ବିକୃତ ମୁହଁରେ ହାତ ବୁଲାଇ, ଶେଷରେ ତାର ମୁଣ୍ଡରେ ଚୁମୁଡ଼ା ପାଇ ମୁହଁ ପରି ଉଚ୍ଛନ୍ନ ହୋଇ କାନ୍ଦିଲା ।

ଲଗୁ ଶବର ମୁଣ୍ଡ ପାଖକୁ ବୁଲିଗଲା । ପିଲାଟି ହଠାତ୍ ଆଶଙ୍କା କରି ଶବର ମୁହଁରେ ମୁହଁ ଲଗାଇ ପୂର୍ବ ପରି "ବୋଉ, ବୋଉ" ହୋଇ କାନ୍ଦିଲା । ସେ ଦୃଶ୍ୟ ଦେଖି ଲଗୁ ହୃଦୟର ଦାରୁଣ ଦୁଃଖ ସହି ପାରିଲା ନାହିଁ । ଦୀର୍ଘ-ଶ୍ୱାସ ଛାଡ଼ି ମୁହଁ ବୁଲାଇଲା । କାହିଁ, ପିଲାର କାନ୍ଦଣା ଶୁଣି ଦେବତାର ଆସନ ଥରିଲା ନାହିଁ ତ ? ଧରଣୀ ଫାଟିଲା ନାହିଁ, ଅନ୍ତରୀକ୍ଷ ବିଦୀର୍ଣ୍ଣ ହେଲା ନାହିଁ ତ ? ମରୁଭୂମିର ଏକାକୀ ଯାତ୍ରୀ ପରି ଶିଶୁଟି ତାର ସୁଖଦୁଃଖ ହୀନ କାନ୍ତାରଶ୍ମଶାନ ଦେହରେ ଏକାକୀ ବସି କାନ୍ଦୁଛି । ତାର କାନ୍ଦଣା କଣ ନିକଟ ଗ୍ରାମର କାହାର କାନରେ ବାଜୁ ନାହିଁ ?

ଜଗୁ ସେହିଠାରେ ଅଚଳ ହୋଇ ଠିଆ ହୋଇଥାଏ । ସନ୍ଧ୍ୟା ହେଲା, ତଥାପି କାହାର ଦେଖା ମିଳିଲା ନାହିଁ । ଶିଶୁଟି ପୂର୍ବପରି କାନ୍ଦୁଥାଏ । ଦୂର ତୋଟାରୁ ବିଲୁଆ ପଲର ବିକଟ ଚୀତ୍କାର ଶୁଣାଗଲା । ଜଗୁ ଭାବିବାକୁ ଲାଗିଲା, କର୍ତ୍ତବ୍ୟ କଣ ? ଭୋକରେ ତାର ପେଟ ଗର୍ଜିଉଠିଲା । ମୁଣ୍ଡ ଘୂରିଗଲା । ନା, ଆଉ ରହି ହେବ ନାହିଁ । ଜୀବନରକ୍ଷାହିଁ ତାର ଉପସ୍ଥିତ କର୍ତ୍ତବ୍ୟ । ତେବେ ସେ ତାର ମନର କୋମଳ ପ୍ରବୃତ୍ତିକୁ ପ୍ରଶ୍ରୟ ଦେଇ ଦୁର୍ବଳତାକୁ ମନରେ ସ୍ଥାନ ଦେଉଛି କାହିଁକି ? ସେ ଯେ ଜୀବନ ଚାହେଁ । କେତେ ଘଟଣା ତ ତାର ଆଖିରେ ପଡ଼ିବ । ସେ ଯଦି ନିଜକୁ ଭୁଲି ସବୁଥିରେ ନିଜକୁ ନିଯୁକ୍ତ କରିବାକୁ ବସିବ, ତେବେ ତ ସେ ଦାରୁଣ ଦୁର୍ଭିକ୍ଷକୁ ଜୟ କରି ପାରିବ ନାହିଁ । ପୃଥିବୀ ପ୍ରଳୟ ହେଉ; ତଥାପି ସେ ବଞ୍ଚିବାକୁ ଚାହେଁ ।

ଜଗୁ ନିର୍ଦ୍ଦୟ ଦୃଷ୍ଟିରେ ରୋରୁଦ୍ୟମାନ ଶିଶୁକୁ ଚାହିଁଲା । ପୁଣି ତାର ମନର ଦୁର୍ବଳତା ସବୁପ୍ରକାର ତର୍କକୁ ପଛରେ ପକାଇ ଉପରକୁ ଉଠିଲା । ସେ ଆଖି ଫେରାଇ ଦୂରକୁ ଘୁଞ୍ଚିଆସିଲା । ସ୍ୱାର୍ଥ ପାଇଁ, ଜୀବନ ପାଇଁ ସେ ଶିଶୁଟିକୁ ମରଣର ଦ୍ୱାରଦେଶରେ ଛାଡି ନିଷ୍ଠୁର ଆଜି ଚାଲିଯିବ । ତାକୁ ସାଙ୍ଗରେ ନେଇ, ବନ୍ଧନଦାୟିତ୍ୱ ବଢ଼ାଇ ନିଜର ସ୍ୱଚ୍ଛନ୍ଦ ଜୀବନକୁ ଭାରଗ୍ରସ୍ତ କରି ବିପନ୍ନ କରିବ କାହିଁକି ? ଦୁର୍ଭିକ୍ଷ ଆସିଲା—ଅସାବଧାନ, ଅଦୂରଦର୍ଶୀ, ଓଡିଆର ଶହ ଶହ ଅମୂଲ୍ୟ ଦେହ ତ ମାଟିରେ ମିଶିଲାଣି, ଆହୁରି କେତେ ମିଶିବ । ଶହ ଶହ ନିସ୍ସହ ଶିଶୁକୁସୁମ ଅକାଳରେ ଶୁଖି ମାଟିରେ ଝଡିଲେଣି । ଏହି ବାଳକଟି ହୁଏ ତ ସେ ସଂଖ୍ୟାକୁ ଟିକିଏ ବଢାଇବ । ଏତେ କ୍ଷତି ଯେ ନିର୍ବିବାଦରେ ସହୁଛି, ସେ ଇଏ ଆଉ ଟିକିଏ ସହି ପାରିବ ନାହିଁ ? ଜାଣୁ ଜାଣୁ ସେ କାହିଁକି ତାର ବନ୍ଧନ ବଢ଼ାଇବ ?

ଜଗୁ ଫେରି ଚାହିଁଲା ନାହିଁ । ବାଡ଼ିରେ କଣ୍ଠା ଆଡେଇ ସେ ପୁଣି ଗୋହିରୀକୁ ଫେରିଆସିଲା । ଶିଶୁଟିକୁ ପୁଣି ଚାହିଁଲା । ସେ କାନ୍ଦ ବନ୍ଦକରି ଅଙ୍ଗୁଳିଟେକ୍ରେ ଜଗୁକୁ ଅନାଇ ଆଖି ଆଗର ମଳିନ ସଙ୍ଗେ ମୁହଁ ବୁଲାଇ ପୁଣି ତାର ମାରି ମୃତମସ୍ତକରେ ମୁହଁ ଲୁଚାଇଲା । ଓଃ, ସେ କରୁଛି କଣ , ଜାଣି ଜାଣି...।

ଜଗୁ ହୃଦୟରେ ହାତ ଚାପି ମୁହଁ ପୋତିଲା । ପୁଣି ଏ ଦୁର୍ବଳତା କାହିଁକି ? ସେ ଜଗୁ ଯେ ମରିଛି, ଅନେକ ଦିନରୁ ମରିଛି । ସେ ଜଗୁର ପ୍ରେତାତ୍ମା ଆଜି ମଣିଷର କୋମଳତା ଦୁର୍ବଳତାକୁ ନିର୍ବାସିତ କରି ମରଣ ବନ୍ଧୁକରେ ଅଭିଯାନ କରି ବାହାରିଛି । ସେ ଚାହେଁ ଜୀବନ । କେବଳ ଜୀବନ ପାଇଁ ସେ ଏହିପରି ଶତସହସ୍ର ନିସ୍ୱହ ଶିଶୁକୁସୁମକୁ ଗୋଡରେ ଦଳି ଚାଲିବ । ସେ ମଣିଷ ନୁହେଁ—ସେ... ।

ଜଗୁ ଦ୍ରୁତ ପଦରେ ଖଣ୍ଡେ ଦୂର ଆଗକୁ ଚାଲିଗଲା ।

ଅନ୍ଧାର ମାଡ଼ିଆସୁଛି. ବିଲୁଆ କୁକୁରଙ୍କର ବିକଟ କୋଳାହଳ ବେଳକୁ-ବେଳ ନିକଟତର ହେଉଛି । ଜଗୁ ଅଧବାଟରେ ଚମକି ଠିଆହେଲା । ନା, ଅସମ୍ଭବ । ସେ ଏତେ ବଡ଼ କୁକର୍ମ କାମ କରିବ ନାହିଁ । ସେ ମଣିଷ । ଜୀବନଟା ବରଂ ଯାଉ, ସେ ଫେରିଯିବ, ଶିଶୁକୁ କୋଳକରି ଆଣିବ । ମରିବାର କଥା ତ, ଏପରି କଲବଲ ହୋଇ ଜୀଅନ୍ତା ବିଲୁଆ କୁକୁରଙ୍କ ଆହାର ହୋଇ ମରିବାକୁ ତାକୁ ସେ ଛାଡ ଦେବ ନାହିଁ । ଖାଇବାକୁ ନ ପାଇ ଯଦି ସେ ତାରି କୋଳରେ ମରେ, ତେବେ ସେ ପଛେ ତାକୁ ମଶାଣି ଭୂଇଁରେ ଶୁଆଇଦେଇ ନିଶ୍ଚିନ୍ତ ହେବ ! ଜଗୁର ଦୁଇ ଆଖିରୁ ଦୁଇ ଧାର ତତଲା ଲୁହ ଗଡ଼ିପଡ଼ିଲା । ଗୋଡ଼ ଚଳିଲା ନାହିଁ !

ପୁଣି ସେହି ଦୁର୍ବଳତା ! ଭୀଷଣ ପରୀକ୍ଷା । ଓଃ ।

ଅତି ନିକଟରୁ, କେଜାଣି କେଉଁ ବୁଦା ଭିତରୁ ବିଲୁଆ ଡାକ-ଉଠିଲେ । ସଙ୍ଗେ ସଙ୍ଗେ ଚୀତ୍କାର କରିଉଠିଲେ ଶିଶୁଟି ଭୟରେ ଜଗୁ ଚମକି ଚାହିଁଲା ପଛକୁ—ଅନ୍ଧାର ଘୋଟି ଆସିଲାଣି । ତାର ଛାତି ଦାଉଁ ଦାଉଁ ପଡିଲା । ନା, ସେ ମଣିଷ ନୁହେଁ । ଦୁଇ କାନରେ ଦୁଇ ହାତ ଚାପିଧରି ସେ ଲକ୍ଷ୍ୟଭ୍ରଷ୍ଟ ମୃଗଶିଶୁ ପରି ମୁହୂର୍ତ୍ତେ ନ ରହି ଦଉଡ ଦଉଡ ଅନ୍ଧାର ଭିତରେ ଲୁଚିଗଲା ।

## —ଚଉତିରିଶ—

ବେଳ ବୁଡ ଆସୁଛି । ମଠ ପଛଆଡ଼ ଫୁଲବଗିଚାର ଗୋଟିଏ ପାଖରେ ଏକୁଟିଆ ବସି ଜପମାଳୀ ଗୁଣୁଛି ମଲ୍ଲୀକଢ଼ । ନିଜ ହାତରେ ତୋଳିଥିବା ଦର-ଫୁଟା ମଲ୍ଲୀକଢ଼ଗୁଡକ ଆଗରେ ପରସ୍ତିହୋଇଥିବା ଖଣ୍ଡେ କଦଳୀ ପତ୍ରରେ

ଗଦା କର ରଖିଛି । ଅଜି ତା ମନରେ ଭାରି ଆନନ୍ଦ । ରାଧୀ କହୁଛି—'ତୁ ଏଥର ତୋର କାମ ସାର ଲୋ ଲକ୍ଷ୍ମୀ । ସଞ୍ଜ ଗଡ଼ିଗଲେ ବଡ଼ ଦେଉଳକୁ ଯାଇ ଜଗନ୍ନାଥ ଦର୍ଶନ କରିବା ।' ସେଇଥିପାଇଁ ସେ ଆଜି ମନଫୁର୍ତ୍ତିରେ ସକାଳ ସକାଳ କାମ ଶେଷ କରିବାକୁ ବସିଛି । ଲକ୍ଷ୍ମୀଠାକୁରାଣୀଙ୍କ ପାଇଁ ଖଣ୍ଡେ ବଡ଼ ମାଳ ଗୁନ୍ଥି ସାରିଲାଣି, ଲକ୍ଷ୍ମୀକାନ୍ତଙ୍କ ପାଇଁ ଧରିଥିବା ମାଳଟି ଶେଷ-କଲେ ନିଷ୍ଚିନ୍ତ ।

ରାଧୀ ଆସି କହିଲା, "ତୋର ମାଳଗୁନ୍ଥା ସରିବ ନାହିଁ ଲକ୍ଷ୍ମୀ ! ମନ୍ଦିରକୁ ଯିବା ପରା······।"

ଲ୍ମା ମୁଣ୍ଡ ଟେକି ଚାହିଁଲା । ଅସ୍ତଗାମୀ ସୂର୍ଯ୍ୟର ଶେଷ ରକ୍ତରେଖା ପତ୍ର ସନ୍ଧରେ ଛପି ଛପି ଆସି ତାର ସୁନ୍ଦର ମୁହଁକୁ ରକ୍ତରାଗରେ ଧୋଇ ଦେଇଗଲା । ଅପରିବକ୍ଷିପ୍ତ କେଶରାଶିକୁ ହାତରେ ସଜାଡ଼ି, ଶାଢ଼ୀର ପଣତଟି ମୁଣ୍ଡରେ ଦେଇ ସେ କହିଲା,"ହିଁ ସଇଲି ତ...।"

ମୁଗ୍ଧଚକ୍ଷୁରେ ରାଧୀ ତାର ଅଖିକୁ ଚାହିଁ କହିଲା, "ତୋର ଅଳିଆ ମୁଣ୍ଡ ବନ୍ଧା ହେବ ନାହିଁ ?"

"ଅଜି ଥାଉ—"

"ଛି, କେଡ଼େ ଅସନାଟା ଦଶୁଛୁ ।" କିନ୍ତୁ ରାଧୀ ଜାଣେ, ଅଳିଆମୁଣ୍ଡୀ ଲକ୍ଷ୍ମୀ ତାକୁ ଭାରି ଭଲ ଦଶେ । କଣ ଭାବି କହିଲା, "ହଉ, ଥାଉ ।" ଟିକିଏ ରହି ଲ୍ମାର-ବେକକୁ ଚାହିଁ ସେ ମନକୁ ମନ କହିଲା,"ଖାଲି ବେକଟା...।" ଧୀରେ ଧୀରେ ନିଜ ବେକରୁ ନରକଡ଼ଫାଳିଆ ସୁନାହାରଟି ଖୋଲି ସେ ନଇଁପଡ଼ି ଲ୍ମାର ବେକରେ ପିନ୍ଧାଉ ପିନ୍ଧାଉ ଲ୍ମା କହିଲା, "ଥାଉ ମା, ତୁ ନାଇଛୁ । ମୋର କଣ ହେବ ଥାଉ ।" କିନ୍ତୁ ରାଧୀ ମାନିଲା ନାହିଁ । ହାର ପିନ୍ଧାଉ ପିନ୍ଧାଉ କହିଲା, "ଅଲୋ ଏ ବୁଢ଼ୀ ବେକରେ ସୁନାହାର କଣ ସୁନ୍ଦର ଦିଶିବ ? ଏ ବେକକୁ ରୁଦ୍ରାକ୍ଷମାଳି ମାନିବ ।" ହାର ପିନ୍ଧାଇ ଆଖି ଢ଼ଳ ଢ଼ଳ କରି ସେ କହିଲା, "କେମିତି ଦେଖାଯିବ ଦେଖିଲୁ ।" ଲ୍ମାର ଅଖି ଛଳ ଛଳ ହେଲା ।

ବାଡ଼ଆଡ଼ କବାଟକୁ ସାମାନ୍ୟ ଠେଲି ମୁଣ୍ଡ ଗଳାଇ ଅଧିକାରୀ ସଦାନନ୍ଦ ଡ଼ାକଛାଡ଼ିଲେ, "ମା...।"

ଉମା ଓ ଗ୍ରାଧୀ ଉଦ୍‌ବେଗ୍ରେ କବାଟ ଆଡ଼କୁ ଗ୍ରହିଁଲେ । ସଦାନନ୍ଦ ମୁଣ୍ଡ ଟାଣିନେଇ ନେପଥ୍ୟରୁ କହିଲେ, "ବଡ଼ଦେଉଳକୁ ଯିବାର କଥା ପଗ୍ର ?"

ହସ ହସ ହୋଇ ଗ୍ରାଧୀ କହିଲା, "ପୁଅ ସଦାନନ୍ଦ ଡ଼ାକୁଛ । ଆସ ବାପ ଏଣିକ...।"

ସଦାନନ୍ଦଙ୍କୁ ବଗିଗ୍ର ଭିତରକୁ ଆସିବାର ଦେଖି ଉମା ଅଧଗ୍ରୁଣ୍ଟା ହାରଟି ରଖି ଆଡ଼ ହୋଇ ବସିଲା । ସଦାନନ୍ଦ କରେଇ ହୋଇ ଟିଆହୋଇ ଗମ୍ଭୀର ଭ୍ରବରେ କହିଲେ,"ଯଦି ଦେଉଳକୁ ଯିବାର କଥା, ଟିକିଏ ଆଗରୁ ଗଲେ ସୁବିଧା । ଏ କାଙ୍ଗାଳଗୁଡ଼ା ଯାହା ହେଉଛନ୍ତି...।"

ଗ୍ରାଧୀ ପଗ୍ରରିଲା, "ଯେତେ ଖାଇଲେ ବି ତାଙ୍କ ନଅଣ୍ଟ ।"

ମୃଦୁ୍ଳ ହସି ସଦାନନ୍ଦ କହିଲେ,"ଦିନକୁ ଦିନ ତାଙ୍କର ସଂଖ୍ୟା ବଢ଼ୁଛି । ଏତେ ଲୋକଙ୍କୁ ଖାଇବାକୁ ଦେବା କି ସହଜ କଥା ? ଛତ୍ରମାନଙ୍କରେ ଲୋକ ଖୁନ୍ଦି ହୋଇଗଲେଣି । କିଏ ଖାଇବାକୁ ପାଉଛି ତ କିଏ ପାଉ ନାହିଁ । ଘରେ ଘରେ ଚୋରି ହେଉଛି...।"

ଗ୍ରାଧୀ—"ମରନ୍ତୁ ସେ, ଆମର କଣ ଯାଏ ? ତେମେ ଆମ ସାଙ୍ଗରେ ଯିବଟି ?"

ସଦାନନ୍ଦ—"ମୋର ବେଳ ନାହିଁ । ଯଦି କହୁ ଯିବି ।"

"ଶୁଣ ଲୋ ଲକ୍ଷ୍ମୀ" କହି ଗ୍ରାଧୀ ମୁହଁ ବୁଲାଇ ଅବଗୁଣ୍ଠନବତୀ ଉମାକୁ ଗ୍ରହିଁ ହସି ହସି ଉଚ୍ଚସ୍ୱରରେ କହିଲା, "କହଲୋ ଇଏ କଣ ? ଲୋପସ୍ଵାଟା । ସଦାନନ୍ଦ ତୋର ଭାଇ, ତାକୁ ପୁଣି ଆଡ଼ ! ଅଲୋ, ମଠର ଅଧିକାରୀ ତୋର ବଡ ଭାଇ, ଉଠି ତାଙ୍କର ଗୋଡ଼ତଳେ ପଡ ।"

କେଜାଣି କାହିଁକି ଲଜ୍ଜରେ ଉମା ସଡିଗଲା, ଉଠିଲା ନାହିଁ ।

କୃତ୍ରିମ କ୍ରୋଧରେ ଗ୍ରାଧୀ କହିଲା, "ମଲ୍ଲମ୍ବର ! କହଲୋ, ଛତ୍ରରେ ପଶି, ଗଛମୂଳେ ଛୁଣ୍ଡାକନା ପିନ୍ଧି ବସିଥିଲେ ଆଜି କାହାକୁ ଆଉ ଦୁଅନ୍ତୁ ବା ? ଉଠ, ପ୍ରଣାମ କର ।" ଗ୍ରାଧୀ ନିଜ ହାତରେ ଉମାର ମୁହଁରୁ ଓଢ଼ଣା କାଢି ତାର ବାହୁ ଧରି ଉଠାଇଲା ।

କଠୁ କଥା ଶୁଣି ଉମାର ଲଜ୍ଜାରକ୍ତ ହସ ହସ ମୁହଁଟି ପାଣ୍ଡୁର, ଗମ୍ଭୀର ହେଲା । ମୁହଁରେ ଝାଳ ବିନ୍ଦୁ ବିନ୍ଦୁ ହୋଇ ଫୁଟିଉଠିଲା । ସେ ଦୁଃଖରେ, ଭୟରେ ମୁଣ୍ଡ ନୁଆଇଁ ପ୍ରଣାମ କରି ଗ୍ରାଧୀ ପଛକୁ ଘୁଞ୍ଚିଗଲା । ମୁଣ୍ଡର ଓଢଣା ଆଉ ଟାଣିଲା ନାହିଁ । ...

ବୁଧୀ ସଦାନନ୍ଦଙ୍କୁ କହିଲା, "ପିଲାଦିନରୁ ତମକୁ ମୁଁ ଏଇ କୋଳରେ ବଢ଼ାଇଆଣିଛି। ଗରିବ ବ୍ରାହ୍ମଣୀଟା । ପୁଅଜାତ କିଛି ଜାଣେ ନାହିଁ । ସଦାନନ୍ଦକୁ ମୁଁ ପୁଅପରି ମଣେ ••।"

ସଦାନନ୍ଦ—"ମୁଁ କଣ ତତେ ମା ପରି ମାନେ ନାହିଁ ?"

ବୁଧୀ—"ଜାହିଁକି, ମୁଁ କଣ ନାହିଁ କରୁଛି ? ମୋର ଏ ଇଚ୍ଛା ରହିବଟି ।"

ସଦାନନ୍ଦ ହସିଲେ ।

ବୁଧୀ କହିଲା, "ସେଇ କଥା ମୁଁ ଲକ୍ଷ୍ମୀକୁ କହୁଥିଲି । ତାକୁ ମହନ୍ତ ମହାରାଜ ବାଟରୁ ଆଣିଛନ୍ତି ମୋ ପାଇଁ । ମୁଁ ତାକୁ ଝିଅ କରିଛି । ସେ ତମର ସାନ ଭଉଣୀଟିଏ । ତା ପ୍ରତି ଯେପରି ସୁଦୃଷ୍ଟି ରଖ । ସେ ଆଜି ମଝି ଦରିଆରେ ଭାସୁଛି । ତମେ ଦୟା କଲେ ସେ କୂଳରେ ଲାଗିବ । ସତଂ ପାହରେ ତାକୁ ଛନ୍ଦ ଦେଲେ ତାର ଦୁଃଖ ଯିବ, ତମର ଧର୍ମ ହେବ ।"

ସଦାନନ୍ଦ କହିଲେ, "ମହନ୍ତ ବାବା ମତେ ସବୁ କହୁଥିଲେ ।"

ବୁଧୀ—"ଶୁଣିଲୁ ଲକ୍ଷ୍ମୀ । ଆଲୋ, ସଦାନନ୍ଦ ଦେବତାପରି ପିଲା । ତାକୁ ଭାଇ ପରି ମଣି ସବୁବେଳେ ତାଠାରୁ କିଛି କିଛି ସଦ୍‌ଗୁଣ ଶିଖିଲେ ତୁ ଜନ୍ମେ ପବିତ୍ର, ନିର୍ମଳ ହେବୁ, ତୋର ଅଳସ ସମୟ ସୁଖରେ କଟିବ । ଯେ କେତୋଟି ଦିନ ଏଠି ଅଛୁ । ଆଉ କୋଉ ଭରଛଡ଼ା ଦେଇ ରହିଲେ ତୁ ଅଉ ଶିଖିବୁ କଣ ? ତୋତେ ସତ୍‌ଶିକ୍ଷା ଦେବ କିଏ ?"

ବୁଧୀ ସଦାନନ୍ଦଙ୍କୁ କହିଲା, "ଲକ୍ଷ୍ମୀ ତମକୁ ଲାଗିଲା ବାବା । ମହନ୍ତ ତାକୁ ବାଟରୁ, ନରକଯାହାରୁ ଉଦ୍ଧାରି ଆଣି ମୋତେ ସମର୍ପିଛନ୍ତି । ମୁଁ ଆଜି ତାକୁ ତତେ ସମର୍ପି ଦେଲି । ତୋର ଉଚ୍ଚ ପବିତ୍ର ଆଦର୍ଶ ଦେଖି ତୋଠୁଁ ସଦୁପଦେଶ ପାଇ ଯେପରି ସେ ସତ୍ ମାର୍ଗରେ ଯାଇ ତୋର ଦୟାରୁ କୂଳରେ ଲାଗେ, ଏତିକି ମୋର ଭିକ୍ଷା... ।""

ସଦାନନ୍ଦ କୁମାର ଘର୍ମାକ୍ତ ଗମ୍ଭୀର ମୁହଁକୁ ଗୃହିଁ କହିଲେ, "ଲକ୍ଷ୍ମୀ–କାନ୍ତଙ୍କ ଇଚ୍ଛା ।"

ଏତିକି କହି ସଦାନନ୍ଦ ପ୍ରସ୍ଥାନ କଲେ । ବୁଧୀ କେତେ କଣ ଚିନ୍ତା କରି କହିଲା, "ଅଲୋ ଲକ୍ଷ୍ମୀ, ସଦାନନ୍ଦଟି ଭାରି ଭଲ ପିଲା । ଆଗେ ସବୁ–

ଦିନେ ଏ ପଦ୍ଧରେ ଆସି ମୋ ପାଖରେ ବସି ରାମାୟଣ ପଢ଼େ, ବୁଝି ନ ପାରିଲେ ଭଲକରି ବୁଝାଇ ଦିଏ । ଏତିକି କଥା ସେ ଜାଣେ ଲୋ ମା ! ତୁ ମୋ ପାଖକୁ ଆସିଲା ଦିନ୍ ସେ ଲାଜରେ ଆସୁ ନାହିଁ । ଭାରି ସରମ ତାର । କିନ୍ତୁ କାଲିଠୁଁ ତାକୁ ପୁଣି ଆସି ରାମାୟଣ ପଢ଼ିବାକୁ କହିବ । ତୋର ଲାଜ ସଙ୍କୋଚ କରିବା ଦରକାର ନାହିଁ । ଲାଜ କରୁଥିଲେ ତ କରୁଥିବୁ, ଶିଖିବୁ କଣ ? ଶୁଣିଲେ, ବୁଝିଲେ ସିନା ଶିଖିବୁ ଲୋ...।”

ଉମା ଏତେବେଳକେ ମୁହଁ ଖୋଲି କହିଲା, “କଣ ଶିଖିବ ମା ?”

ବୁଧୀ କହିଲା, “ସେ କଥା ତୁ ସଦାନନ୍ଦକୁ ପଚାରିବୁ । ମୁଁ ମାଇପୀ ଲୋକ, କି ଜାଣେ ? ତୁ ଫୁଲଗୁନ୍ଥା ଜାଣିବ ସାର ତ ମୁଁ ଅଛୁଛୁ ।”

ବୁଧୀ ବୁଲିଗଲା ମନରେ ଗୋଟାଏ ସାଫଲ୍ୟର ଆନନ୍ଦ ଅନୁଭବ କରି, ସେ ଜାଣେ ମଣିଷ ଯେତେ ଭଲ ହେଲେ ବି ପ୍ରଲୋଭନରେ ପଡ଼ିଲେ ଭୁଲେ । ଯେତେ ସାବଧାନରେ ଚାଲିଲେ ମଧ୍ୟ ଗୋଡ଼ ଖସେ ଅଜାଣତରେ । କୌଣସି ପ୍ରକାର ବାଧାକୁ ଯୌବନର ପ୍ରବଳ ଉତ୍ତେଜନା ମାନି ରହେ ନାହିଁ । ନିମ୍ନଗାମୀ ଜଳସ୍ରୋତ ପରି ତରୁଣ ମନର ଗତି ସହଜରେ ଅଟକା ରହେ ନାହିଁ । ଉମା ତାର ମୁଣ୍ଡ ଉପରେ ବୋଝ । ଜାଣି ଜାଣି ସେ ତ ନିଜର ଜୀବନଟାକୁ ଅରମାରେ ଛାଡ଼ିଛି । ଦେବତାର ଅଭିଶାପ, ପୂର୍ବଜନ୍ମର କର୍ମ ଫଳରୁ ଏ ଜୀବନଟା ବ୍ୟର୍ଥରେ, ଅନୁତାପରେ କଟିଲା । ଏ ଜୀବନର କଷ୍ଟ ପାଇଁ ପରଜୀବନରେ ଅଧିକ କେତେ ଦୁରବସ୍ଥା ହେବାକୁ ହେବ, କିଏ ଜାଣେ ? କିନ୍ତୁ ଏ ନିରାଶ୍ରୟା ନିରୀହ ବାଳିକାଟିକୁ ଯଦି ପ୍ରଲୋଭନର କବଳରୁ ଉଦ୍ଧାର କରି ପାରେ, ତେବେ ତାର ଅସୀମ ପାପର ଗୁରୁଭାର ହୁଏ ତ ସାମାନ୍ୟ ଲଘବ ହେବ ।

କଅଣ ଅଶଙ୍କା କରି କେଜାଣି ସଦାନନ୍ଦ ଓ ଉମା ମଧ୍ୟରେ ସେ ଆଉ ପବିତ୍ର ଭାଇ ଭଉଣୀର ସମ୍ବନ୍ଧ ସ୍ଥିର କରିଗଲା । ତାର ଧାରଣା, ମଣିଷ ଯଦି ନିଆଁ ପରି ତେଜୀୟାନ୍ ଅଉ ଆଲୁଅ ପରି ମୁକ୍ତ ନିର୍ମ୍ମଳ ହୁଏ, ସବୁ ପ୍ରଲୋଭନ ସବୁ ପାପ ତା ନିକଟରୁ ଦୂରକୁ ଅପସରି ଯାଏ । କିନ୍ତୁ ଜଳ ପରି ତରଳ, ଶୀତଳ ହୋଇ ଅନ୍ଧାର ଭିତରେ ଲୁଚି ରହିଲେ ସହଜରେ ଲୋକ-ଚକ୍ଷୁର ଅନ୍ତରାଳରେ କଳୁଷିତ ହେବା ଖୁବ୍ ସମ୍ଭବ । ନିଆଁ ଲିଭେ; ତଥାପି

ସେ ଦେହରେ କଳଙ୍କ ଉଣି ଦଏ ନାହିଁ । ସୁଧୀ ଏହୁ କଥା ତ ନିତ ଉମାକୁ କହି ସାବଧାନ କରେ ।

ସୁଧୀ ଚାଲିଗଲା ପରେ ଉମା ପୂର୍ବସ୍ଥାନରେ ବସି ପୁଣି ଫୁଲ ଗୁନ୍ଥିବାରେ ଲାଗିଲା; କିନ୍ତୁ କେଜାଣି କାହିଁକି ତାର ମନ ମୋଟେ ଲାଗିଲା ନାହିଁ । ସୁଧୀ ଯେ କାହିଁକି ଏପରି ଗୋଟାଏ ଛୋଟ ଅଭିନୟର ସୃଷ୍ଟି କଲା, ସେ କିଛି ଅନୁମାନ କରି ପାରିଲା ନାହିଁ । ସୁଧୀକୁ ସେ ଭଲ ପାଉ ନ ପାଉ, ସୁଧୀକୁ ଦେଖିଲେ ତାର ମନରେ ଭକ୍ତି ଆସୁ କି ନ ଆସୁ, ସେ ଜାଣେ, ସେ ତାକୁ ମନେ ମନେ ଭୟ କରେ । ତାର କଥାରୁ ବାହାର ହେଲେ ଉମାର ଯେ ମଠରେ ସ୍ଥାନ ନାହିଁ, ଏ କଥା ସେ ଭଲ କରି ଜାଣେ । ତା ପୂର୍ବରୁ ତାହାର ପରି ତ କେତେ କେତେ ଅନାଥା ଆସି ମଠରେ ସ୍ଥାନ ନେଇଛନ୍ତି; କିନ୍ତୁ ସୁଧୀକି ସନ୍ତୁଷ୍ଟ କରି ନ ପାରି ସମସ୍ତଙ୍କୁ ଦିନେ ମଠରୁ ବିଦାୟ ନେବାକୁ ପଡ଼ିଛି, ଏକଥା ସେ ନିଜେ ସୁଧୀ ମୁହଁରୁ ଶୁଣିଛି ।

କିନ୍ତୁ ଅଭିନୟଟା ବା କଣ ହେଲା ? ସୁଧୀର ଆଦେଶ ତ କିଛି ଅନ୍ୟାୟ ଅସଙ୍ଗତ ନୁହେଁ । ସଦାନନ୍ଦ ଅଧିକାରୀ ଯେଉଁପ୍ରକାର ଲୋକ ହେଉନ୍ତୁ ପଛେ, ସେ ମଠର ମାଲିକ । ତାଙ୍କ ପାଖରୁ ଅଲଗା ହୋଇ, ତାଙ୍କୁ ଫାରକ୍ଛା ଦେଇ ଚଳିବା ଅସମ୍ଭବ । ସେ ମଠର ଆଶ୍ରିତ, ବାଟର ଅନାଥା, ସମସ୍ତଙ୍କୁ ଆପଣାର କରି ଚଳିବା ତା ପକ୍ଷରେ ଉଚିତ । ସେ କାହିଁକି ସଙ୍କୁଚିତ ହୋଇ ଅଡ଼ହୋଇ ବସିଲା ? ଛି, ଛି······!

ତାର ଚିନ୍ତାରେ ବାଧା ଦେଇ ସଦାନନ୍ଦ କବାଟ ଆଢ଼େଇ ଭିତରକୁ ଆସି ପୁଣି ଡାକିଲେ—'ମା' । କିନ୍ତୁ ସୁଧୀକୁ ଦେଖିବାକୁ ନ ପାଇ ସେ ଉମା ନିକଟକୁ ଆସି ସହଜ କଣ୍ଠରେ ପଚାରିଲେ, "ମା କାହିଁ ଗଲା କି ?"

ଉମା ଆଉ ଏଥର ସଙ୍କୋଚ କଲା ନାହିଁ । କହିଲା, "ସେ ତ ବର୍ତ୍ତମାନ ପଛେ ପଛେ ଗଲା ।"

"କୁଆଡ଼େ... ?"

"ସେହୁ ବାଟେ ଭିତରକୁ ଗଲା । ଏହୁକ୍ଷଣି ଆସିବ ।"

"ନା, ମୁଁ ଆଉ ରହି ପାରିବ ନାହିଁ । ସେ ଆସିଲେ କହିବ, ମୁଁ ସାଙ୍ଗରେ ମନ୍ଦିରକୁ ଯାଇ ପାରିବ ନାହିଁ । ଭାରି ଜରୁରୀ କାମରେ ମୁଁ ଯାଉଛି ।

ଫେରୁ ଫେରୁ ରାତ୍ରି ବେଶି ହେବ ।" ଏତିକ କହି ସଦାନନ୍ଦ ବୁଲିପଡ଼ି ଫେରିଯିବାକୁ ଉଦ୍ୟତ ହେବାରୁ ଉମା ପଚାରିଲା, "ଏମିତି କଣ ଜରୁରୀ କାମ ଅଛି ?"

ସଦାନନ୍ଦ ଫେରିପଡ଼ି ପ୍ରଫୁଲ୍ଲ ବଦନରେ କହିଲେ, "ନାହିଁ ସେପରି କିଛି ନୁହେଁ, ତେବେ ଯେତେବେଳେ ହେଲେ ଯିବାକୁ ପଡ଼ିବ ତ । ଦନ୍ନିଦନ କାଙ୍ଗାଳଗୁଡ଼ା ପଲ ପଲ ହୋଇ ସହରରେ ପଶୁଛନ୍ତି । ଭାରି ଉପଦ୍ରବ କରୁଛନ୍ତି । ଖାଇବାକୁ ନ ପାଇ ତ ଏଠି ସେଠି ପଡ଼ି ଯିଏ ମରିବାର ମରୁଛନ୍ତି ଯେଉଁମାନେ ଖାଇବାକୁ ପାଉଛନ୍ତି, ରଙ୍କାଳିଆ ହୋଇ ଏତେ ବେଶୀ ଗିଳୁଛନ୍ତି ଯେ, ହଇଜା ଧରୁଛି, ମରୁଛନ୍ତି । ସହର ତମାମ ହଇଜା ବ୍ୟାପି ଗଲାଣି ।"···କଥା ଅଧା ରଖି ସଦାନନ୍ଦ ବିସ୍ମୟବିସ୍ଫାରିତ ଚକ୍ଷୁରେ ଉମାର ଶାନ୍ତ ଗମ୍ଭୀର ମୁହଁକୁ ଗୃହିଁରହିଲେ ।

ଉମା କହିଲା, "ଅସମୟ, ଏତେ ରାତି ଯାଏ ପଦାରେ ରହିବା ତ ଭଲ ନୁହେଁ ଭାଇ···।"

ବେଦ୍ବାହତ ପରି 'ଭାଇ' ସମ୍ବୋଧନରେ ଚମକିପଡ଼ି ଅନ୍ୟ ଆଡ଼କୁ ଦୃଷ୍ଟି ଫେରାଇ ସେ ଟିକିଏ ବିବ୍ରତ ହେଲା ପରି କହିଲେ, "କର୍ତ୍ତବ୍ୟ ! ଲୋକଗୁଡ଼ାଙ୍କର କିଛି ଗୋଟାଏ ସୁବ୍ୟବସ୍ଥା କରିବାକୁ ହେବ ତ । ସରକାରୀ ଅନ୍ନଛତ୍ର ନଟରେନ୍ଦ୍ରକୂଳରେ ଖୋଲା ଦିନକୁ ଯେତିକି ଖଇରାତ୍ କରିବାର ସେମାନେ କରୁଛନ୍ତି, ତେବେ ଏତେ ଲୋକ ଭିତରେ କିଏ ପାଉଛି, କିଏ ନ ପାଉଛି, ଦେଖିବା ଅସମ୍ଭବ । ଆମେ ସବୁ ମିଶି ସ୍ୱର୍ଗଦ୍ୱାର ପାଖରେ ଯେଉଁ ଛତର ଖୋଲିଛୁ, ତାର ଅବସ୍ଥା ବି ଠିକ୍ ସେହିପରି । ଏଇ ବିଷୟରେ ମହନ୍ତମାନଙ୍କ ସାଙ୍ଗରେ କଥାବାର୍ତ୍ତା କରି କିଛି ଗୋଟାଏ କରିବାର କଥା—କଣ କଲେ ଅଳ୍ପ ହେଉ, ବହୁତ ହେଉ ସମସ୍ତେ ମୁଠିଏ ମୁଠିଏ ଖାଇବାକୁ ପାଇବେ । ଦିନ୍ଟିଏ ଅବହେଳା କଲେ ହୁଏ ତ ଶହ ଶହ ଲୋକ ମରି ଶୋଇବେ······।"

ଉମା ସଦାନନ୍ଦଙ୍କୁ ଗୃହିଁ ରହିଥିଲା ଏକ ଦୃଷ୍ଟିରେ । ପ୍ରକୃତରେ ଏକ ଲୋକଟି ଯେପରି ସୁନ୍ଦର ଗୁଣ ମଧ୍ୟ ତତୋଧିକ ସୁନ୍ଦର । ଦେବପ୍ରାଣ ଯୁବକ ଦୁଃଖୀ ରଙ୍କୀଙ୍କ ପାଇଁ ଅହ୍ନା, ତାଙ୍କର ପ୍ରାଣ ବିକଳ ହେଉଛି ସବୁବେଳେ ।

ସଦାନନ୍ଦ ଦୃଷ୍ଟି ଫେରାଇବାର ଦେଖି ଉମା ଫୁଲ ସଜାଡ଼ୁ ସଜାଡ଼ୁ କହିଲା, "ଏତେ ଲୋକଙ୍କର ଜୀବନମରଣ ଯାହାର ଯିବା ନ ଯିବା ଉପରେ ନିର୍ଭର କରେ, ତାଙ୍କୁ ଅନୁରୋଧ କରି ଅଟକେଇ ରଖିବା ମୋଟେ ଉଚିତ ନୁହେଁ । ବରଂ ଆମର ଯିବା ନ ହେଲେ ନାହିଁ— ।"

"କାହିଁକି ଲୋ ଉମା ? ତୋର ଫୁଲଗୁନ୍ଥା ଆଜି ସରିବ ନାହିଁ କି ? କହୁ କହୁ ରାଧୀ ଆସି ସେଠାରେ ମିଳିଲା । ସଦାନନ୍ଦଙ୍କୁ ଉମା ପାଖରେ ଠିଆ ହୋଇଥିବାର ଦେଖି ଗୋଟାଏ ସନ୍ଦେହର ଛାୟା ତା ଆଖି ଆଗରୁ ଆସୁ ଆସୁ ସଙ୍ଗେ ସଙ୍ଗେ ଅନ୍ତର୍ହିତ ହେଲା । ସେ ହସ ହସ ମୁହଁରେ କହିଲା, "ଭାଇ ଭଉଣୀଙ୍କର କଣ ଏତେ ଗପ ପଡ଼ିଛି ।" ସଦାନନ୍ଦଙ୍କୁ କହିଲା, "ମତେ ଖୋଜୁଥିଲୁ ବାବା ?"

ସଦାନନ୍ଦ ଉତ୍ତର ଦେବା ଆଗରୁ ଉମା କହିଲା, "ସେ ଆଜି ଯାଇ-ପାରିବେ ନାହିଁ ବୋଲି ତତେ କହିବାକୁ ଆସିଥିଲେ ।"

ସଂଶୋଧନ କରି ରାଧୀ କହିଲା,"ସେ କଣ ଲୋ; 'ଭାଇ' ନା !" ଦୃଷ୍ଟି ଫେରାଇ, "କାହିଁକି ରେ ବାବୁ, କଣ ପୁଣି ବିଗିଡ଼ିଲା ।"

ସଦାନନ୍ଦ କହିଲେ, "ମୋର ଭାରି ଜରୁରୀ କାମ ଅଛି ଅପା । ସେହି କଥା ପରା ଲକ୍ଷ୍ମୀକୁ ବୁଝାଇ କହୁଥିଲି । ଭାରି ଜଣେ ସେ, କାରଣ ନ ବୁଝିଲେ ନ ଛାଡ଼େ ।"

ଉମାର ମୁହଁ ଲାଲ ହୋଇଗଲା । ସେ କହିଲା, "ଆମେ କଣ ଏକୁଟିଆ ଯିବା ମା ? ମୁଁ କହୁଛି—ଆମର ଯିବା ନ ହେଲା ପଛେ—।"

ରାଧୀ କହିଲା, "ସବୁ ଦିନେ ତ ତମର କାମ ଥାଏ, ରାତି ଅଧରେ ଫେର । ଆଜି ଏବେ ସେ କାମଟା ବନ୍ଦ ଥାଉ । ଲକ୍ଷ୍ମୀ ତୋର ସାନ ଭଉଣୀଟା, ଏତେ କରି କହୁଛି । ଆଉ କାହାକୁ ସାଙ୍ଗରେ ନେଇ ଚାଲିଯାନ୍ତି । ତୁ ଗଲେ ଲୋକ ଭିଡ଼ ଥିଲେ ପାଟେଖେଇ ଯିବେ ।"

ସଦାନନ୍ଦ ଚୁପ ରହିଲେ ।

ରାଧୀ କହିଲା, "ଲକ୍ଷ୍ମୀ ପରା ତତେ ଏତେ ଅଳି ହେଉଥିଲା । ଦେଖିଲୁ, ଖାଲିଃ ଦେଉଳକୁ ତୋ ସାଙ୍ଗରେ ଯିବ ବୋଲି ମୋର ପଦେ କଥାରେ ସବୁ ସଙ୍କୋଚ ଫିଙ୍ଗିଛି । ଭଲ କଥା, ଭାଇ ଭଉଣୀର ପବିତ୍ର ସମ୍ବନ୍ଧ ଭିତରେ

ସଙ୍କୋଚ ଅବଲତା ରହିବାଠା ମୋଟେ ଭଲ ନୁହେଁ । ପରଦା ଭିତରେ ଆଉଆଳରେ ସିନା ପାପ ଆବର୍ଜନା ଥାଏ ରେ ବାପ !"

ଦୁହେଁ ନିଜକୁ ଅପ୍ରସ୍ତୁତ ମଣିଲେ । ଉମା ଓଢ଼ଣା ଟାଣିଲା ।

ସୁଧୀ ଉମାର ମୂର୍ତ୍ତି ଟେକିଧରି ପୁଣି କହିଲା—"ଦେଖିଲୁ ମୋ ମା, ଲକ୍ଷ୍ମୀର ମୂର୍ତ୍ତି କେଡ଼େ ସୁନ୍ଦର ! ସେ କଣ ତୋର ଭଉଣୀର ଉପଯୁକ୍ତ ନୁହେଁ ? ତୁ ତାର ପ୍ରଥମ ଅନୁରୋଧଟି ଭାଙ୍ଗି ଦେଉଛୁ !"

ଉମା ଲାଜରେ ମୁଖ ଅବନତ କରି ଅଡ଼ହେଲା । ସଦାନନ୍ଦ ଲଜ୍ଜାରେ କୁଣ୍ଠିତ ହୋଇ କହିଲା, "ଥାଉ ମା, ଭଲ ଆଖିକି ଭଉଣୀ ତ ସବୁବେଳେ ସୁନ୍ଦର ଦିଶେ । ଭଲ ଆଖିରେ ଭଉଣୀ ଯେ ଅତି ପବିତ୍ର ଶକ୍ତି !"

ସୁଧୀର ଆଖିରେ ପ୍ରେମାଶ୍ରୁ ଢଳ ଢଳ ହେଲା । ସେ ଗଦ୍‌ଗଦ କଣ୍ଠରେ କହିଲା,—"ତୋ ମୁହଁରୁ ମୁଁ ସେତିକି ଶୁଣିବାକୁ ଚାହେଁ ରେ । ତା ହେଲେ ମୁଁ ନିଶ୍ଚିନ୍ତ...। ବର୍ତ୍ତମାନ ତୁ ସାଙ୍ଗରେ ଯିବାକୁ ମନା କରି ପାରିବୁ ନାହିଁ ବାପ, ତୋ ଭଉଣୀ ମନରେ କଷ୍ଟ ହେବ ଯେ !"

## —ପଞ୍ଚତିରିଶ—

ମୁହଁସଞ୍ଜ ବେଳ, ଜଗୁ ପେଟ ବିକଳରେ ଗାଁ ଭିତରକୁ ପଶିଲା । କିନ୍ତୁ ଏ କଣ ? ଜୀଅନ୍ତା ମଣିଷର ଦେଖା ତ ଦୂରର କଥା, ଘର ଭିତରୁ କାହାରି ସ୍ୱରଶବ୍ଦ ଶୁଣା ଯାଉ ନାହିଁ, କେବଳ ବେଳେବେଳେ ଦୂର ମଶାଣିରୁ ବିଲୁଅ, କୁକୁର, ପେଚା, ହୁଁ ହୁଁ କା ଚଢ଼େଇଙ୍କର ଶବ୍ଦ ଗାଁର ନିର୍ଜନତାକୁ ଆହୁରି ଭୟଙ୍କର କରୁଛି । ଯେଉଁ ଘର ଆଗରେ ଠିଆହୋଇ କରୁଣ କଣ୍ଠରେ ଡାକ ଛାଡ଼ିଲେ ମଧ୍ୟ କେହି ଜବାବ ଦେଉ ନାହିଁ । ବଡ଼ ବିଚିତ୍ର କଥା !

ଜଗୁ ଆଉ ପେଟର ଜ୍ୱାଳା ସହି ପାରିଲା ନାହିଁ । ଶେଷର ପରି ଏଣେ-ତେଣେ ବୁଲି ସେ ଘର ଘର କରି ପଶି ଆହାର ଅନ୍ୱେଷଣ କଲା । କେହି ନାହିଁ, ଘରଗୁଡ଼ା ମୁକୁଳା ପଡ଼ିଛି । ଠାଏ ଠାଏ ଘର ଭିତରେ ମୁର୍ଦ୍ଦାର ପଡ଼ି ସଢ଼ୁଛନ୍ତି । ଦୁର୍ଗନ୍ଧରେ ଆକାଶ ଫାଟିପଡ଼ୁଛି । କେଉଁ ଘରେ ବା

ଗୃହରେ ଦାଉଡ଼ା ଦେଇ କୂଳର ଝିଅବୋହୂ ଲଙ୍ଗଳାହୋଇ ମଲ୍ଲ ଝୁଲୁଛନ୍ତି । ଜଗୁର ଆଖିରେ ଏ ଦୃଶ୍ୟ ପଡ଼ିବାରୁ ସେ ଭୟରେ ଚମକି ପଛକୁ ଫେରୁଛି । କଣ କରିବ ? ଶେଷକୁ କଣ ମୁଠିଏ ଖାଇବା ବିନା ଏହି ମଶାଣି ଭିତରେ ତାକୁ ବି ମରି ଶୋଇବାକୁ ପଡ଼ିବ ? ଜୀବନ ରକ୍ଷା କରିବାକୁ ତାର ସବୁ ଚେଷ୍ଟା ବିଫଳ ହେବ ?

ସେ ଆଗକୁ ଗଲା । ବାଟଘାଟ ଯେଉଁଠି ଆଖି ପକାଇଲା ସେଠି ଦେଖିଲା, ମଣିଷର ଶବ । ସତେ କି ସେ ପ୍ରକୃତରେ ଆଜି ପ୍ରେତପୁରୀ ଭିତରେ ବିଚରଣ କରୁଛି । କଥା କଣ ? ଗୋଟାଏ ଗାଁର ଲୋକଗୁଡ଼ା ସମସ୍ତେ ମରି ଶୋଇଲେ, କେହି ଜଣେ ବଞ୍ଚି ରହିଲା ନାହିଁ ? ଜଗୁ ଟଳି ଟଳି ଆସି ବାଡ଼ କଡ଼ର ଗୋଟିଏ କୂଅ ପାଖରେ ପହଞ୍ଚିଲା । ଯାହା ହେଉ, ମନାଏ ପାଣି ପିଇ ପ୍ରାଣ ବଞ୍ଚାଇବ; କିନ୍ତୁ ପାଣି କାଢ଼ିବାର ଉପାୟ କଣ ? ସେ କୂଅ ଫନ୍ଦକୁ ଆଉଜି କଅଁଳ ଅନ୍ଧାରରେ ମୁଣ୍ଡ ନୁଆଁଇ ଭିତରକୁ ଚାହିଁଲା, ଆଶାକୁଳ ଦୃଷ୍ଟିରେ । ଆହା, କୂଅ ଭିତରଟା ଘୋର ଅନ୍ଧାର । ସଢ଼ା ଗନ୍ଧରେ ମୁହଁ ରଖି ହେଉ ନାହିଁ । ଭିତରୁ କାହାର କ୍ଷୀଣ କ୍ରନ୍ଦନ ଫୁଟି ବାହାରୁଛି ପଦାକୁ । ସେ ମୁହଁ ଫେରାଇ ଆଗକୁ ଗଲା ।

ସେ ଭୂତପ୍ରେତଙ୍କୁ ଡ଼ରେ ନାହିଁ । ତାର ପରି କେହି ହତଭାଗ୍ୟ ହୁଏ ତ ପାଣି ପିଇବାକୁ ଆସି କୂଅରେ ଝୁଙ୍କି ପଡ଼ିଛି; କିମ୍ବା ଦୁର୍ଭିକ୍ଷର ଅତ୍ୟାଚାର, ପେଟର ଜ୍ୱାଳା, କି ରୋଗର ଯନ୍ତ୍ରଣା ସହି ନ ପାରି କୂଅରେ ଝାସଦେଇଛି, ପ୍ରାଣ ଯାଇ ନାହିଁ । ଦୁର୍ବଳ ଅବଶ ଦେହ, କ୍ଲାନ୍ତ ବ୍ୟଥିତ ମନ ଘେନି ପରକୁ ବିପଦରୁ, ମୃତ୍ୟୁ ମୁଖରୁ ଉଦ୍ଧାର କରିବାର ସାହସ ଶକ୍ତି ତାର ଲୋପ ହୋଇଛି । ନିଜର ଜୀବନ ରକ୍ଷା ତାର ଏକମାତ୍ର ଚିନ୍ତା ।

ଗାଁଟି ଛୋଟ । ହେଲେ, ଘରଦ୍ୱାରର ଅବସ୍ଥା ଦେଖି ବେଶ ବୁଝା ପଡ଼ୁଛି ଯେ, ଭଲ ଦିନରେ ଲୋକେ ସେଠାରେ ସୁଖରେ, ଆନନ୍ଦରେ ଘର କରୁଥିଲେ । ହୁଏ ତ ହଇଜା ଡ଼ରରେ, ପେଟ ପାଇଁ, ଖାଲି ଜୀବନ ବଞ୍ଚାଇବାକୁ, ଲୋକେ ଘରଦ୍ୱାର ଛାଡ଼ି ପଳାଇଛନ୍ତି । ଆତ୍ମୀୟ ସ୍ୱଜନ ତାଙ୍କର ମରିଛନ୍ତି କିମ୍ବା ମୁମୂର୍ଷୁ ହୋଇ ପଡ଼ିଛନ୍ତି । ଟିକିଏ ଆଖି ଫେରାଇବାକୁ ତାର ବେଳ ନାହିଁ । ନିଜ କଥା ନିଜକୁ ଅସମ୍ଭାଳ ।

ଅନ୍ଧାର ଘୋଟିଗଲା । ଜଗୁର ଗୋଡ଼ ରହିଲା । ସେ ଆଉ ଆଗକୁ ନ ଯାଇ ପାଖ ଘରର ପିଣ୍ଡା ଉପରେ ଲମ୍ବହୋଇ ଶୋଇଲା । ଏତେ ଦିନକେ ସେ ଅଜଗର ଜୀବନ ବଞ୍ଚାଇବା ବିଷୟରେ ସନ୍ଦିହାନ ହେଲା । ପିତୃପୁରୁଷଙ୍କ କଷ୍ଟଲବ୍ଧ ଜୀବନଟା ତାର ଶେଷକୁ ଅଜଣାରେ ପଡ଼ି ଅଣହେଳାରେ ଯିବ, କେହି ଦେଖିବେ ନାହିଁ, ତାର କଥା କେହି ଜାଣିବେ ନାହିଁ, କେହି ଶୁଣିବେ ନାହିଁ !

ତାର ଦୁଇ ଆଖି ଲୁହରେ ଭରିଗଲା । ଆହା, ଶେଷକୁ ତାର ସ୍ନେହମୟୀ ଭଉଜ, ପ୍ରାଣପ୍ରତିମ ପୁତୁରା ବେଣୁଟିର କଥା ଶୁଣି ପାରିଲା ନାହିଁ । ତାର ଧାନ ଖାଇ ଗାଁଲୋକେ ସୁଖରେ ରହିଲେ, ତାର ଧନ ଚୋରି କରି ନେଇ ହୁଏ ତ ଦୁର୍ଭିକ୍ଷକୁ ଗୋଡ଼ରେ ଦଳି ଆନନ୍ଦରେ ବେଳ କାଟୁଥିବ ! ମନୁଷ୍ୟତ୍ୱକୁ ପଛରେ ପକାଇ, ଚରିତ୍ର, ସତୀତ୍ୱକୁ ଉଦର ଆଗରେ ଅର୍ଘ୍ୟ ଦେଇ ଜମା ଆଜି ସୁଖୀ ! ଆଉ ସେ,—ନିର୍ବୋଧ ସେ— ବାପ୍ପଣର ଠେକ ରଖିବାକୁ ଯାଇ, ପିତୃଆଜ୍ଞା ପାଳନ କରିବାକୁ ଯାଇ, ଆଜି ମଶାଣି ଭିତରେ ଶୋଇଛି ମରଣ ପ୍ରତୀକ୍ଷାରେ !

ନିବିଡ଼ ଅନ୍ଧାର ଭେଦ କରି ତାର ଅବଶ ଆଖି ଆଗରେ ଗୋଟିଏ ଛୋଟ ଆଲୋକ ରେଖା ଦେଖାଦେଲା, ଟିକିଏ ଦୂରରେ । ଆନନ୍ଦରେ ଆତ୍ମହରା ହୋଇ ସେ ଉଠିବସିଲା । କରୁଣ ମନ ତାର କ୍ଷଣକ ପାଇଁ ଉତ୍ଫୁଲ୍ଲ ହୋଇଉଠିଲା । ଦୁର୍ବଳ ଦେହରେ ଶକ୍ତିର ସଂଚାର ହେଲା । ଜୀବନର ଆଶା ଏକାଥରକେ ଲିଭି ଯାଇ ନାହିଁ ତେବେ । ଏ ମଶାଣି ଭିତରେ ଜୀବନ୍ତ ମଣିଷ ନିଶ୍ଚୟ କେହି ଅଛି !

ସେ ପିଣ୍ଡାରୁ ଓହ୍ଲାଇ ସେହି କ୍ଷୀଣ ଆଲୋକକୁ ଲକ୍ଷ୍ୟକରି ଚାଲିଲା । ଦୁର୍ବଳତାରୁ ଗତି ଶିଥିଳ, ଗୋଡ଼ ବାଟରେ ନ ପଡ଼ି ଅବାଟରେ ପଡୁଛି । ଖଣ୍ଡେ ଦୂର ଆସି ସେ ଗୋଟାଏ ଶବକୁ ଝୁଣ୍ଟିପଡ଼ିଲା ମୁହଁ ମାଡ଼ି । କପାଳରେ ତୀବ୍ର ବେଦନା ଅନୁଭବ କଲା । ଆହା, ତଳୁ ଉଠିବାକୁ ଯେପରି କି ଆଉ ତା ଦେହରେ ଜୋର ନାହିଁ । ଏହାହିଁ କଣ ଶବର ଆକର୍ଷଣ, ମରଣର ନିମନ୍ତ୍ରଣ ? ଏତେ ଶୀଘ୍ର, ଏତେ ସହଜରେ ସେ କଣ ଆତ୍ମସମର୍ପଣ କରି ନିଜକୁ ବଳିତ ବୋଲି ମାନି ନେବ ? ନା, ନା, ସେ ତ ବର୍ତ୍ତମାନ ମଧ୍ୟ ଜୀବିତ ।

ଇଶ୍ବର ସେହି ଅପରିଚିତର ଶବ ଉପରେ ଅଶ୍ରୁ ଢାଳିଦେଇ ଉଠି ଠିଆ ହେଲେ । ନିକଟରୁ ଘୋଡର ଆଲୁଅଟି ପୂର୍ବପରି ଥରି ଥରି ଜଳୁଛି । ସେ ଜୀବନ ଆଶାରେ ଉତ୍ସାହିତ ହୋଇ ଆଲୁଅକୁ ଗୃହଁ କମ୍ପିତ ପଦରେ ଚାଲିଲେ ।

ବାଃଶନ୍ଦରେ ପାଖରେ ପହଞ୍ଚି ଦେଖିଲେ, ଛୋଟ କୁଡ଼ିଆଟିଏ । କବାଟ ଦରଆଉଜା, ତାର ଭିତରେ ଗୋଟିଏ ରୁଖା ଉପରେ ଦୀପଟି ଜଳୁଛି । ସେ ଧୀରେ ଧୀରେ ପାଖକୁ ଯାଇ କବାଟ ଫାଙ୍କରେ ଭିତରକୁ ଗୃହଁଲେ । ଖଣ୍ଡେ ଛିଣ୍ଡା ଶପ ଉପରେ ଲୋକଟିଏ ଶୋଇଛି । ତା ମୁଣ୍ଡ ପାଖରେ ସ୍ତ୍ରୀଲୋକଟିଏ ବସି ଧୀରେ ଧୀରେ ତାର ଦେହ ଆଉଁସି ଦେଉଛି । ସ୍ତ୍ରୀଲୋକର ପାଖରେ ଖଣ୍ଡେ ଭଙ୍ଗା ପଥର ଥାଳିଆରେ ଅଧ ଥାଳିଏ ହେବ ଧୋବ ଫର ଫର ଭାତ । ସଦ୍ୟ ଗଲା ହୋଇଥିବାରୁ ଉପରୁ ବାମ୍ଫ ଉଠୁଛି । ପାଖରେ ଗୋଟିଏ ଠେକି, ସମ୍ଭବତଃ ପାଣି ଅଛି ।

ଇଶ୍ବର ଜଠରାଗ୍ନି ଦ୍ବିଗୁଣ ବେଗରେ ଜଳିଉଠିଲା । ତାକୁ ଚିକପୁର ଅନ୍ଧାର ଦିଶିଲା । ଏହି ଭାତରୁ ଯଦି ମୁଠିଏ ତାକୁ କିଏ ଦିଅନ୍ତା । ନା, ଗୃହଁ ରହିଲେ ତ ହେବ ନାହିଁ । ଜାଣି ଜାଣି କୋମଳ ଶିଶୁକୁ ମରଣ ଦୁଆରେ ଛାଡ଼ି ଆସିଛି । ମୁମୂର୍ଷୁ କ୍ଷୁଧାର୍ତ୍ତର ମୁଖର ଗ୍ରାସ କାଢ଼ିନେଲେ କିନା ତାର ପରୀକ୍ଷା ପୂର୍ଣ୍ଣ ହେବ ! ଇଶ୍ବର ମଣିଷପଣିଆ ଲୋପ ହୋଇଛି ବୋଲି ସେ ଜାଣିବ ! ଆଉ ଡେରି କାହିଁକି ? କିନ୍ତୁ ଏତେ ବଡ ଅନ୍ୟାୟ କରିବାକୁ ତାର ଗୋଡ଼ ଚଳିଲା ନାହିଁ । ସେ ଆଖି ବୁଜି ଦ୍ବାରବନ୍ଧରେ ମୁଣ୍ଡ ମାଡ଼ି ଠିଆହୋଇ ଘର ଭିତରୁ ବାହାରୁଥିବା ବ୍ୟସ୍ତତାସୂଚକ କଥା-ଗୁଡିକ ଶୁଣିଲା । ସ୍ତ୍ରୀ ଲୋକଟି ମୃଦୁ କଣ୍ଠରେ କହିଲା "ଉଠ ବାବା, କେତେ କଷ୍ଟରେ ଭାତ ମୁଠିକ ଫୁଟାଇଛି । ଟିକିଏ ଜୋର ହେଲେ କାଲି ସକାଳୁ ଗୋପ ଯିବା ପରା !"

କ୍ଷୀଣକଣ୍ଠରେ ଲୋକଟି କହିଲା "ଗୋପ ଯିବା?···ଉହୁଁ, ମୁଁ ଯାଇ ପାରିବି ନାହିଁ ··"

"ଚାଡ଼ି ଦିକୋଶ ଯାଇ ପାରିବୁ ନାହିଁ ?" ବୁଢ଼ୀ ତାର ପୁଅର ମୁଣ୍ଡ ଉପରେ ହାତ ରଖି କହିଲା, "ତୋର କଣ ହୋଇଛି କି ? କଦଳୀମୁଣ୍ଡା ସିଝା ଦିଦିନ କାଳ ଖାଇ ଖାଇ ପେଟ ଗରମ ହୋଇଯାଇଛି । ଯାଉ୍ଥା

ସେ ଉନ୍ନତା ତ ହୋଇଛ । ଦୋରକା ଭାତ ମୁଠିକ ଖାଇ ଦେ, ସବୁ ଭଲ ହୋଇଯିବ । ଉଠିଲୁ ବାପ—”

ରୋଗୀ ଉତ୍ତର ଦେଲା ନାହିଁ ।

କେତେଜାଣି କାହିଁକି ଜଗୁ କବାଟ ଖୋଲି ଭିତରକୁ ପଶିଲା । ତାକୁ ଦେଖି ବୁଢ଼ୀ ଅସ୍ତବ୍ୟସ୍ତ ହୋଇ ମୁହଁ ଫେରାଇ ଘଣା ସନ୍ଦେହପୂର୍ଣ୍ଣ ଗୃହା-ଣୀରେ ପଚାରିଲା, ““କିଏ ରେ… ।”

ଜଗୁ ଥରିଲା କଣ୍ଠରେ ଉତ୍ତର ଦେଲା, “ମୁଁ ଜଣେ ବାଟୋଇ , ଗୋପ ଯାଉଛି ।”

“ଗୋପ ଯିବା ଲୋକ ମୋ ଘରେ କଅଁ… ?”

“ଅନ୍ଧାର ହୋଇଗଲା… ।”

“ଅନ୍ଧାର ହେଲା ତ ମୁଁ କଣ କରିବ ? ଯା ଆଉ କେଉଁଠିକି ।”

“ମା, ଗାଁରେ ତ କାଅନ୍ତା ଲୋକ କେହୁ ନାହାନ୍ତି…।”

“ଲୋକଗୁଡ଼ା ସିନା ହଇଜାରେ ମଲେ, ଯେ ରହିଲେ ଟା ଛାଡ଼ି ପଳେଇଲେ, ତାଙ୍କ ଘର ତ ପଡ଼ିଛି । କାହା ପିଣ୍ଡାରେ ରାତିଟା କଟାଇ ଦେଲେ ହେଲା…।”

ଜଗୁ ହତାଶ ହେଲା । ଅକୁଳ ଦୃଷ୍ଟିରେ ଭାତ ଥାଳକୁ ଗୃହିଁରହି କହିଲା, “କେତେ ଦିନ ହେଲା ମୋ ପେଟରେ ଦାନା ପଡ଼ି ନାହିଁ ମା । ଭୋକରେ ମୋର ପ୍ରାଣ ଛାଡ଼ିଯାଉଛି ।”

ବୁଢ଼ୀ ଜଗୁର ମନ କଥା ଅନୁମାନ କରି ସତର୍କ ହୋଇ ଥାଳଟିକୁ ନିଜ କୋଳ ଆଡ଼କୁ ଘୁଞ୍ଚାଇ ନେଇ କହିଲା, “ପ୍ରାଣ ଛାଡ଼ିଗଲେ ମୁଁ କଣ କରିବ ? ପୁଅ ମୋର ବାଧିକା ପଡ଼ିଛି ଯେ, କେତେ କଷ୍ଟରେ ମୁଠିଏ ଭାତ ଫୁଟାଇଛି…।”

“ଭାତ ମାଗୁ ନାହିଁ । ମତେ ଗଣ୍ଡିଏ ଗୁଡ଼ଳ ଦେଲେ ମୁଁ ଚୋବାଇ ରାତିଟା କଟାଇବ ।”

“ଗୁଡ଼ଳ କାହୁଁ ପାଇବ ରେ ? ଘର ଯାକ ଖୋଜ । ପଥି ପାଇଁ ମୁଠିଏ ଗୁଡ଼ଳ ଲାଗି ଗାଁର ଏମୁଣ୍ଡ ସେମୁଣ୍ଡ ଘରେ ଘରେ ପଶି ଖୋଜିଲି; କାହିଁ ପାଇଲି ନାହିଁ । ଶେଷକୁ ଗୋଟିଏ ମଲା ମଣିଷ କାନରେ ମୁଠାଏ ଗୁଡ଼ଳ

ବନ୍ଧା ହୋଇଥିଲା । ସେତକ ଅଣି ପୁଅ ପଥ୍ୟ କରିବ ବୋଲି ଘୁଞ୍ଚାଇ ରଖିଛି...।"

ଜଗୁ ପଚାରିଲା, "କଣ ହୋଇଛି ତମ ପୁଅର...?"

ବୁଢ଼ୀ—"ଝାଡ଼ା ହେଉଛି ବାପା, ସକାଳୁ...।"

ଜଗୁ—"ହଇଜା ?"

ବୁଢ଼ୀର ସର୍ବାଙ୍ଗ ଥରଉଠିଲା କୋଧରେ । ଭୟରେ ମୁହଁ କଳାକାଠ ପଡ଼ିଗଲା । ବୁଢ଼ୀ ରହି ରହି କହିଲା, "ନାଇଁ ନାଇଁ, ସେ କଥା ନୁହେଁ, ଏଇ, ଟିକିଏ ଝାଡ଼ା, ଥରେ ଅଧେ ବାନ୍ତି ।" ବୁଢ଼ୀ ଟିକିଏ ରହି କାନ୍ଦି କାନ୍ଦି ପୁଅ ମୁହଁରେ ମୁହଁ ଲଗାଇ କହିଲା, "ନାଇଁ ନାଇଁ, ସେ କଥା ନୁହେଁ...।"

ଜଗୁ ରୋଗୀର ମୁହଁ ଓ ଘରର ଅବସ୍ଥା ଦେଖି ସଙ୍ଗେ ସଙ୍ଗେ ବୁଝି ପାରିଲା, ଘଟଣାଟା କେତେଦୂରରେ ଅସି ପହଞ୍ଚିଲାଣି । ହୁଏ ତ ଆଉ ଘଣ୍ଟାଏ ଦି ଘଣ୍ଟା ଭିତରେ ରୋଗୀଟିର ଶେଷ ନିଶ୍ୱାସ ହେବ । ତଥାପି ତାର କରୁଣାମୟୀ ମା କୌଣସି ଅଶୁଭ କଥା ମନରେ ଆଣିବାକୁ ପ୍ରସ୍ତୁତ ନୁହେଁ । ଆହା, ଧନ୍ୟ ଜନନୀର ସ୍ନେହ ! ସେହି ସ୍ୱର୍ଗୀୟ ସ୍ନେହରୁ ଜଗୁ ଯେ ଆବାଲ୍ୟରୁ ବଞ୍ଚିତ !

ସେ ଭାବିବାକୁ ଲାଗିଲା—ନିଜର ଜୀବନ ପାଇଁ ଅକ୍ଳେଶରେ ସେ ଏମାନଙ୍କର ମୁଖର ଗ୍ରାସ ଅପହରଣ କରିପାରେ; କିନ୍ତୁ ସେ କଣ ସତରେ ଏତେ ହୀନ, ଏତେ ଦାରୁଣ ହୋଇଛି ! ବିପନ୍ନକୁ ସାହାଯ୍ୟ କରିବା ପରିବର୍ତ୍ତେ ବିପନ୍ନକୁ ମରଣ ମୁହଁକୁ ଠେଲିଦେବ ସ୍ୱାର୍ଥ ପାଇଁ ! ଜୀବନ ସମସ୍ତଙ୍କର ଏକ । ଦୁଇଟି ପ୍ରାଣୀର ଜୀବନ ନେଇ ନିଜକୁ ବଞ୍ଚାଇ ରଖିବାରେ କି ସାର୍ଥକତା ଅଛି ? ନା ନା, ସେ ମଣିଷ, ସେ ପାଷଣ୍ଡ ନୁହେଁ !

ବୁଢ଼ୀ କାନ୍ଦି କାନ୍ଦି ତାର ପୁଅକୁ କହିଲା, "ଉଠ ବାପ, ପେଟରେ ଦାନା ପଡ଼ି ନାହିଁ ବୋଲି ତୋର ଆଖିଗୁଡ଼ା ଭିତରକୁ ପଶି ଗଲାଣି, ମୁହଁଟା କଳା ଦିଶୁଛି । ଉଠ ବାପ...।"

ରୋଗୀ ଧୀରେ ଧୀରେ କହିଲା, "ମୋ ଆଶା ଛାଡ଼ ମା...ଓଃ...!!"

"ସେ କଥା କହନା ପୁଅ...।" ବୁଢ଼ୀ ତାର ଛାତିରେ ମୁହଁ ଲୁଚାଇ କାନ୍ଦିବାକୁ ଲାଗିଲା ।

ସେ କରୁଣ ଦୃଶ୍ୟ ଦେଖି ମଧ୍ୟ ଜଗୁର ମନ ତରଳିଲା ନାହିଁ । କ୍ଷୁଧାରେ ଯେ ତାର ପ୍ରାଣ ଛଡ଼ିଯାଉଛି । ଜଗୁ କହିଲା, "ବ୍ୟସ୍ତ ହୁଅ ନା; ପୁଅ ତମର ଭଲ ହୋଇଯିବ ।"

ବୁଢ଼ୀ ମୁଣ୍ଡ ଟେକି ଜଗୁକୁ ଚାହିଁ କହିଲା,"ସତ ରେ ପୁଅ; ଭଲ ହୋଇ ଯିବ ? ହଉ ରେ ତୋ ଉଣ୍ଡ ସୁଝିଣ୍ଡ ହଉ...।"

ଜଗୁ ଅତି ଆକୁଳ କଣ୍ଠରେ ଅନୁରୋଧ କଲା "ମା, ସେଇ ଭାତରୁ ମୁଠିଏ ମୋତେ ଦେଇ ପାରିବ ନାହିଁ ! ତମରି ଆଗରେ, ଭୋକରେ ଯେ ମୋର ପ୍ରାଣ ଛଡିଯିବ...।"

ବୁଢୀ ଦୀର୍ଘଶ୍ୱାସ ଛାଡ଼ିଲା ।

ଜଗୁ କହିଲା, "ମୁଁ କଣ ତମର ପୁଅ ନୁହେଁ ?"

ବୁଢ଼ୀ ଭାତ ଥାଳିଟା କୋଳ ତଳକୁ ନେଇ କହିଲା, "ମୁଠିଏ ବୋଲି ତ ଭାତ...।"

"ସେଇ ଟୋପିକ...।"

"ମୁଁ କାଳେ ପିଇଛି...।"

ଜଗୁ ଟିକିଏ ରହି କହିଲା, "ପାଣି ମୁହିଏ ପିଇବାକୁ ଦିଅ ତେବେ...।"

ବୁଢ଼ୀ ପାଣି ଠେକାଟି ଆଗକୁ ବାନ୍ଧ କଡ଼କୁ ଘୁଞ୍ଚାଇ ଅଣି କହିଲା—"ଚଳେ ବୋଲି ପାଣି, ତତେ ଦେଲେ ପିଲାଟି ପାଟିରେ ଦେବ କଣ ? ଘଡ଼ିକ ଘଡ଼ି ତାର ତଣ୍ଟି ଶୁଖିଯାଉଛି ପରା... ।"

ରୋଗୀଟି ସେତିକିବେଳକୁ "ପାଣି ପାଣି" ବୋଲି ଚୀତ୍କାର କଲା । ବୁଢ଼ୀ ଠେକାରେ ହାତ ବୁଡ଼ାଇ ଅଳ୍ପ ପାଣି ନେଇ ତାର ମୁହଁରେ ଦେଇ କହିଲା, "ଉଠ ରେ, ଭାତ ଦୋଟି ଖାଇଦେଇ ପାଣି ପି ।"

"ଉଠି ପାରୁନି ନାହିଁ... ।"

"ପାଟିରେ ଭାତ ଦେବି ," କହି ବୁଢ଼ୀ ଥାଳିରୁ ମୁଠିଏ ଭାତ ନେଇ ରୋଗୀର ପାଟିରେ ଦେଲା; କିନ୍ତୁ ଅହା ! ରୋଗୀର ଯେ ଢୋକିବାର ଶକ୍ତି ନାହିଁ ! ସେ ମୁଖ ବିକୃତ କରି ଭାତତକ ପାଟିରୁ କାଢିପକାଇଲା । ବୁଢ଼ୀ ବ୍ୟସ୍ତ ହୋଇ ଝାଡ଼ା ଭାତତକ ପୁଣି ନେଇ ଥାଳିରେ ରଖିଲା ।

ଜମ୍ବୁ ଅଚଳ ଭାବରେ ଠିଆ ହୋଇ ସବୁ ଦେଖୁଥିଲା । ସେ ଆଉ ଧୈର୍ଯ୍ୟ ଧରି ରହି ପାରିଲା ନାହିଁ । ଆଖି ଆଗରେ ଖାଦ୍ୟ ଥାଉଁ ଥାଉଁ ସେ କଣ ଭୋକରେ ଛଟପଟ ହୋଇ ମରନ୍ତା । କ୍ଷଣକ ପାଇଁ ସେ ତାର ବିବେକ କଥା ଭୁଲିଗଲା, ପେଟ ତାର ଗର୍ଜିଉଠିଲା । ସେ ଆଉ ଭଲମନ୍ଦ ବିବେଚନା କରିବାକୁ ବେଳ ପାଇଲା ନାହିଁ । କ୍ଷୁଧିତ ଶାର୍ଦ୍ଦୂଳ ପରି ସେ ଲମ୍ଫ ଦେଇ ବୁଢ଼ୀକୁ ଟାଣି ଘରର କୋଣଟିଏ କଣରେ ଲଗୁଡ଼ିଦେଲା । ମୁହୂର୍ତ୍ତେ ବିଳମ୍ବ ନ କରି ଗୋଟିଏ ହାତରେ ଭାତ ଥାଳି ଓ ଆର ହାତରେ ପାଣି ଠେକିଟି ଧରି ଦ୍ରୁତ ବେଗରେ ଘର ଭିତରୁ ପଦାକୁ ଧାଇଁ ଅନ୍ଧାରକୁ ଗୁଳିଗଲା ।

## —ତ୍ରୟସ୍ତ୍ରିଂଶ—

ଉମା ହାତରେ ଶୃଙ୍ଖୁଡ଼ି ଧରି ଗୋଟିଏ ବୁଦା ପାଖରୁ ଆର ବୁଦା ପାଖକୁ ଯାଇ ମଲ୍ଲୀକଢ଼ ତୋଳି ଶୃଙ୍ଗୁଡ଼ାରେ ରଖୁଛି । ବଡ ସକାଳ, ଖରା ଆସି ନାହିଁ, ପାଖ ପୋଖରୀରୁ ଡେଣ୍ଡାରେ ବଗିଚାକୁ ପାଣି ବୋହୁଥିବା ଲୋକଟି ହାତ ବନ୍ଦ କରି, ସଚେତକ ବିସ୍ମିତ ହୋଇ ତା ଆଡ଼କୁ ଅନାଇଲା । ଉମାର ତା ଆଡ଼କୁ ନଜର ନାହିଁ ! ଫୁଲ ତୋଳୁ ତୋଳୁ ସେ କେତେ କେତେ କଥା ଭାବିଯାଉଛି—ନିଜର କଥା, ନିଜ ରୂପର କଥା । ତା ରୂପକୁ ତ ସମସ୍ତେ ପ୍ରଶଂସା କଲେ; କାହିଁ ଦେଖି ପତିଙ୍କ ଆକୃଷ୍ଟ ହେଲା ପରି କେବଳ ତାର ରୂପ ଦେଖି ତାକୁ ସମସ୍ତେ ଭଲ ପାଇଲେ । ରୂପର ପ୍ରଭାବ ତ ଦୁନିଆଁରେ ଅଳ୍ପ ନୁହେଁ ତେବେ ! ରୂପ ଥିଲେ ଏହିପରି କେତେ କେତେ ଦୁର୍ବିଷହକୁ ନାରୀ ଅକ୍ଳେଶରେ ପଛରେ ପକାଇ ଆନନ୍ଦରେ ହସି ହସି ଆଗକୁ ଯାଇପାରେ ତେବେ । ଗୋଟାଏ ରୂପସୀ ସୀତାର ରୂପ ମୋହରେ ଲଙ୍କା ଦେଶରେ ପ୍ରଳୟକାଣ୍ଡ ଘଟି ପାରିଥିଲା ତ ! ନାରୀର ରୂପ—ଦେବତାର ଦାନ ନା ଅଭିଶାପ ?

ନିଜର ଭାବନାରେ ନିଜେ ଆନନ୍ଦ ଅନୁଭବ କରି ଉମା ମନକୁ ମନ ହସିଲା । ସଦ୍ୟଫୁଟା ମଲ୍ଲୀଫୁଲ ପରି ତାର ଉଜ୍ଜ୍ୱଳ ସୁନ୍ଦର ମୁହଁଟି ବିକଶିତ ହୋଇଉଠିଲା । ପରକ୍ଷଣରେ ଖରା-ମଉଳା ମଲ୍ଲୀଫୁଲ ପରି ତାର ମୁହଁଟି

ପୂର୍ଣ୍ଣିମକଳନ ହେଲା । ମନେ ପଡ଼ିଲା, ତାର ଗତ କେତେ ଦିନର କଥା । ଅଧିବାସୀ ସଦାନନ୍ଦ—ଯାହାଙ୍କୁ ସେ ଭାଇ ବୋଲି ଡାକେ, ତାଙ୍କର ବ୍ୟବହାରଟା କିଣ ପ୍ରକୃତରେ ନିର୍ମଳ ? ସବୁଦିନେ ଦୁଇ ପହରରେ ସୁଧୀ ପାଖରେ ବସି ସଦାନନ୍ଦ ରାମାୟଣ ପଢ଼ି ବୁଝାନ୍ତି । ସେ ମୁଗ୍ଧ ତନ୍ମୟ ହୋଇ ସବୁ ଶୁଣେ; ବୁଝି ନ ପାରିଲେ ସଦାନନ୍ଦଙ୍କୁ ପଚାରେ । ସେ ସ୍ନେହରେ, ଆଗ୍ରହରେ ଭଲ କରି ବୁଝାଇଦିଅନ୍ତି, ଆଦର କରି ତାର ପିଠିରେ ଛୋଟ ଗୁପୁଡ଼ାଟିଏ ମାରି ଗେଲ୍ହାରେ କହନ୍ତି—'ଓଲିମୀଟା' । ସୁଧୀ ଦେଖେ—କୃତଜ୍ଞତାରେ, ଆନନ୍ଦରେ ତାର ଦୁଇ ଆଖି ଲୁହରେ ଭରିଯାଏ । ସେ ହସି ହସି କହେ, "ତୋର ଏ ଭଉଣୀଟା ଭାରି ଓଲୁ ରେ; ମାଡ଼ ନ ଖାଇଲେ ତାର ବୁଦ୍ଧି ହୁଏ ନାହିଁ ।"

ସଦାନନ୍ଦ ହସନ୍ତି; ଉମା ଲଜରେ ସୁଧୀ ପିଠିଅଢ଼େ ମୁହଁ ଲୁଚାଏ ।

ସତେ କିଣ ସଦାନନ୍ଦ ତାକୁ ଭଉଣୀ ପରି ସ୍ନେହ କରନ୍ତି ? କିନ୍ତୁ ତାଙ୍କର ଆଖି ଦୁଇଟା ଯେ ଭିନ୍ନ କଥା କହେ । ସେ ବାଉରିଆ ଆଖିରେ ଯେଉଁ ପିପାସା, ଯେଉଁ ମାଦକତା, ଉଦ୍ଦିଗ୍ନତା ଦେଖିଥିଲା, ଭାଇ ସଦାନନ୍ଦର ଆଖିରେ ସେ ଠିକ୍ ସେହିପରି କିଣ ଦେଖେ; କିନ୍ତୁ ସେ ଯେ ବ୍ରହ୍ମଚାରୀ । ଆକର୍ଷଣର ବହୁତ ଦୂରରେ । ହୁଏ ତ ଉମା ଭୁଲ ବୁଝିଛୁ, ହୋଇପାରେ; କିନ୍ତୁ ସଦାନନ୍ଦର ମଧୁର ସ୍ପର୍ଶରେ ଅଙ୍ଗେ ଅଙ୍ଗେ ତାର ବିଜୁଳି ଖେଳିଯାଏ କାହିଁକି ? ମୁହଁରେ ଭାଇ ବୋଲି ସମ୍ବୋଧନ କରେ, ଅନ୍ତରରେ ଭାଇ ବୋଲି ତାଙ୍କୁ ଗ୍ରହଣ କରି ନେଇଛି ସେ; ତଥାପି ଏ ଚମକ ତାର ପ୍ରାଣରେ ଆସେ କାହିଁକି ? ଦୁର୍ବୋଧ !

ଉମା ନିଜ ଭାବନାରେ ତନ୍ମୟ ହୋଇ ଫୁଲ ତୋଳୁଛୁ । ବାହାରର ଜ୍ଞାନ ମୋଟେ ତାର ନାହିଁ । ଲୋକଟି ଚେତଣେ ପାଣି ବୁହା ବନ୍ଦ କରି ଧୀରେ ଧୀରେ ତା ପାଖକୁ ଆସିଲା । ଉମାର ଚିନ୍ତିତ ମୁହଁକୁ ନିରେଖି ଚାହିଁ ସେ କହି ଉଠିଲା, "ଉମା ନା··?"

ଉମା ଚମକି ଚାହିଁଲା—ଆଗରେ ତାର ବଇଆ ବାଉଳ । ବିସ୍ମୟ ଆନନ୍ଦରେ ତାର ପ୍ରାଣ ପୂର୍ଣ୍ଣ ହେଲା । ମେଘମୁକ୍ତ ଚନ୍ଦ୍ରମା ପରି ପ୍ରଫୁଲ୍ଲ ବଦନରେ ସେ କହିଲା, "ତୁ ଏଠି ବଇଆ ?"

ବଇଆ କହିଲା, "ପେଟ ବିକଳରେ ମୁଁ ଛତରକୁ ଆସି ନାହିଁ ଉମା, ମୁଁ ଆସିଛି...''

"ଆରେ, ଜଗୁ ଭାଇର ଖବର କଣ ?''

"ତାଙ୍କର ଖବର ନେବାକୁ ମୁଁ ଘର ଛାଡ଼ି ତାଙ୍କୁ ଖୋଜି ଖୋଜି ବାହାରିଛି । ଗାଁଲୋକେ ମେଳି ହୋଇ ତାଙ୍କର ଧାନଗୁଡ଼ିକ ବୋହି ନେଇଗଲେ । ଘରେ ନିଆଁ ଲଗାଇ... ।''

"କଣ କହୁଚୁ ତୁ ବଇଆ ? ମୁଁ ଏସବୁ କିଛି ଜାଣେ ନାହିଁ । ମୋତେ ସବୁ କଥା ଭଲ କରି କହ ତ ।''

ବଇଆ ଠିକେ ଠିକେ ଉମା ଆଗରେ ସବୁ କଥା କହିଲା । ଶେଷକୁ ଆଖିରେ ଲୁହ ଭରି କହିଲା "ସେ ତ ବୁଢା ବୁଢି କୁଆଡ଼େ ପଳେଇ ଆସିଲେ। ପର ଦିନ ମୁଁ ଯାଇ ଗାଁଲୋକଙ୍କୁ ଭଲ ରକମର ଗୋଟାଏ ଧମକ ଦେଲି, ମୋ କଥାରେ କେହି କାନ ଦେଲେ ନାହିଁ । ଶେଷକୁ ଅଉ କଣ କରନ୍ତି ?''

"କଣ କଲୁ ତୁ ବଇଆ ?'' ଉଦ୍ବିଗ୍ନ ହୋଇ ଉମା ପଚାରିଲା ।

"ସେମାନେ ଯେପରି ମୋର ବୁଢ଼ା ଖାମିନ୍ଦକୁ ଯୋଡ ମାରି ବଅଁଶଠା ଯାକଙ୍କୁ ଛତରକୁ ଠେଲିଦେଲେ, ମୁଁ ବି ସେମିତି ଦିନେ ରାତି ଅଧରେ ନିଆଁ ହୁଳା ଧରି ବାହାରିପଡ଼ିଲି...।''

"ସେଇଠୁ ?''

"ଯାହା କରିବାକୁ ପାଇଥିଲି—କଲି । ଗୋଟାଏ ଘର ବି ବାକି ରଖିଲି ନାହିଁ । ଆଗରୁ ତ ପିଲାବୁଆଙ୍କୁ ଛତରକୁ ପଠାଇଦେଇଥିଲି । ମୁଁ ଥିଲି ଏକୁଟିଆ; ଗହର ମଝିରେ ଠିଆହୋଇ ମୁଁ ଗୁହିଁ ରହିଥାଏ । ନିଆଁ ଶିଖା ଉପରକୁ ଉଠିଲା । ମୁଁ ମନଖୁସିରେ ବୁଢ ପାହାନ୍ତାରୁ ଗାଁ ଛାଡ଼ିଲି ।''

"ଭଲ କରିନୁ ବଇଆ !'' ବ୍ୟସ୍ତ ହୋଇ ଉମା କହିଲା ।

"କାହିଁକି ? ଖରାପଠା କଣ କଲି ? ଯେଉଁମାନେ ମେଳି ହୋଇ ଆମର ପିଲାବୁଆଙ୍କୁ ଛତରକୁ ଠେଲିଲେ, ଆମରି ମାଲରେ ଗଉଁ ଧରି ଆମ ନେହୁରି ରଖିଲେ ନାହିଁ, ସେମାନେ କଣ ନିଶ୍ଚିନ୍ତରେ ଗାଁରେ ବସି ଭୋଜନ ମାରନ୍ତେ ? ଅରେ ବାଃ...... !!''

ଉମା କହିଲା, "ସେମାନେ କଲେ ପେଟବିକଳରେ । ତୁ ପରି...।''

"ମନ ଜଙ୍ଗଲରେ କଲ ଉମା ! ସେଠେଠୁଁ କଅଣ ମଣିଷର ମନର ଦାମ୍ ବେଶି ନୁହେଁ ?"

ଉମା ଚକିତ ହୋଇ କହିଲା, "ସେମାନେ ଅମଣିଷ ଅନ୍ଧ ବୋଲି ତ, ତୁ କୋହୁଁ ।"

"ମୁଁ ଅତୁଥିଁ ବାଉର, ଅରଣା ପଶୁ । ଯେଉଁମାନେ ମଣିଷ ଚରାନ୍ତି, ସେମାନଙ୍କ ବୁଦ୍ଧି ଲୋପ ହେଲା, ସେମାନେ ହେଲେ ଅନ୍ଧ । ମୁଁ ତ ବାଉର ଥିଲି, ପଶୁ ଚରାଇବା ଲୋକ, ମୋତେ ଯାହା ବୁଦ୍ଧି ଦଶିଲା ମୁଁ କଲି... ।"

"ଆମ ଘରର ହାଲ କଣ ?"

"କାଁହୁଲା କହିବ ମୁଁ ଜଗୁ ବାବୁଙ୍କୁ ଖୋଜି ଖୋଜି ପୁଣି ଆସି ମଠରେ ଜୁଟିଛି । ଏଇଠି କାମଧାମ କରି ଖାଉଛି । ତାଙ୍କର ତ କାହିଁ ଦେଖା ନାହିଁ ?"

ଉମା କଣ କହିବ କହିବ ହୋଇ ତୁନି ରହିଲା ।

ବଇଅ ହସ ହସ ହୋଇ କହିଲା, "ତମେ ଏହି ମହନ୍ତଙ୍କ ଆଶ୍ରା ଧରି ରହିଲ ପରା ! ବାଃ, ଭଲ କାମ । ଆମ ଗାଁରୁ କେହି ହେଲେ ଗୋଟାଏ ଧର୍ମକାର୍ଯ୍ୟରେ ଯାଉ ।"

ବଇଅର ପରିହାସ କଥା ଶୁଣି ଉମା ହାଡ଼ରେ କାଁ ଲାଗିଲା । ସେ ନିଜକୁ ସମ୍ଭାଳି ନେଇ କହିଲା, "ଯିଏ ଯାହା କରିବ, ସେ ତାର ଫଳ ଭୋଗିବ । ସେଥିରେ ତୋର କଣ ଥାଏ ରେ ? ଯା, ଯା, ତୁ ତୋ କାମ କର ।"

ଘୃଣାରେ ଉମା ମୁହଁ ଫେରାଇ ଫୁଲ ତୋଳାରେ ମନ ଦେଲା । କେଜାଣି କାହିଁକି ତାର ଦୁଇ ଆଖିରୁ ଝର ଝର ହୋଇ ଲୁହ ଝରିବାକୁ ଲାଗିଲା ।

ବଇଅ ତେଣ୍ଡା ପାଖକୁ ଗଲା ଯାଉ ଯାଉ ମନକୁ ମନ ଗୁଣୁ ଗୁଣୁ ହୋଇ କହିବାକୁ ଲାଗିଲା, "ମରମ କହିଲେ ଲୋକ ମରେ ତ ! ଯାହାର ଯେଉଁ ପ୍ରକୃତି, ସେ କି ସହଜରେ ଛାଡ଼େ ?"

ଉମା ପ୍ରତିବାଦ କଲା ନାହିଁ । ବାଉର ଟୋକାଟା—ତା ସଙ୍ଗରେ ବଢିଲେ ନିଜର ମାନ ଯିବା କଥା । ହଉ, ଯିଏ ଯାହା ଭାବୁଛି ଭାବୁ । ଯିଏ ଯାହା

କହୁଛି କହୁ । କାହା କଥାରେ ସେ କାହିଁକି ପ୍ରତିବାଦ କରିବ ? ନିଜକୁ ଯାହା ଭଲ, ସେ କରୁଛି ।

ଉମା ଫୁଲ ତୋଳା ଶେଷ କରି ପାଖ ଆମ୍ବଗଛ ତଳେ ବସି ଫୁଲ ଗୁନ୍ଥିବାରେ ମନ ଦେଲା; କିନ୍ତୁ ତାର ଫୁଲଗୁନ୍ଥାରେ ମନ ଲାଗିଲା ନାହିଁ ! ଜଗୁ ଭାଇର କଥା ତାର ମନପ୍ରାଣକୁ ବ୍ୟଥିତ କଲା । ଅହା, ଜଗୁ ଭାଇ, ନରପୁରର ପଧାନଙ୍କ ପୁଅ—କେଡ଼େ ବଡ଼ଲୋକ, ତାର ପୁଣି ଶେଷକୁ ଏ ଅବସ୍ଥା, ପେଟ ଦାଉରେ ଛତର ଯୋଗ ! ସେଦିନ ସେ ଯାହାକୁ ଟୋଠା ଭିତରେ ଯାଉଥିବାର ଦେଖିଥିଲା, ସେହି ତେବେ ତାର ଜଗୁ ଭାଇ। କେଡ଼େ ଭୁଲ ନ କରିଛି ସେ !

ଆଖି ଲୁହରେ ଫୁଲମାଳ ଭିଜିଲା । ଉମା ଜଗୁ ଭାଇର ଚିନ୍ତାରେ ନିଜକୁ ମଧ୍ୟ ଭୁଲିଲା । ଅତୀତର କେତେ ସୁଖସ୍ମୃତି ତାର ମନ ଭିତରେ ଖେଳିଗଲା । ସେହି ଜଗୁ ଭାଇ ! ଯାର ପାଇଁ ତାର ପ୍ରାଣ ସବୁ କାନ୍ଦୁଉଠେ ! ଉମାର ଆଖିରେ ଲୁହ ଦେଖିଲେ ତାର ଆଖିପତା ଓଦା ହୋଇଆସେ ! ବାପମାଙ୍କଠାରୁ ଉମା ପାଇଁ ସେ କେତେ ଗାଳିମନ୍ଦ, କେତେ ଠାହୁଠାପଣ, କେତେ ଅପମାନ ନ ସହୁଛି ! ହେଲେ କେବେ ଛଳ କରି ନାହିଁ ତ ! ବରଂ ଲୋକଙ୍କ କଥାକୁ କାନରେ ନ ଦେଇ ମାନ ଅପମାନକୁ ଗୋଡ଼ରେ ଠେଲି, ସେ ଉମାକୁ ଛାତିରେ ଧରିଛି, କଣିକାଏ ମହାପ୍ରସାଦ ପାଇଁ ।

ସେହି ଜଗୁ ଭାଇ ତାର । ଆଜି ଧନସମ୍ପଦ, ଆତ୍ମୀୟ ସ୍ୱଜନ ସମସ୍ତଙ୍କୁ ହରାଇ, ପେଟ ପାଇଁ ଗାଁ ଗାଁ ବୁଲି ଛତର ଉଣ୍ଡୁଥିବ । ଆଉ ସେ ମହା ଆନନ୍ଦରେ, ମହା ନିଶ୍ଚିନ୍ତରେ ପରର ଅନ୍ନ ସେବା କରି ମଠରେ ବସିଛି ! ରୂପର ପ୍ରଭାବରେ ପରକୁ ଆପଣାର କରି ଆଖିର ପିଞ୍ଜୁଡ଼ା, ଓଠର ହସରେ ବାନ୍ଧି ରଖିଛି ଅପରିଚିତଙ୍କୁ !

ନିଜ ଉପରେ ଉମାର ଘୃଣା ଆସିଲା ।

କିଏ ଜଣେ ପଛରୁ ଆସି ତାର ଦୁଇ ଆଖି ବୁଜିଧରିଲା ଦୁଇ ହାତରେ । ଉମା ଚମକିପଡ଼ିଲା । ଘୃଣାରେ; କ୍ରୋଧରେ ସେ ଫୁଲମାଳଟା ଗୁଣ୍ଡୁଡ଼ି ଦେହରେ ପକାଇ ଆଗନ୍ତୁକର ଦୁଇ ହାତକୁ ଛଡ଼ାଇ ଦେଲା । ରାଗ ଗରଗର ହୋଇ ମୁହଁ ଓଲଟାଇ ଦେଖିଲା ସଦାନନ୍ଦ । ଭୟରେ, ଲାଜରେ

ମୁହଁଟି ଶେତା ପଡଯାଇଛି ତାଙ୍କର । ସେ ଯାହାକୁ ଆଶା କରିଥିଲା ତାକୁହିଁ ଘରରେ ଦେଖି, କେଜାଣି କାହିଁକି ଲଜ୍ଜିତ ହୋଇ ଦୁଃଖମିଶା ସ୍ୱରରେ କହିଲା, "ଭାଇ ?" ତାଙ୍କର ଦୁଇ ହାତକୁ ଧରି ମୃଦୁ ହସି କହିଲା, "ମୁଁ ଜାଣି ନ ଥିଲି—।"

ସଦାନନ୍ଦଙ୍କର ମୁହଁକୁ ପୁଣି ପ୍ରଫୁଲ୍ଲତା ଫେରିଆସିଲା । ସେ ଉମାର ଲୁହଭରା ଆଖିକୁ ଗୃହୀଁ ବିସ୍ମିତ ହୋଇ କହିଲେ, "ତୋ ଆଖିରେ ଲୁହ ଯେ ଲକ୍ଷ୍ମୀ...?"

ଉମା ଉତ୍ତର ଦେଲା ନାହିଁ । ମୁହଁ ପୋଛି ବସିଲା ।

ସଦାନନ୍ଦ ତା ମୁଣ୍ଡ ଟେକି ନିଜ ହାତରେ ତାର ଆଖିର ଲୁହ ପୋଛି କହିଲେ, "ଲକ୍ଷ୍ମୀ, ଲୁହଭରା ମୁହଁଟା ତୋର ବେଶି ସୁନ୍ଦର ଦିଶେ ମୋ ଆଖିକି ଲୋ । ସେଇଥି ପାଇଁ ସବୁ ( ତାର ଗାଲରେ ଗୁପୁଚା ମାରି ଦେଇ ) ମୁଁ ଗୁପୁଚା ମାରି ସବୁଦିନେ କନ୍ଦାଇବାକୁ ଚେଷ୍ଟା କରେ ।"

ଉମାର ଦେହସାରା ପୁଲକରେ ଥରିଉଠିଲା । ସେ ଦୀର୍ଘଶ୍ୱାସ ଛାଡ଼ି ସାମାନ୍ୟ ହସି ଅଳସ କଣ୍ଠରେ କହିଲା, "ଭାଇ ଅଖିକି କଣ ଭଉଣୀ ସୁନ୍ଦର ଦିଶେ ଭାଇ ?"

ସଦାନନ୍ଦ କହିଲେ, "ହଁ ଲୋ ଲକ୍ଷ୍ମୀ, ସବୁବେଳେ ।" ଟିକିଏ ରହି "ଆଛା କହ ତ, ତୋ ଆଖିରେ ଲୁହ କାହିଁକି ?"

ଉମା ଆଙ୍ଗୁଠିରେ ବଇଆକୁ ଦେଖାଇ କହିଲା, "ଏଇ ଲୋକଟା ମୋତେ ଅପମାନ ଦେଇଛି ।" ଉମା ଆଖି ପୁଣି ସଜଳ ହେଲା ।

ସଦାନନ୍ଦ ଠିଆ ହୋଇ କହିଲେ, "ସତେ ? ଏତେ ସାହସ ! ତୋତେ ସେ କଣ କହିଲା ଭଉଣୀ... ?"

ଉମା କହିଲା, "ମୁଁ ମଠରେ ଅଛି ବୋଲି ସେ ମୋ ନାମରେ... ।"

ସଦାନନ୍ଦଙ୍କର ଦୁଇ ଆଖିରୁ ନିଆଁ ବାହାରିଲା ସତେ । ସେ ଦାନ୍ତ ଘୋଷାଇ ହାତ ଠାରି ବଇଆକୁ ପାଖକୁ ଡାକିଲେ । ବଇଆ ହସି ହସି ପାଖକୁ ଆସିଲା । ସେ କ୍ରୁଦ୍ଧ ହୋଇ କହିଲେ, "ହଇ ରେ, ବାଡିଆ ଭିକାରୀଟା ତୁ, ତୋର ଏତେ ସାହସ !"

ବଇଅ ହାତ ଯୋଡ଼ି କହିଲା, "କଣ ଆଜ୍ଞା ?"

"କଣ ଅଜ୍ଞା ! ତୁ ଲକ୍ଷ୍ମୀକୁ କଣ କହିଲୁ ?"

"କାହାକୁ ? ଉମାକୁ ? ମିଛ ତ କଛି କହି ନାହିଁ।"

"ତୁ ଜାଣୁ, ସେ ଏଠି କପରି ଅଛି !"

ବଇଅ ଟିକିଏ ଭାବିଲା, କହିଲା—"କପରି ଅଛି ? ମୁଁ ତ ଆଜି ଆଖିରେ ଦେଖିଲି...।"

ସଦାନନ୍ଦ ରାଗି ଯାଇ କହିଲେ, "ଭାରି ସାହସ ତ ତୋର ! ପଡ଼ରି ଗୋଟେଇବାକୁ ଆସି ତୋହା ମୂଲ କରିବାକୁ ତୋତେ କଏ ଅଧିକାର ଦେଲା ରେ ...।"

"ମୁଁ ଉମାକୁ ଚିହ୍ନେ ଆଜ୍ଞା।"

"ଚୁପ୍...।"

"ମୋର ଖାମିନ୍ଦ ପୁଅ ପରି ପ୍ରାୟ ପାଲରେ ପଡ଼ି... ।"

ଉମା ଆଖି ରଙ୍ଗ କରି କହିଲା, "ବଇଅ, ପର ଝିଅ ନାଆଁରେ ମିଛ କହନା ରେ... ।"

"ମିଛ କହୁଛି ମୁଁ ! ମନକୁ ପଗ୍ଭରିଲୁ । ଘରୁ ତୋ ବାଦ ଛଡେ ଡଢ଼ି ଦେଲା କାହିଁକି ?"

ସଦାନନ୍ଦ ଜିଜ୍ଞାସୁନେତ୍ରରେ ଉମାର ସର୍ମାକ୍ତ ମୁହଁକୁ ଗୃହିଁଲେ। ଉମା ଦୁଃଖପୂର୍ଣ୍ଣ କରୁଣ ସ୍ୱରରେ କହିଲା, "ସେ ମୋର ମହାପ୍ରସାଦ ଭାଇ । ଲୋକେ ସହି ନ ପାରି ଅପବାଦ ରଟାଇଲେ... ।"

"ତୁ ତ କାହାର କଛି ଅନିଷ୍ଟ କରି ନ ଥିଲୁ ?"

"ତୋର ବା କ ଅନିଷ୍ଟ କରିଛି ମୁଁ ବଇଅ ?" ଉମାର କରୁଣ କଣ୍ଠରୁ ବଇଅ କଣ ବୁଝିଲା କେଜାଣି, ନଜକୁ ସେ୍ଭକ ନେଇ ସଦାନନ୍ଦର ଗମ୍ଭୀର ମୁହଁ, ଅନୁତପ୍ତ ଆଖି ଦିଟାକୁ ଗୃହିଁ କଥାର ଢ଼ଙ୍ଗ ବଦଳାଇ କହିଲା, "କିଛି ନାହିଁ । ତୁ ତ ଜାଣୁ ବଇଅ ବାଉରପିଲା, କାହାର ନୁହେଁ । ଗାଁଲୋକ ଦେଖି ରହସ୍ୟରେ ପଦେ କଣ କହିଦେଲି ବୋଲି ସାଙ୍ଗେ ସାଙ୍ଗେ ଯାଇ ଖାମିନ୍ଦ ଆଗରେ ଗୁହାରି ! ମୁଁ ତ ବାବା ଢ଼ମ୍ପାଙ୍କ ବଡ଼ ବାପା । ତୁ ମୋ ଠାଁରେ କହିଲୁ,ମୂଲଜା ଛାଡିଲୁ । ମୋତେ କ ପାଣିରେ ବେଶ୍ ସର ପକେଇ ଆସେ ।"

ସଦାନନ୍ଦଙ୍କ ମୁଖର ଭାବ ବଦଳିଗଲା । ସେ କଅଁଳେଇ କହିଲେ—"ଯେତେ ହେଲେ ସ୍ତ୍ରୀଲିଙ୍ଗ ! ମିଛ କଥା କହି ତାଙ୍କ ମନରେ କଷ୍ଟ ଦେବାଟା କଣ ଭଲ ?"

"ଭଲ ମନ୍ଦ ବୁଝେଁ ନାହିଁ ବାପା । ମୁଁ ବଇଅ—ତମ ସାପ । ଲାଙ୍ଗୁଡ଼ରେ ହାତ ମାରିଲେ ଯେଉଠିଁ ହେଲେ ଗୋଟେ ହାଣିବ । ତମେ ଖାମିନ୍ଦ ହୁଅ ପଛେ, ଦିନଟାରେ ମୋ ଦି ଅଖି ଅଗରେ...ଛିଃ, ବଇଅ ଅଖିରେ ବେଅଡ଼ା କଥା ଯାଏ ନାହିଁ...।"

ସଦାନନ୍ଦ ରାଗିଯାଇ କହିଲେ, "ନକଲ ବଦମାସ୍ ! ତୋ ପରି ଲୋକ ମୋର ଦରକାର ନାହିଁ...।"

ବଇଅ ଚାଲି ଯାଉଁ ଯାଉଁ କହିଲା, "ଏଁ, ମରମ କହିଲି ପରା ! ମୋ ବୋପା ଲୋ ! ମହନ୍ତ ହୋଇଛନ୍ତି !"

ସଦାନନ୍ଦ କଣ ମନରେ ପାଞ୍ଚି କହିଲେ, "ଅରେ ହେ, ଶୁଣ ଶୁଣ । ତୁ ଜାଣୁ ଲକ୍ଷ୍ମୀ ମୋର ଭଉଣୀ ?"

ବଇଅ ଅଟକି କହିଲା, "ହୋଇଥିବ ସାନ୍ତେ—ଭୁଣ୍ଡରେ; କିନ୍ତୁ ଯୁଆ ବି ଜାଣେ, ଆମ ଗାଁ ଉମା ବାସ୍ତୁ ଗୁଡ଼ଅର ଝିଅ, ପରମହଂସ ମଠରେ ଥାଏ । ମହନ୍ତଙ୍କ ପାଖରେ... ।"

"ହଉ ଯା, ଯା, ଗାଁରେ କହି ବୁଲିବୁ । କାଲଠୁଁ ତୋର ଏଠିକି ଅସିବା ଦରକାର ନାହିଁ...।"

"କାଲଠୁଁ କାହିଁକି ? ଏଇ ଅଜଠୁଁ, ଏଇ ଅବଲା । ତମ ଅଖି ଅଗରେ । ତମ ଭଳି ସାଅନ୍ତ ମୋର ଲୋଡ଼ା ନାହିଁ । ମୋ ସାଅନ୍ତ ଯେ ସେ—ଅରେ ଭେଟ ହେଲେ ସବୁ କହିବ...।" କହୁ କହୁ ବଇଅ କାଉକବାଟ ଖୋଲି ବାହାରକୁ ଗଲା ।

ଅଧିକାରୀ ଉପହାସ କରି ପଛରେ କହିଲେ, "କଣ କରିବ ତୋ ସାଆନ୍ତ ମୋର ?" କିନ୍ତୁ ଉମା ଅଡକୁ ଚାହିଁ ଦେଖିଲେ ତାର ମୁହଁରେ ସରସତା ନାହିଁ, ଅଖିର ଜ୍ୟୋତି ଲିଭିଯାଇଛି । କପାଳରେ ଝାଳ ବିନ୍ଦୁ ଫୁଟି-ଉଠିଛି । କେଜାଣି କାହିଁକି ତାର ବନ୍ଧୁଲି-ଅଧର ସାମାନ୍ୟ ଥରି ଉଠୁଛି ।

"ତୋର ଫୁଲ ତୋଳା ସରିବ ନାହିଁକି ଆଜି ଲକ୍ଷ୍ମୀ" କହି କହି ରାଧୀ ଅସି ସେଠାରେ ପହଞ୍ଚିଲା । ଉମା ଅଖିର ଲୁହ ପୋଛି ମୁହଁ ଉପରକୁ

ଘପଳ୍ପଛାର ପରଦା ଟାଣି, ଓଠରେ ହସ ଫୁଟାଇ, ଥରିଲା କଣ୍ଠରେ କହିଲା,
"ସରିଲାଣି ମା... ।"

କେତେ ଖରା ହେଲାଣି ଦେଖିଲୁ । ମହନ୍ତ ବାବା ଡ଼ାକୁଛନ୍ତି
ସେଠଣେ...।"

"ମୁଁ କଣ କରିବ ? ତୋର ଏଇ ଚଗଲା ପୁଅଟା ମୋ ସଙ୍ଗରେ
କେମିତି ଲଗିଛି ଦେଖ ତ ... ।"

"ମୋ ପୁଅ, ଅଉ ତୋର ଭଲ ନୁହେଁ ପରା !" ସ୍ୱଧୀ ହସ ହସ
ମୁହଁରେ ସଦାନନ୍ଦଙ୍କ ଗୁହିଁଲା ।

"ନା ନା", କହି ଉମା ମୁଖ ଗମ୍ଭୀର କଲା ।

"କାହିଁକି ଏତେ ରାଗ ତୋର ? ହଇ ରେ ସଦେଇ... ।"

ସଦାନନ୍ଦ ହସ ହସ ହୋଇ କହିଲେ, "ଆଛା ମୁଁ କଣ କରିବ କହ ତ ?
ମୁଁ କହିଲି, ତୁ କାନ୍ଦିଲେ ତୋ ମୁହଁଟା ଭରି ସୁନ୍ଦର ଦିଶେ ମତେ... ।"

"ହଁ, ତା ବୋଲି ମୋତେ ମାରିବ... ।" ଉମା ମୁହଁ ଫଟାଇ ଝୁଛୁ-
କଣ୍ଠରେ କହିଲା !

ସ୍ୱଧୀ ହସିବ କେତେ ? ଏଡ଼େ ପିଲା ଦିଟା, ଯୁଆଙ୍କ ଭିତରେ ପୁଣି ଖିର
ଖାଇବା । ଆନନ୍ଦରେ ତାର ପ୍ରାଣ ପୂରି ଉଠିଲା । ସେ ଏହି କଳିଆ ଭିତରେ
ଅନନ୍ତ ସ୍ନେହଭଣ୍ଡାର ପୂରି ରହିଥିବାର ଦେଖିଲା । ଦୁଇଟି ସରଳମତି ବାଳକ
ବାଳିକା ସଂସାରର କଟିଳତା, କୁଟିଳତା କଣ ଜାଣନ୍ତି ନାହିଁ, କଳଙ୍କ,
ଦୁଶ୍ଚିନ୍ତା ବୁଝନ୍ତି ନାହିଁ, ଜ୍ୟୋସ୍ନା ପରି ନିର୍ମଳଚରିତ୍ର, ଶିଶୁ ପରି ଶୁଦ୍ଧ
ବ୍ୟବହାର, କଷ୍ଟପଟ ଖୋଲା କଥା । ବାହାରେ ଯୁବକଯୁବତୀ, ମନ ଭିତରେ
ଶିଶୁ—ଦୁଇଟି ଲଙ୍ଗଳା ଶିଶୁ ।

ଭାଗ୍ୟବତୀ ସେ, ପୁତ୍ରକନ୍ୟାର ଜନନୀ ନୁହେଁ; କିନ୍ତୁ ପୁତ୍ରକନ୍ୟାର
ଅଭାବ ନାହିଁ ତାର । ସଦାନନ୍ଦ, ଲକ୍ଷ୍ମୀ—ତା ଆଖିରେ ସେମାନେ କାଲିକାର
ପିଲା—ନିର୍ବୋଧ ବାଳକବାଳିକା, ଏ ଦିନେ ବି କଳିକଳିଆ । ସ୍ୱଧୀ କେତେ
କଣ ଭାବି ଆନନ୍ଦରେ ଅସ୍ଥିର ହେଲା, ଦୁଇ ଆଖିରୁ ଦର ଦର ହୋଇ ଲୁହ
ଝରିଲା । ସେ ଦୁଇ ହାତ ବଢ଼ାଇ ତାର ଦୁଇଟି ଶିଶୁର ମୁଣ୍ଡ ବକ୍ଷ ଉପରକୁ
ଆଉଜାଇ ଆଣି ସ୍ନେହାର୍ଦ୍ର କଣ୍ଠରେ କହିଲା, "ଅବୋଧ ପିଲା ଦିଓଟି ମୋର,

ଏ ଦିନେ ଜଣେଆ କଲେ କି ସଂସାର ଅଖିରେ ସାଜିବ ରେ...? ସେ ଦିନ, ସେ ବୟସ ଯେ ଆଉ ନାହିଁ; ଆଉ ଆସିବ ନାହିଁ ଏ ଜନ୍ମରେ...।" ଦୁଇଟି ମୁଣ୍ଡକୁ ଛାତି ଉପରେ ଚାପିଧରି ଆଖି ବୁଜି କହିଲା, "ଚିରଦିନ ତମର ସ୍ୱଭାବଚରିତ୍ର ଏହିପରି ନିର୍ମଳ, ଏହିପରି ସରଳ ପବିତ୍ର ଥାଉ ରେ...। ଯାଅ...।" ସୁଧୀର ବକ୍ଷରୁ ମୁଣ୍ଡ ଖସାଇ ସଦାନନ୍ଦ, ଉମା ନିର୍ବାକ୍ ନିସ୍ପନ୍ଦ ହୋଇ କ୍ଷଣକାଳ ଠିଆ ହୋଇ ରହିଲେ ତଳକୁ ଚାହିଁ । କାହାର ମୁଖରୁ ଭାଷା ବାହାରିଲା ନାହିଁ, କାହାର ଚକ୍ଷୁ ଉପରକୁ ହେଲା ନାହିଁ ।

ସୁଧୀ ଅଞ୍ଚଳରେ ମୁହଁ ପୋଛିଲା ।

## — ସାଇଁ ତିରିଶ —

"ଏଇ—ଆଗରେ ଯେଉଁ ଅନ୍ଧାରିଆ ଡୋଠା ଦିଶୁଛି, ତା ସେ ପାଖଟା ଗୋପା ବାଟ ପାଏ ହୁଏ କ ହୁଏ...।" ଏତିକ କହି ସିପାହି ଜଣକ ନାଗରା ଜୋତା ମସ୍‌ମସ୍ କରି ବାଟେ ବାଟେ ଗଲା । ଇଗୁର ଇଚ୍ଛା ଥିଲା, ତାକୁ ଆଉ ଦି ଚାରି କଥା ପଚାରି ଅନ୍ଧକାରର ହାଲଚାଲ ବୁଝିବ; କିନ୍ତୁ ଡରରେ ସେ ପୋଲିସ ମଣିଷକୁ ପଚାରି ପାରିଲା ନାହିଁ କିଛି । ସେ ଗଛମୂଳରୁ ଉଠି ବାଡ଼ି ଖଣ୍ଡି କାନ୍ଧରେ ପକାଇ ଆଗକୁ ଚାଲିଲା । ଗୋପ ଯେତିକି ପାଖେଇ ଆସୁଥାଏ, ତାର ମନଟା ଆଶା ନୈରାଶ୍ୟର ଦ୍ୱନ୍ଦ୍ୱରେ ପଡ଼ି ସେତିକି ଅସ୍ଥିର ହୋଇ ଉଠୁଥାଏ । ବେଳକୁ ବେଳ କାଙ୍ଗାଳଙ୍କର ସଂଖ୍ୟା ବେଶି ବେଶି ତା ଆଖିରେ ପଡୁଥାଏ । ଯୁଆଡ଼କୁ ଚାହେଁ ତେଣେ କାଙ୍ଗାଳ—ଦେହରେ ରକ୍ତ-ମାଂସ ନାହିଁ, ହାଡ଼ ଉପରେ କେବଳ ଧାଡ଼ି ଶିରା ଦଉଡ଼ି, ତା ଉପରେ ଶୁଖିଲା ଚମଟା ଘେରିହୋଇଛି, ଆଖିଗୁଡ଼ା କୋରଡ଼ କୋରଡ଼, ବାଉଁଶ କାଠି ପରି ହାତଗୋଡ଼, ଛାତିର ପଞ୍ଜରାହାଡ଼ କେଇଟି ଆପେ ଆପେ ବାହାର ହୋଇପଡ଼ୁଛି, ପେଟ ବୋଲି କିଛି ଗୋଟାଏ ନାହିଁ, ଏ ପାଖ ଚମ ଖଣ୍ଡ ପିଠିପାଖ ବେଶିରୁ ହାଡ଼ ଦେହରେ ଲାଗିଯାଇଛି, ତାର ଉପରକୁ ଜୀବନୀ-ଯନ୍ତ୍ର ହୃତ୍‌ପିଣ୍ଡଟା ଠକ୍ ଠକ୍ ହେଉଛି; ଆଉ କଲିଜା, ଫୁଲ୍‌କଲିଜା ସବୁ କି ପବନର ଧକ୍କାରେ ପଡ଼ୁଛି ଉଠୁଛି । ତଳପେଟରେ ଅନ୍ତ୍ରକୁଳାଟି ସାମାନ୍ୟ

ନିକଟ ଉପରକୁ ଉଠିଛି, ଆଖି ପିଞ୍ଚୁଡ଼ା ପଡ଼ୁଛି କି ନାହିଁ, କୋରଡ଼ ଭିତରୁ ଜାଣି ହେଉ ନାହିଁ । ନିଶ୍ୱାସଟା ଅଟକାଅ ହେଉଥିବ—ନୋହିଲେ ଛାତିର ପଞ୍ଜରାକାଠି ଥରର ଫୁଲକଲକାଠା ପଡ଼ନ୍ତା ଉଠନ୍ତା କାହିଁକି ?

ଯୁଆଡ଼େ ଚାହିଁଲେ ସେହି ଏକ ଦୃଶ୍ୟ । ରାସ୍ତା କଡ଼, ଗଛମୂଳ, ଦୂର ପଡ଼ିଆ, ସବୁଠି ତ ଏକ କଥା । ସ୍ତ୍ରୀପୁରୁଷ ସବୁ ସମାନ । ମାତୃହୃଦର ପଞ୍ଜ-ରଯୁକ୍ତ ଚମ ଦଖଣ୍ଡି କାହାର ବା ପଞ୍ଜରା ଭିତରେ ଲୁଚିଯାଇଛି, କାହାର ବା ସାମାନ୍ୟ ଓହଳିପଡ଼ିଛି । କାହାର ଛାତିରେ ଦୁଧଖିଆ କଅଁଳା ପିଲା—ଚମଖଣ୍ଡ ପାଟିରେ ଦେଇ ଅଖି ବୁଜି ତାର ଅଜଣା ଭାଷାରେ ଦେବତାର ସ୍ୱବଗ୍ରରର ସ୍ତୁତି ଗାନ କରୁଛି ପରା !

ଚଗୁ ଏହି ସବୁ ଦୃଶ୍ୟ ଦେଖି ଦେଖି ଖଣ୍ଡେ ଦୂର ଚାଲିଆସିଲା । ଯୁଆଡ଼େ ଅଖି ଫେରାଇଲେ ପ୍ରେତପୁରୀର କରୁଣ ଦୃଶ୍ୟ । ଲଙ୍ଗଳା ପ୍ରାୟ ସମସ୍ତେ, କାହାର କାହାର ଦେହରେ ବା ଚୁଖଣ୍ଡେ ଚିରିଡ଼ାର ଖଣ୍ଡେ ଖଣ୍ଡେ କନା, କେବଳ ମଣିଷର ନଗ୍ନତା ଘୋଡ଼ାଇ ରଖିବାକୁ କିଅଣ୍ଟି । ସେ ଦଗକୁ କାହାର ନଜର ନାହିଁ । ଜୀବନମରଣର ଭୂମୁଳ ସଂଗ୍ରାମ, ତା ଭିତରେ ଲଜ୍ଜା ରହି ପାରୁଛି କେଉଁଠି ? ସମସ୍ତେ ସମଦଶାପନ୍ନ, ସମସ୍ତେ ଅପରିଚିତ । କାହାକୁ ବା ଲାଜ କରିବ କିଏ ?

ଏହି କଙ୍କାଳ ଭିତରେ ଲୁଚି ରହିଛି ଖାରବେଳ, ପୁରୁଷୋତ୍ତମ, ମୁକୁନ୍ଦର ଆତ୍ମା ! ଏହି ପ୍ରେତଦଳ ଭିତରେ ବୋଇତବାହୀ ସାଧବପୁଅ ଛପି ଛପି ବୁଲୁଛି ! କାହିଁ ତାଙ୍କର ବଜ୍ରସ୍ତୋନ୍ନତ ମୁକୁଟ ? କାହିଁ ତାଙ୍କର ରତ୍ନଗର୍ଭ ତରୀସମୂହ ? ସାଧବଲଳନା, ସୁନାଗଦା ଉପରେ ପଦ ରଖି ରତ୍ନ-ଦୀପ ଧରି ବୋଇତ ବନ୍ଦାଇଯିବ ନାହିଁ ଆଉ । ମୁଠାଏ ଅନ୍ନ ପାଇଁ ସେ ତାର ଅତୀତର ମାନସମ୍ଭ୍ରମକୁ ହଜାଇ,ଗଛମୂଳରେ ବସି ହାତ ପାତିବ ! ପେଟ ପାଇଁ । ଦେବତା—ମଣିଷର କଳ୍ପନା-ପୂଜ୍ୟ ! ଏହି ପ୍ରେତପଲର ଅନ୍ତର-ନରକ ଭିତରେ ଅସନ ପାତି ଅନନ୍ତ-କ୍ଷୁଧାରେ ଛଟପଟ ହେଉଛି ମୁକ୍ତି ପାଇଁ ?

ଚଗୁ ସେହି ପ୍ରେତପଲ ଭିତରେ ପଶି ଅନ୍ନଛତ୍ର ପାଖକୁ ଆସିଲା । ଗୋଟାଏ ଖୋଲା ମଇଦାନ ଉପରେ ଧାଡ଼ି ଧାଡ଼ି ହୋଇ ଅନେକଗୁଡ଼ିଏ

ସେଟବଡ଼ ତମ୍ବୁ ପଡ଼ିଛି । ତାର ଭିତରେ ସରକାରୀ କର୍ମଚାରୀ ଓ କେତେ ଜଣ ସିପାହୀ ରହୁଛନ୍ତି । ତମ୍ବୁ ଆଗରେ ଦୁଇ ଧାଡ଼ି ଛୋଟିମୋଟି କାନ୍ଥଦିଆ ଚାଳଘର । ଆଗ ଧାଡ଼ିରେ ଚୂଲୀଶାଳ—ସୂପକାରମାନେ ରହୁଛନ୍ତି, ପଛ ଧାଡ଼ିରେ ସରଞ୍ଜାମ ସବୁ ଜମା ଥାଏ । ଭଣ୍ଡାରଘର ବଡ଼ ନାଳଘର, ତଳେ କେତେ ଗଦା ଚାଉଳ ଶୁଖିଲା କାଠ ଜମା ହୋଇଛି । କଡ଼କୁ କୂଅ । କୂଅ ସେପାଖରେ ଧାଡ଼ିଏ ସ୍ୱେଷଘର—ବରଡ଼ା ପତ୍ରରେ ଛଉଣି । ମଇଦାନର ଚାରିପାଖରେ ବାଉଁଶକଣିର କଣ୍ଟକ ବାଡ଼ । ଦୁଇଟିକ ଜାଗାରେ ଫାଟିକବାଟ । ଭିତରେ ପୋଲିସ ପହରା । ଖଣ୍ଡେ ଦୂର ଛଡ଼ା ରାସ୍ତା କଡ଼ରେ ଗୋଟିଏ ବଡ଼ ଅମ୍ବତୋଟା ଆଗରେ କାଙ୍ଗାଳମାନଙ୍କ ରହିବା ପାଇଁ ବରଡ଼ା ଛାଟି, ବାଉଁଶ ପଟିର ଅସଂଖ୍ୟ ଲମ୍ବା ଲମ୍ବା ଘର । କିଛିଦୂର ଛଡ଼ା ଗୋଟିଏ ବଡ଼ ପଙ୍କୁଆ ଦଳୁଆ ପୋଖରୀ । ଆଡ଼ ଉପରେ ଛଡ଼ା ଛଡ଼ା କେଇଟି ଦରମଲା ଡେଙ୍ଗା ନଡ଼ିଆଗଛ, ତାଳଗଛ । କେତେ ଜଣ କାଙ୍ଗାଳ ଅଡ଼ ଉପରେ ଆଶ୍ରୟ ନେଇଛନ୍ତି ।

ଜଗୁ ସବୁ ଦେଖି ଦେଖି ଆସି ପୋଖରୀ କୂଳରେ ପହଞ୍ଚିଲା । ପାଣି ଦେଖି ତାର ଭାରି ଲୋଭ ହେଲା । ପଟ୍ଟନାୟକଙ୍କ ଉଆସ ଛାଡ଼ିଲାଦିନୁ ଦେହରେ ତାର ପାଣି ପଡ଼ି ନାହିଁ । ଯାହା ହେଉ, ଆଜି ସେ ତାର ମନ ଶାନ୍ତି କରି ପୋଖରୀରେ ଗାଧୋଇବ । ଜଗୁ ଧୀରେ ଧୀରେ ପାହାଚ ଓହ୍ଲାଇ କୂଳକୁ ଆସିଲା । କୂଳଟା ବଡ଼ ମଇଳା ହୋଇଛି । ଛଣ୍ଡା କନା, ଭଙ୍ଗା ଖପରା, ଶୈବାଳରେ ପୂର୍ଣ୍ଣ । ସେ କୂଳେ କୂଳେ ପାଣିର ଚାରିପାଖରେ ବୁଲିଆସିଲା । ସବୁଠାରେ ସେହି ଏକା ଅବସ୍ଥା । ଗୁଇଁଗୁଇଁଆ ଦପଦପର ଖରା—ଦେହ ସହୁ ନାହିଁ । ଗୁହିଁ ବସିଲେ କିଛି ଲାଭ ନାହିଁ । ଶୀଘ୍ର କାମ ଶେଷ ନ କଲେ ତେଣେ ଭାତ ଲାଗିଯିବ । ଶେଷକୁ ସେ ହଇରାଣ ହେବ ।

ସେ ଧୀରେ ଧୀରେ ଭିତରକୁ ଓହ୍ଲାଇଲା । ପାଣି ଉପରେ ମଧ୍ୟ ସେହିପରି ମଇଳା ଭାସୁଛି । ସେ ଦୁଇ ହାତରେ ପାଣିକୁ ଦୁଇ ପାଖକୁ ଅଡ଼େଇ ପୋଖରୀ ମଝିକୁ ଆସିଲା । ପାଣି ମୋଟେ ଛାତିଏ । ତଳେ ପୁଣି ଅଣ୍ଟୁଏ ପଙ୍କ । ଯାହା ହେଉ, ତା ପରି ତ କେତେ ନରକଙ୍କାଳ ସେହି ପାଣିରେ ଗାଧୋଉଛନ୍ତି । ସେହି ଉଦ୍ଦେଶ୍ୟରେ ହୁଏ ତ କୂଡ଼ା ଉପରେ

କେତେ ଲୋକ ବସିଛନ୍ତି । କେହି କେହି ମଧ୍ୟ କୂଳକୁ ଆସି ମୁହଁ ଲଗାଇ ପାଣି ପିଉଛନ୍ତି । ଜଗୁ ମୁଣ୍ଡ ବୁଡ଼ାଇ ଭଲ କରି ଗାଧୋଇଲା, ପାଣିର ପଙ୍କୁଆ ଗନ୍ଧ ତାକୁ ହଟାଇ ପାରିଲା ନାହିଁ । ସେ ଗାଧୁଆ ଶେଷ କରି କୂଳକୁ ଫେରିଲା, ବାଡ଼ି ଖଣ୍ଡ କାନ୍ଧରେ ପକାଇ ହୁଡ଼ା ଉପରକୁ ଉଠିଲା । ଦେଖିଲା, କାଙ୍ଗାଳ-ମାନେ ଜଣ ଜଣ କରି ଇତରମୁହାଁ ହୋଇ ଫେରୁଛନ୍ତି ।

କିଛି ଦୂରରେ ହୁଡ଼ା ଉପରେ ଗୋଟାଏ ଡେଙ୍ଗା ଦରମଲା ନଡ଼ିଆଗଛ ତଳେ ଗୋଟିଏ କରୁଣ ଦୃଶ୍ୟ ତା ଆଖିରେ ପଡ଼ିଲା । ସ୍ତ୍ରୀଲୋକଟିଏ— ପୂର୍ଣ୍ଣ ଲଙ୍ଗଳା, ଗଛକୁ ଡେସ୍ ଦେଇ ବସିଛି । ଦେହରେ ତାର ହାଡ ଦୁଇଖଣ୍ଡ ଛଡ଼ା ଆଉ କିଛି ନାହିଁ । ଆଗରେ ଖଣ୍ଡେ ଛେଲୁଆ ରଖା ହୋଇଛି । ଛେଲୁଆ ପାଖରେ ଦୁଇ ତିନିବର୍ଷର ଶିଶୁଟିଏ । ଅବସ୍ଥା ବଡ଼ ଖରାପ, ଚଁ ଚଁ ହୋଇ ଚୀତ୍କାର କରୁଛି । ଦୁଇଟା ସବଳକାୟ କୁକୁର ଛେଲୁଆରୁ ଭାତତକ ଶେଷ କରି ଶିଶୁଟିକୁ ଆକ୍ରମଣ କରୁଛନ୍ତି । ଦରମରା ମାଆଟି ତାର, କୁକୁର ଦୁଇଟାକୁ ଘଉଡ଼ାଦେବାକୁ ହାତ ଟେକି ପାଟି କରୁଉଠୁଛି; କିନ୍ତୁ ଆହା ! ଦୁର୍ବଳ ହାତଟିକୁ ଉଠାଇବାର ଶକ୍ତି ତାର ନାହିଁ । ଅତି କଷ୍ଟରେ ଉପରକୁ ଉଠାଉ ଉଠାଉ ତଳକୁ ପୁଣି ଖସିପଡ଼ୁଛି । ତାର କ୍ଷୀଣ ସ୍ୱରଟି ଶିଶୁର ଆକୁଳ ଚୀତ୍କାର ଭିତରେ ମିଶିଯାଉଛି । ଆଉ କେତୋଟି କାଙ୍ଗାଳ ଦୂରରୁ ଏ କରୁଣ ଦୃଶ୍ୟକୁ ଭୀତିପୂର୍ଣ୍ଣ ଚକ୍ଷୁରେ ଚାହିଁରହିଛନ୍ତି; ପାଖକୁ ଯିବାକୁ ସାହସ ହେଉ ନାହିଁ କିମ୍ବା ଜୋର ପାଉ ନାହିଁ ।

ଜଗୁର ଆଉ ଡେରି କରିବାର ବେଳ ନାହିଁ । ଟିକିଏ ହେଲା କଲେ ହୁଏ ତ ରକ୍ତମୁଖା କୁକୁର ଦୁଇଟା ପିଲାଟିକୁ ଜୀଅନ୍ତା ଖାଇଦେବେ । ଜଗୁ ତାର ଠେଙ୍ଗାଟିକୁ ଉପରକୁ ଟେକି ଏକ ନିଶ୍ୱାସରେ ପାଖକୁ ଧାଇଁଲା; ତଥାପି କୁକୁର ଦଳଟା ଭୟରେ ପଳାଇଲେ ନାହିଁ । ତାର ଠେଙ୍ଗାପାହାରରେ ଗୋଟାଏ କୁକୁରର ମୁଣ୍ଡ ଫାଟି ଦୁଇ ଫାଳ ହେଲା । ସେ ଛଟଛଟ ହୋଇ ହୁଡ଼ା ଉପରୁ ତଳକୁ ଗଡ଼ିପଡ଼ିଲା, ତାର ଶେଷ ପ୍ରାଣବାୟୁ ପରିତ୍ୟାଗ କରିବାକୁ । ଆରଟା ଭୟରେ ଚୀତ୍କାର କରି ବିଜୁଳି ବେଗରେ ପଳାଇଲା !

ଜଗୁ କରୁଣାର୍ଦ୍ର ଚକ୍ଷୁରେ ଶିଶୁଟିକୁ ଚାହିଁଲା—ବିଶେଷ କିଛି କ୍ଷତି ହୋଇ ନାହିଁ । ସେ ଫେରି ଆସିବାକୁ ମୁହଁ ଫେରାଇଲା; କିନ୍ତୁ କିଏ ଯେପରି ଅତି ଅସ୍ପଷ୍ଟ ସ୍ୱରରେ ତାକୁ ପଛରୁ ଡ଼ାକିଲା, "ଜଗୁ ରେ—ବାପ... !"

ଜଗୁ ଅଠକ ସେହି କଙ୍କାଳସାର ସ୍ତ୍ରୀଲୋକଟିକୁ ଚାହିଁ ରହଲଣି, ସେ ଅତି କଷ୍ଟରେ ମୁଣ୍ଡ ଟେକ କ୍ଷୀଣକଣ୍ଠରେ କହିଲେ, "ଚିହ୍ନି ପାରୁ ନାହିଁ ବାପ ?" ଧଇଁସଇଁ ହୋଇ ଘନ ଘନ ନିଶ୍ୱାସ ନେଇ କହିଲେ, "ତୋର— ତୋର ମାଉସୀ ରେଣୁବୋଉଙ୍କୁ ?...ଏଇ ରେଣୁ... !"

ଆଶ୍ଚର୍ଯ୍ୟରେ ଜଗୁର ଦୁଇ ଡୋଳା ସ୍ଥିର ହେଲା, ଭ୍ରୂଲତା ଉପରକୁ ଉଠିଲା, ସେ ବିସ୍ମୟସୂଚକ ସ୍ୱରରେ କହିଲା, "ତମେ କାହିଁକି ଏଠି, ଏପରି ଅବସ୍ଥାରେ ?"

ପୂର୍ବପର ସେ କହିଲେ, "ପାପର ଫଳ ବାବା··· ! ବଇଆ ଘରେ ନିଆଁ ଦେଇ ଗାଁଯାକ...!"

ଜଗୁ କହିଲା, "ଘରେ ନିଆଁ ଲଗାଇ ଗାଁଯାକ ପୋଡ଼ି ପକାଇଛ ? ହାଃ ହାଃ... !"

ରେଣୁବୋଉ ମୌନ ହେଲେ । କେତେବେଳକେ ଶୁଖିଲା ଓଠ ଥରାଇ କହିଲେ, "ହେ ବୁଅଟେ ଛଡ଼ ପଳାଇଲେ... । ମୋର ବେଳ ହେଲାଣି... ! ରେଣୁ ଲାଗିଲା... ।"

ଜଗୁ ରେଣୁକୁ ଚାହିଁ ଭାବିବାକୁ ଲାଗିଲା—ରେଣୁର ବେଳ ତ ଆହୁରି ପାଖେଇ ଆସିଲାଣି । ସେ କାହିଁକି ତାର ଦାୟିତ୍ୱ ଗ୍ରହଣ କରି ନିଜେ ବିପଦରେ ପଡ଼ିବ ? ଜାଣି ଜାଣି ବନ୍ଧନଟା ଆଣି ଗଳାରେ ଦିଆଇବ ? ନା, ନା, ଦୁର୍ବଳତାକୁ ମନରେ ଆଉ ସେ ପ୍ରଶ୍ରୟ ଦେବ ନାହିଁ । ଜଗୁ ଥରେ ମାତ୍ର ଆଡ଼ଆଖିରେ ରେଣୁକୁ ଚାହିଁ ଉତ୍ତର ନ ଦେଇ ସେଠାରୁ ଚାଲି ଆସିଲା ।

ଛତର ପାଖକୁ ଆସି ଦେଖିଲା, କାଙ୍ଗାଳଗୁଡ଼ିକ ଧାଡ଼ି ଧାଡ଼ି ହୋଇ ବସି ଚୀତ୍କାର କରୁଛନ୍ତି । କିଏ ବା ହାତରେ ଖଣ୍ଡେ ଖଣ୍ଡେ ଛେଲୁଅ ଧରିଛି । କେହି ବା ଖଣ୍ଡେ, ଖଣ୍ଡେ ପତର ଧରି ପରଷୁଣୀର ଅପେକ୍ଷାରେ ମୌନହୋଇ ବସିଛନ୍ତି । କୌଣସି ହତଭାଗ୍ୟ ମୁମୂର୍ଷୁର ସେତକର ବି ଅଭାବ । ଖଣ୍ଡେ ଚିରା କନା ଭୂଇଁ ଉପରେ ପାରି ବସିଛି । କେହି ବା ତଳୁ ଧୂଳି ଝାଡ଼ ପରିଷ୍କାର କରି ମୁଠିଏ ଅନ୍ନ ପାଇଁ ଚାହିଁରହିଛି । କେହି କେହି ବା କେବଳ ଅଞ୍ଜୁଳା କରି ହାତ ପାତ ବସିଛନ୍ତି ।

ଲଗୁ ଭାବିବାକୁ ଲାଗିଲା—ଏହି ହତଭାଗ୍ୟ ଦରମରା କାଙ୍ଗାଳମାନଙ୍କ ମଝିରେ ବସି ସେ ମୁଠିଏ ଭାତ ପାଇଁ ହାତ ପାତିବ କିପରି ? ତାକୁ ଦେଖିଲା କ୍ଷଣି ତ ଲୋକେ ଦୂର୍ ଦୂର୍ କରି ତଡ଼ିବେ; କିନ୍ତୁ ଏଣେ କ୍ଷୁଧାର ପ୍ରବଳ ତାଡ଼ନା ଆଉ ସହି ହେଉ ନାହିଁ । ସେ ସେହି କାଙ୍ଗାଳମାନଙ୍କ ମଝିରେ ବସି ଅନ୍ନବଣ୍ଟନକାରୀମାନଙ୍କର ଅପେକ୍ଷାରେ ଗୃହିଁ ରହିଲା ।

କିଛି ସମୟ ପରେ କେତେ ଜଣ ଲୋକ କାଖରେ ଭାତଭର୍ତ୍ତି ବଡ଼ ବଡ଼ ବେତା ଧରି କାଙ୍ଗାଳମାନଙ୍କ ଭିତରେ ବାଣ୍ଟି ହୋଇଗଲେ । ସେମାନଙ୍କୁ ଦେଖିଲା କ୍ଷଣି ଲୋକେ ଆନନ୍ଦ-ଅଗ୍ରହରେ କୋଳାହଳ କରିଉଠିଲେ, କେହି କେହି ମଧ୍ୟ ଉଠି ଠିଆ ହେଲେ । ଲଗ୍ନ ଉଠି ଠିଆ ହେଲା; କିନ୍ତୁ ସୂପକାରର ପଛରେ ଆସୁଥିବା ସିପାହୀ ଜଣକ ତାର ସୁଦୀର୍ଘ ଠେଙ୍ଗାଟା ଉପରକୁ ଟେକି ଚୀତ୍କାର କରିଉଠିଲା, "ବସ୍, ବସ୍, ଗୋଳମାଳ କଲେ ଭାତ ଦିଆ ଯିବ ନାହିଁ...।"

ଲୋକେ ଭୟରେ ପୁଣି ନିଜ ନିଜ ସ୍ଥାନରେ ବସିପଡ଼ି ଚୀତ୍କାର କରିବାକୁ ଲାଗିଲେ । ଲୋକଙ୍କର ଭୟ କରିବାର ଯଥେଷ୍ଟ କାରଣ ଅଛି । ଏହି ଗୋପରେ ଯେତେବେଳେ ନୂଆ ନୂଆ ଅନ୍ନଛତ୍ର ଖୋଲାହେଲା,ଲୋକଙ୍କୁ ଶାନ୍ତ ଶିଷ୍ଟ ଭାବରେ ମୁଠିଏ ଅନ୍ନ ଦେବା ଏକାଥରକେ ଅସମ୍ଭବ ହୋଇ ପଡ଼ିଲା । ସେତେବେଳେ ଏପରି ସୁବିଧା କରାଯାଇ ପାରି ନ ଥିଲା । ଖୋଲା ଜାଗାରେ ବ୍ରେଷାଇ କରି ଲୋକଙ୍କୁ ଗଛମୂଳରେ ଖାଇବାକୁ ଦେବାର କଥା । ଲୋକଙ୍କୁ ସମ୍ଭାଳେ କିଏ ? ଭୋକିଲା ପେଟରେ, ଜୀବନ ବିକଳରେ ସେମାନେ ବଡ଼ ଉଚ୍ଛୃଙ୍ଖଳ ହୋଇପଡ଼ିଲେ । ଶାନ୍ତ ଭାବରେ ଅପେକ୍ଷା କରି ବସିବା ଯେପରି କି ତାଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲା । ଲୋକେ "ହୋ, ହୋ" ହୋଇ ଭାତ ବାଣ୍ଟୁଥିବା ଲୋକଙ୍କ ଉପରେ ଏକ ସଙ୍ଗରେ ଯାଇ ପଡ଼ୁଥିଲେ । ଲୋକ ଭିଡ଼ରେ, ଠେଲା ଠେଲିରେ ଦୁର୍ବଳ ଅକ୍ଷମ ଲୋକ ତଳେ ପଡ଼ି ପ୍ରତିଦିନ ମରିବା ତ ସ୍ୱାଭାବିକ କଥା; ଏପରିକି, ଲୋକମାନଙ୍କ ଆକ୍ରମଣକୁ ଡରି, ପରିବେଷଣୀମାନେ ହାଣ୍ଡିକୁଣ୍ଡେଇ ଛାଡ଼ି ପ୍ରାଣ ବିକଳରେ ଦୂରକୁ ପଳାଇଯାଉଥିଲେ । ଦିନେ ବଡ଼ ସାହେବ ଆଖି ଆଗରେ ଏପରି ଘଟନା ଦେଖି ଶୃଙ୍ଖଳ ବାଣ୍ଟିବାକୁ ଆଦେଶ କରିଗଲେ ।

ଆଦେଶ ମତେ ଗୃଉଳ ବଣ୍ଟାଗଲା, ରୋଷାଇ କରି ଖାଇବାକୁ ସେମାନଙ୍କୁ ସବୁ ସୁବିଧା କରି ଦିଆଗଲା; କିନ୍ତୁ କେହି କେବେ ରୋଷାଇ କଲେ ନାହିଁ । ଗୃଉଳ ପାଇବା ସଙ୍ଗେ ସଙ୍ଗେ ଅଧୀର ହୋଇ କଞ୍ଚା ଗୃଉଳ ଚୋବାଇଲେ । ଶେଷକୁ ଦେଖାଗଲା, ଗୃଉଳ ବଣ୍ଟା ଦ୍ୱାରା ଲୋକଙ୍କର କ୍ଷତି ଛଡ଼ା ଉପକାର ହେଲା ନାହିଁ । ଫଳତଃ ପେଟରେ କଞ୍ଚା ଗୃଉଳ ପଡ଼ି ନାନା ପ୍ରକାର ପେଟରୋଗ ଆରମ୍ଭ ହେଲା—ବିଶେଷତଃ ହଇଜା, ଅମାଶୟ । ଫଳତଃ ଲୋକେ ଉଦର ରୋଗରେ ଦିନକୁ ଦିନ ମରିବାକୁ ଲାଗିଲେ । ମରଣ-ସଂଖ୍ୟା କ୍ରମେ ବିଶେଷ ଭାବରେ ବଢ଼ିବାକୁ ଲାଗିଲା । ଦୁର୍ବଳ ପାଖରୁ ସବଳର ଗୃଉଳ ଚୋରି ତ ସ୍ୱାଭାବିକ କଥା । ଏହି ସବୁ ବିଷୟ ଦେଖି କିଛିଦିନ ପରେ ପୁଣି ଗୃଉଳ ବଣ୍ଟା ବନ୍ଦ କରି ପୂର୍ବ ପରି ଭାତ ବଣ୍ଟା ଆରମ୍ଭ କରାଗଲା; କିନ୍ତୁ ବଣ୍ଟନର ରୀତି ବଦଳାଇବାକୁ ହେଲା । ଶଳା ପୋଲିସ ପହରାରେ ପ୍ରଜାମାନେ ଅନ୍ନ ବିତରଣ କରିବାକୁ ରାଜି ନ ହେବାରୁ ଶେଷକୁ ବାଧ୍ୟ ହୋଇ ସେମାନଙ୍କର କଥା ରଖାଗଲା । କାର୍ଯ୍ୟ ବେଶ ଶୃଙ୍ଖଳାରେ ଚାଲିଲା ।

କାର୍ଯ୍ୟ ସୁଶୃଙ୍ଖଳ ହୋଇ ଚାଲିଲା ବୋଲି ଯେ ଲୋକେ ନ ମଲେ, ଏପରି ମନେ କରିବା ଠିକ୍ ନୁହେଁ । ବରଂ ଦିନକୁ ଦିନ ଯେପରି ଲୋକ-ସଂଖ୍ୟା ବଢିବାକୁ ଲାଗିଲା,ଲୋକଙ୍କ ଅବସ୍ଥା ମଧ୍ୟ ବେଳକୁ ବେଳ ଅଧିକ ଖରାପ ହେଲା । ଖରା ତାତିରେ ଗଛରୁ ବାଦୁଡ଼ି ମରି ଝଡ଼ିପଡ଼ିବା ପରି ଲୋକେ ଶହ ଶହ ହୋଇ ମରିବାକୁ ଲାଗିଲେ । ଟିକିଏ ବେଶି ଗରମ ହେଲେ କିମ୍ବା ଅସରାଏ ବର୍ଷା କି ସାମାନ୍ୟ ଶୀତ ପଡ଼ିଲେ ଲୋକଙ୍କର ମୃତ୍ୟୁସଂଖ୍ୟା ଅନେକ ଢେର ବଢିଯାଏ । ଅନ୍ନଛତ୍ର ବାଟ, ଗଛମୂଳ, ଖୋଲା ପଡ଼ିଆ ସବୁଠି ଲୋକେ ମରି ଶୁଅନ୍ତି । କେବଳ ମୁର୍ଦ୍ଦାର ସଫା କରି ଗାଡ଼ିରେ ବୋହି ନେଇ, ଗାଁ ବାହାରେ ଖୋଳା ହୋଇଥିବା ଗାତରେ ପକାଇ ଆସିବାକୁ ନିଯୁକ୍ତ ମେହେନ୍ତରଙ୍କର ବେଳ ନାହିଁ ।

ଯାହା ହେଉ, ଲୋକେ ଭୟରେ ନିଜ ନିଜ ସ୍ଥାନରେ ବସିଲେ । କଗୁ ଅନ୍ନର ଅପେକ୍ଷାରେ ଭୂକ ହୋଇ ବସିରହିଲା । ପରଷୁଣୀ ଡଙ୍କାଏ ଡଙ୍କାଏ ଭାତ ଲୋକଙ୍କୁ ବାଣ୍ଟି ଶେଷକୁ କଗୁ ଆଗରେ ପହଞ୍ଚିଲା; କିନ୍ତୁ କଗୁର

ମୁହଁକୁ ଗୃହିଁ କେଜାଣି କାହିଁକି ତାର ଦୟା ହେଲା ନାହିଁ । ସେ ରୁକ୍ଷ ସ୍ୱରରେ କହିଲା, "ଅରେ ଭୁଟା କଏ ମ...?" ତା ପରେ ସେ ଜଗୁକୁ ଛାଡ଼ ଅଗକୁ ଯାଇ ଅନ୍ୟମାନଙ୍କୁ ପରଷିଲା ।

ଜଗୁ ଏହାର କୌଣସି ଅର୍ଥ ବୁଝି ନ ପାରି ମୁଠିଏ ଭାତ ପାଇଁ ପରିଷ୍କାରିଣୀକୁ ଅନୁରୋଧ କଲା; କିନ୍ତୁ ସେ ନାଲି ଆଖି ଦେଖାଇ କହିଲା, "କୋଉଠିଠାଏ କି ରେ ? ଏଡ଼େ ବଡ଼ ଗଣ୍ଡି ବୋହିଛୁ—ଯା ଯା, କାମ କରି ଖାଇବୁ ।"

ଜଗୁ କହିଲା, "ଏତେ ଲୋକ କଣ କାମ କରି ଖାଉଛନ୍ତି ?"

ସିପାହି ଉତ୍ତର ଦେଲା, "ସେମାନେ ଅପାରଗ...।"

ଜଗୁ କହିଲା; "ସବୁଦିନେ ଅପାରଗ ନ ଥିଲେ ତ; ଖାଇବା ବିନା ସିନା ଆଜି ତାଙ୍କର ଏ ଦଶା ।"

କିନ୍ତୁ ତା କଥାର ଉତ୍ତର ଦେବାକୁ କାହାରି ପ୍ରବୃତ୍ତି ହେଲା ନାହିଁ । ତା ପାଇଁ କେହି ଅଟକି ରହିଲେ ନାହିଁ । ଜଗୁ ହତାଶ ହେଲା । ଗୃହିଆଡ଼େ କାଙ୍ଗାଳମାନେ ମହା ମଉଜରେ ଭାତ ଖାଉଛନ୍ତି , ଖାଲି ଏକା ସେହି ତାର ଅଦମ୍ୟ ଅନନ୍ତ କ୍ଷୁଧାକୁ ପେଟରେ ଧରି ଯାଇ ତା ପାଚିକି ସତୃଷ୍ଣନୟନରେ ଗୃହିଁ ଉହଳବକଳ ହେଉଥିବ ? ବନ୍ଦୀସାଗର କମ୍ପା ଅଂଶୁପାରି କୂଳରେ ବସି ସେ ତୃଷାତୁର ହୋଇ ମରିବ ? ସେ କଣ ଏଡ଼କି ନିର୍ବୋଧ ?

କଣ ମନରେ ପାଇଁ କେଜାଣି, ଜଗୁ ତା ପାଖରେ ବସି ଖାଉଥିବା ଶିଶୁଟିର ଭାତ ଛଡ଼ାଇଆଣି ଖାଇଲା । କାନ୍ଦ କାନ୍ଦ ହୋଇ ଭୟରେ ପିଲାଟି କେବଳ ଯାଇ ତା ମୁହଁକୁ ଗୃହିଁଲା ମାତ୍ର; କିନ୍ତୁ କେହି ତା ଦୁଃଖ ବୁଝିଲେ ନାହିଁ । ଖାଇବାରେ ସମସ୍ତେ ବ୍ୟସ୍ତ । ଜଗୁ ସେତକ ଶେଷ କରି ଜଣକ ପରେ ଜଣେ, ଏହିପରି ଦୁଇ ତିନୋଟି ଦୁର୍ବଳ କାଙ୍ଗାଳଙ୍କର ମୁଖରୁ ଗ୍ରାସ ଛଡ଼ାଇ ଖାଇଲା । ଲୋକେ ଭୟରେ ବିବ୍ରତ ହୋଇ କୋଳାହଳ କରି ଉଠିଲେ । ଜଗୁ କିନ୍ତୁ ଡରିବାର ଲୋକ ନୁହେଁ । ଲୋକଙ୍କର ଅବ୍ୟକ୍ତ ଚୀତ୍କାର ଶୁଣି ଦୁଇ ଜଣ ସିପାହି ଆସି ଲାଠିର ଭୟ ଦେଖାଇ ତାକୁ ଗିରଫ କରି ରଖିଲେ ।

## —ଅଠଚିରିଶ—

ଦୁଇ ଦିନ ପରେ ଜଗୁର ଦୁରବସ୍ଥା ଦେଖି ଉପର ହାକିମଙ୍କ ହୁକୁମ ପାଇ ଦୁଇ ଜଣ ସିପାହି ତା ଗୋଡ଼ ହାତର ବନ୍ଧନ ଖୋଲି ତାକୁ ମୁକ୍ତ ଦେଇ ରୁକ୍ଷସ୍ୱରରେ କହିଲେ, "ତୁ ଲୋକଟା ବଡ଼ ବଦମାସ୍ । ଅନ୍ନଛତ୍ର ଭିତରେ ପଶି ଯଦି ପୁଣି ବଦମାସୀ, ବଳାବଳ ଆରମ୍ଭ କରୁ, ତେବେ ତୋତେ ପୁଣି ଏହିପରି ଦଣ୍ଡ ଦିଆଯିବ ...। ଯଦି ଭଲ ଦଶା ଅଛୁ, ଭଲରେ ଭଲରେ ଏଠୁ ଚାଲିଯାଇ ଅନ୍ୟ କେଉଁଠି କାମ କରି ଖା—ଯା...।"

ସେ କିଛି ଉତ୍ତର ନ ଦେଇ ପାଖରେ ଠିଆ ହୋଇଥିବା ସିପାହି ଦୁହିଙ୍କୁ ଚାହିଁ ଭାବିବାକୁ ଲାଗିଲା—ପେଟ ପାଇଁ ମୁଠିଏ ଭାତ ଛଡ଼ାଇ ଖାଇଲା ବୋଲି ତା ଉପରେ ଏଡ଼େ ବଡ଼ ଦଣ୍ଡ । ଦୁଇ ଦିନ ଦୁଇ ରାତି ଅନଶନରେ ତାକୁ ଗୋଟାଏ ଖୁଣ୍ଟରେ ବାନ୍ଧି ରଖିଲେ । ମାଗିଲେ ମୁନ୍ଦାଏ ପାଣି ସୁଦ୍ଧା ପିଇବାକୁ ଦେଲେ ନାହିଁ । ବର୍ଷା ହେଲା, ବର୍ଷାମାଡ଼ ମଧ୍ୟ ପିଠିରେ ତାକୁ ସହିବାକୁ ହେଲା । କାହିଁକି ତା ଉପରେ ଏ ଅଯଥା ଅତ୍ୟାଚାର ? ସେ ନିଃସହାୟ ଅକ୍ଷମ ବୋଲି ସିନା ! ଏହା ତା ଜୀବନର ଅନ୍ୟ ଗୋଟିଏ ମହାଶିକ୍ଷା । ମଣିଷ ହୋଇ ଜୀବନ ଧରି ରହିବାକୁ ହେଲେ ଦୁର୍ବଳ ଉପରେ ଅତ୍ୟାଚାର କରି ମଣିଷର ରକ୍ତ ପିଇବା ଦରକାର, ଲୋକ ଚକ୍ଷୁର ଅନ୍ତରାଳରେ !

ସିପାହି କହିଲା, "କିରେ ଠିଆ ହୋଇ ରହିଲୁ ଯେ... ।"

"ମୋତେ ମୁଠିଏ ଖାଇବାକୁ ଦେଇ ପାରିବ··· ?"

"ତୋ ପରି କୋଡ଼ିଅକୁ ? ଯା, କାମ କରି ଖାଇବୁ ।"

"ମୋତେ କାମ ଦିଅ, ମୁଁ କରିବାକୁ ରାଜି ।"

"ନା, ନା, ଏଠି କାମଦାମ ନାହିଁ । ଯା ଆଉ କେଉଁଠି ଦେଖ୍... ।"

ସେ ହତାଶ ହେଲା । ଅନୁରୋଧ କଲା, "ମୋର ବାଡ଼ି ଖଣ୍ଡି ମୋତେ ଫେରାଇଦିଅ ତେବେ ।"

ସିପାହି—"ପୁଣି ଦୁର୍ବଳ ଲୋକଙ୍କୁ ଡରାଇ ଭାତ ଛଡ଼ାଇ ଖାଇବୁ, ନା ! ବାଡ଼ି ଦିଆଯିବ ନାହିଁ ।"

ଜଗୁ ଯେତେ ପ୍ରାର୍ଥନା କଲା, କେହି ତା କଥା ଶୁଣିଲେ ନାହିଁ । ସେ ହତାଶ ହୋଇ ଦୁଃଖରେ ସେଠାରୁ ଚାଲିଆସିଲା ।

କାଙ୍ଗାଳ ଦଳ ଅତିକ୍ରମ କରି କପରି ସେ ଅନ୍ନଛତ୍ରର ହତା ଭିତରୁ ବାହାରିଯିବ, ତାର ବାଟ ସହଳ ନାହିଁ । ତାକୁ ଦେଖିଲାକ୍ଷଣି ଲୋକେ ଭୟରେ ଅଡ଼ ହେଲେ । କେହି କେହି ସାହସୀ ଲୋକ ତାକୁ ଅକଥ୍ୟ ଭାଷାରେ ଗାଳିଗୁଲଜ କଲେ, ଅଭିଶାପ ଦେଲେ । ସେ ନୀରବରେ ତଳକୁ ମୁଣ୍ଡ ପୋତି କାଙ୍ଗାଳ ଦଳ ଭିତରେ ପଶି ରାସ୍ତା ଉପରକୁ ଆସିଲା । ଭାବିଲା, କ୍ଷଣକର ଅବିବେକିତା ପାଇଁ ଜାଣି ଜାଣି ସେ ତାର ସବୁ ଆଶା ପୋଡ଼ିଛି । ଏଣିକି ଜୀବନ ରକ୍ଷାର ଆଉ ଉପାୟ କଣ ? ଗୋପର ଅନ୍ନଛତ୍ରରୁ ଅନ୍ନ ପାଇବାର ଉପାୟ ନାହିଁ । ସେ ଖଣ୍ଡେ ଦୂର ଅସି ଗୋଟିଏ ଗଛ ତଳେ ବସି ବର୍ତ୍ତିମାନ ଓ ଭବିଷ୍ୟତ୍ ସମ୍ବନ୍ଧରେ କେତେ ଚିନ୍ତା କଲା; କିନ୍ତୁ କୂଳକିନାରା କିଛି ପାଇଲା ନାହିଁ ।

ପାଖ ଗଛମୂଳରୁ ଢ଼ାମରା କାଉ ରାବିଉଠିଲା । ସେ ଆଖି ଫେରାଇ ଦେଖିଲା, ଗଛତଳେ ଜଣେ କାଙ୍ଗାଳ ଶୋଇଛି, ତା ମୁହଁ ପାଖରେ ଖଣ୍ଡେ ଖପରା ଦେହରେ ଡ଼ଙ୍କାଏ ହେବ ଭାତ ରଖାହୋଇଛି । କାଉଟି ବସି ଭାତକୁ ବେଳେ ବେଳେ ଖୁମ୍ପୁଛି । ସେ ପାଖକୁ ଗଲା । ଦେଖିଲା, ଓଦା ଭୂଇଁ ଉପରେ କଙ୍କାଳସାର କାଙ୍ଗାଳଟି ଭାତ ଖପରା ପାଖରେ ମୁହଁ ମାଡ଼ି ମରିପଡ଼ିଛି । ସେ ଆଶ୍ଚର୍ଯ୍ୟ ମନେ କଲା ନାହିଁ । ବସିବା ଶକ୍ତି-ରହିତ ଲୋକେ ତ ପୁଣି ଭାତ ଲୋଭରେ ଘୁସୁରି ଘୁସୁରି ଛତରକୁ ଯିବାର ସେ ଦେଖିଛି ।

ଜଗୁ ପାଖକୁ ଯିବାରୁ କାଉଟି ଭାତ ଛାଡ଼ି ଉଡ଼ିଗଲା । ଦୁଇ ଦିନର ଉପାସ, ଭଲମନ୍ଦ ଭାବିବାକୁ ସେ ଚାହିଁ ବସନ୍ତା କାହିଁକି ? ବାରି ବସିଲେ ତା ପ୍ରାଣ ରହିବ ନାହିଁ । ସେ ଥରେ ଏପାଖ ସେପାଖ ଚାହିଁ ଚଞ୍ଚଳ ଭାତ ଖପରଟି ଟାଣିଆଣିଲା । ଆହା ! ପ୍ରେତର ଦାନ, ମୃତର ଉଚ୍ଛିଷ୍ଟ । ସେ ଆଜି ଏତିକ ଖାଇ ପ୍ରାଣ ବଞ୍ଚାଇବ । ଜଗୁ ଦୁଷ୍ଟ, ଜଗୁ ଦୁର୍ଦ୍ଦାନ୍ତ ଅମଣିଷ ବୋଲି ତ ମୃତ ମଣିଷଟି ତାକୁ ତିରସ୍କାର କରିବ ନାହିଁ, ତା ନାମରେ ଅଭିଯୋଗ ଆଣିବ ନାହିଁ !

ଜଗୁ ଏକ ନିଶ୍ୱାସରେ ଭାତତକ ଖାଇ ଶେଷ କଲା । ପାଣି ଖୋଜିବାକୁ ତାକୁ ବେଶି ଦୂର ଯିବାକୁ ପଡ଼ିଲା ନାହିଁ । ପାଖରେ ଗୋଟିଏ ଛୋଟ ଖାଲରେ ବର୍ଷଣା ପାଣି ପୂର୍ଣ୍ଣ ଅଛି । ସେ ଚଳ ଚଳ କରି ସେଥିରୁ ପାଣି ଆଣି ହାତରେ ମୁହଁ ଲଗାଇ ପିଇଲା । ଶାନ୍ତିରେ ଦୀର୍ଘନିଶ୍ୱାସ ଛାଡ଼ି ମନକୁ ମନ କହିଲା—ଏଥର ଆଉ ଚିନ୍ତା କଣ ? ନିର୍ବିଘ୍ନରେ ପୁଣି ସେ ଦୁଇ ଦିନ କଟାଇପାରିବ । ତେଣିକି ଦେଖାଯିବ ।

ଦି ପହରର ଦେହଜଳା ଖରା ମାଡ଼ିଆସୁଛି । ଟିକିଏ ବିଶ୍ରାମ ନ ନେଲେ ଦୁଇ ଦିନର ଅନିଦ୍ରାଜନିତ ଅବସାଦ ଦୂର ହେବ ନାହିଁ । ସେ ରାସ୍ତା କଡ଼ର ଓଦା ଭୂଇଁ ଉପରେ କାମା ପାରି ଆଖି ବୁଜି ଶୋଇଲା । ଛାଇ ନିଦ ମାଡ଼ିଆସୁଛି, ସହସା ତା ନିଦ ଭାଙ୍ଗିଲା ଗୋଟାଏ ବଳଦ-ଗାଡ଼ିର କେଁ କେଁ ଶବ୍ଦରେ । ସେ ଉଠି ବସିଲା । ଦେଖିଲା, ଦୁଇଜଣ ଗାଡ଼ିଆଳ ବଳଦ ଅଡ଼ାଇ ଅତି କଷ୍ଟରେ ଗୋଟାଏ ଗାଡ଼ିକୁ ବାଲି ରାସ୍ତାରେ ଠେଲି ଠେଲି ଆଣୁଛନ୍ତି । ଛାଇ ତଳ ଦେଖି ତାରି ଆଗରେ ଗଛମୂଳରେ ଶଗଡ଼ 'ହ' କଲେ, ବୋଧହୁଏ ବିଶ୍ରାମ ନେବାକୁ । ଶଗଡ଼ରେ ବୋଝେଇ ହୋଇଛି—କେବଳ ମୁର୍ଦାର । ବଡ଼ ନିର୍ଦ୍ଦୟ ଭାବରେ ଗାଡ଼ିଆଳ ଦୁଇଜଣ ଗାଡ଼ିରେ କାଠ ବୋଝେଇ କଲା ପରି ଶବ ବୋଝେଇ କରିଛନ୍ତି । ଓଜନ ସହି ନ ପାରି ଗାଡ଼ିର ଅଖ, ଦଣ୍ଡା କଟ କଟ ଡ଼ାକୁଛି, ସତେ କି ଏହିକ୍ଷଣି ଭାଙ୍ଗି ପଡ଼ିବ ! ଦୁର୍ଗନ୍ଧରେ ପାଖରେ ରହି ହେଉ ନାହିଁ ।

ଜଗୁ ବିସ୍ମୟରେ ଶଗଡ଼ରେ ଗଦା ହୋଇଥିବା ଶବଗୁଡ଼ିକୁ ଚାହିଁ ରହିଲା । ଲୋକ ଦୁଇଜଣ ବଳଦ ଫିଟାଉ ଫିଟାଉ କଥାବାର୍ତ୍ତା ହେବାକୁ ଲାଗିଲେ—

'ଆଉ ପାରିବା ନାହିଁରେ ଭାମା ! ଏ ଖେପକୁ ଧରି ଚାରି ଖେପ ହେଲା ।'

"ଗଦାଏ ବାଟ—ଦି ପା ହେବ, ଦି ଜଣ ଲୋକ ଆମେ, କାହିଁତକ୍ କରିବା ? ଲୋକେ ଘରଛଡ଼ା ଶହ ଶହ ହୋଇ ନିତି ଆସି ଏଠି ପଶୁଛନ୍ତି, 'ଖାଇବି, ଖାଇବି' ହୋଇ ଶହ ଶହ ନିତି ମରୁଛନ୍ତି । କିଏ କେଉଁଠି ମଲା, ତାଙ୍କୁ ଖୋଜି କରି ବୋହି ଆଣି ଗାଡ଼ିରେ ଲଦିବା କଣ ସହଜ କଥା ! ମରି-ବାକୁ ଯିଏ ଝୁକୁଝୁକ୍ ହେଉଛି ତାକୁ ବି ଆଣିବାର ଅଧିକାର ନାହିଁ । ଗୋଟାଏ କେଉଁଠି ଯଦି ଭୁଲରେ ରହିଗଲା ସେଥିକି ଗାଳି । କଣ କରିବା କହିଲୁ ?"

"କଣ ଆଉ କରିବା ? ଗୃହକର ତ କରିଥାଇଁ । ଅରେ, ଏ ଦରିମଲା କାଙ୍ଗାଳଗୁଡ଼ା ଯଦି ଅଗରୁ ଯାଇ ଗାଡ଼ିରେ ଶୁଅନ୍ତେ ତେବେ ଆମକୁ ଏତେ କଷ୍ଟ ପଡ଼ନ୍ତା ନାହିଁ । ଯେତେ କହିଲେ କିଏ ଶୁଣୁଛନ୍ତି ?"

"ଡତେ ନବଳ ଲଗିଛି, ନାହିଁ ରେ !"

"ଆରେ ନବଳ ନୁହେଁ, ସତ କହୁଛି । ଦେଖୁନୁ ଲୋକଙ୍କ ଅବସ୍ଥା । ସଞ୍ଜରେ ଯେ ଭଲରେ ଶୋଉଛି, ଟିକିଏ ବର୍ଷା କି ଟିକିଏ ଶୀତ ହେଲେ ସକାଳକୁ ସେ ମରୁଛି । ସମସ୍ତେ ତ ମରିବେ, ଶେଷକୁ ମଝିରେ ଆମେହିଁ ହଇରାଣ ହେଉଛୁ । ଗୃହଥାଉ କେତେ ଦିନ ଗୃହୁଛି ।"

ସେମାନଙ୍କର ଗଳ୍ପରେ ବାଧା ଦେବାକୁ ପଛରୁ ଜଣେ ସିପାହୀ ଆସି ଗର୍ଜନ କରି କହିଲା, "କି ରେ, ଲରି ଗାଡ଼ି ରାସ୍ତାରେ ଅଟକାଇଲ କାହିଁକି ?" ଲୋକ ଦିଜଣ ତ୍ରସ୍ତ ହୋଇ କହିଲେ, "ଦିଅଟା ବଳଦକୁ ଶକତ ବୋଝାଇ ହୋଇଛି । ଟାଣିପାରୁ ନାହାନ୍ତି ।" ବଳଦ ଖୋଲି ତାଙ୍କର ବନ୍ଦ ହେଲା । ସିପାହୀ ଚିଡ଼ିଲାପରି କହିଲା, "ଶକତ ବୋଝ, ନା ! ଆହୁରି ତ ଅନେକ ଲାସ୍ ଏଠି ସେଠି ପଡ଼ି ସଡ଼ୁଛନ୍ତି । ସେତିକ କାହାପାଇଁ ଛାଡ଼ି ଆସିଲ ?"

"ଶଗଡ଼ ଆଉ ଭରି ସହୁବ ନାହିଁ...।"

"ଶୀଘ୍ର ଏତିକ ଖଲାସ କରି ଆଉ ଖେପେ କର ।"

ଲୋକ ଦିଓଟି ଉତ୍ତର ନ ଦେଇ ବଳଦ ଅଡ଼ାଇଲେ । ସିପାହୀ ଥରେ ଜଗୁ ଆଡ଼କୁ ଗୃହିଁ ଫେରିଗଲା ।

ଖବର ତାଙ୍କ ନଇଁ ଆସିଲା । ଜଗୁ ଗଛମୂଳରୁ ଉଠି ପୁଣି ଛତର ଉଦ୍ଦେଶ୍ୟରେ ଗଲା । ଦେଖାଯାଉ, ଏଥର ଯଦି କେହି ତା ଉପରେ ଦୟା କରେ । ସବୁବେଳେ କିଛି ଲୋକଙ୍କ ମନ ସମାନ ନ ଥିବ । କେଜାଣି ଯଦି କାହାର ମନ ତରଳେ, ତାକୁ ଦୟା କରି ମୁଠିଏ ଖାଇବାକୁ ଦିଅନ୍ତି ! କିନ୍ତୁ କେଜାଣି କାହିଁକି ତାକୁ ଦେଖିଲାକ୍ଷଣି ଲୋକେ ପୁଣି ଭୟରେ ଚୀତ୍କାର କରି ଶାନ୍ତିରକ୍ଷକ ପୋଲିସ କର୍ମଚାରୀଙ୍କ ସାହାଯ୍ୟ ଲୋଡ଼ିଲେ । ଜଣେ କନେଷ୍ଟବଲ ଆସି ତାକୁ ଧମକ୍ ଦେଇ କହିଲା, "ଦେଖ୍, ତୋର ଏ ଟଗୋର ଧର୍ମଶାଳାରେ ସ୍ଥାନ ନାହିଁ । ତୁ ଆଜି ଏଠାରୁ ଗୃଲି ଯା ! କାଲି ସକାଳୁ ତୋର ଦେଖା ମିଳିଲେ ପୁଣି···।"

"ମୋର ଦୋଷ କଣ ?"

"ଦୋଷ କଣ ମୁଁ ଜାଣେ ନାହିଁ । ଲୋକେ ତୋତେ ଦେଖିଲେ ଡ଼ରୁଛନ୍ତି ।"

"ମୁଁ ତ କିଛି ବାଘ-ସାପ ନୁହେଁ ।"

'ସେ କଥା ହାକିମ ଜାଣନ୍ତି । ତାଙ୍କର ହୁକୁମ ମାନିବା ମୋର ବାଧ୍ୟ ।'

ଜଗୁ ପ୍ରତିବାଦ କଲା ନାହିଁ । ଯାହା ହେଉ, କଷ୍ଟେମଷ୍ଟେ ସେ ଗୁରୁ ଦିନ ଅନ୍ନଛତ୍ର ବାହାରେ କଟାଇଲା । କେତେ ଦିନ ସେ ଆଉ ଶବର ଉଚ୍ଛିଷ୍ଟ, କାଉକୁକୁରଙ୍କ ଖାଦ୍ୟ ଖାଇ ବଞ୍ଚନ୍ତା ? କେତେ ଦିନ ବା ଛପି ଛପି ଅପାରଗ, ନିଷ୍ପାପ କାଙ୍ଗାଳର ମୁଖର ଗ୍ରାସ ଅପହରଣ କରି ଚଳିବ ? ସତ କଥା , ଗୋପରେ ତା ପାଇଁ କାମ ନାହିଁ , ଗୋପରେ ତା ପାଇଁ ସ୍ଥାନ ନାହିଁ । ସେ ଆଉ ଏଠି ରହିବା ଉଚିତ ମଣୁ ନାହିଁ , ସାରା ଓଡ଼ିଶାର ପୁଣ୍ୟଭୂମି ପୁରୀ, ଜଗନ୍ନାଥ ମହାପ୍ରଭୁଙ୍କର ତୀର୍ଥସ୍ଥଳୀ । ସେହି-ଠାକୁ ଗଲେ ନିଶ୍ଚୟ ସେ ତାର ଜୀବନ ରକ୍ଷା ପାଇବ ।

ଦିନେ ରାତି ଅଧରେ ବଡ଼ ସାହସରେ ସେ ଛପି ଛପି ଅନ୍ନଛତ୍ରର ଭଣ୍ଡାରରୁ ଗୁଡ଼ାଏ ଚୋରି କରି ସମସ୍ତଙ୍କ ଅଦେଖାରେ ପାହାନ୍ତାରୁ ଉଠି ପୁରୀ ଆଡ଼େ ଯାତ୍ରା କଲା ।

## —ଅଣଚାଳିଶ—

ଅଧବାଟରେ ମୁକୁନ୍ଦପୁର ଗ୍ରାମରେ ତାକୁ ପ୍ରାୟ ଦଶ ଦିନ ଅଟକି ରହିବାକୁ ପଡ଼ିଥିଲା । ଦୁର୍ଭିକ୍ଷ, ମଡ଼କ ସଙ୍ଗେ ଯୋଗ ଦେଇ ଉତ୍କଳଖଣ୍ଡରେ ପ୍ରଳୟ ଆଣିବାକୁ ଭୀଷଣ ବନ୍ୟା ଆସି ଦେଶ ସାରା ଧୋଇ ନେଇଗଲା । ମଣିଷ ତ କ୍ଷୁଦ୍ର ଜୀବ; ପ୍ରକୃତିର ପ୍ରଳୟଲୀଳା ବିରୁଦ୍ଧରେ ଯୁଦ୍ଧ କରି ସେ ବା କେତେ ଦୂର ବିଜୟୀ ହୋଇ ପାରନ୍ତା ? ନୂଆ ବର୍ଷରେ ନୂଆ ଫସଲ କାଟି ପ୍ରାଣ ବଞ୍ଚାଇବାକୁ ଯେଉଁମାନେ ଆଶା କରିଥିଲେ, ସେମାନେ ନିରାଶ ହେଲେ । ଅଗଷ୍ଟ ମାସର ମଝିଆମଝି—ଦୁର୍ବଳ ନଈବନ୍ଧସବୁ ଭାଙ୍ଗି ବଢିପାଣି ଫସଲ ନଷ୍ଟ କରିଦେଲା । କେତେ ଯେ ଘର; କେତେ ଯେ ଗାଈଗୋରୁ, ଜୀବନ୍ତ ମଣିଷ ବଢିପାଣିରେ ଭାସିଗଲେ, ଜଗୁ ସେସବୁ ଦୁଇ ଆଖିରେ ଦେଖିଛି ।

ଆଶ୍ରୟ ଅଭାବରେ ଲୋକେ ଗଛ ଉପରେ ଚଢ଼ି ଆଶ୍ରା ନେଇଥିଲେ । ତାର ଆଖି ଆଗରେ କେତେ କେତେ ଗଛ ସୁଅର ଧୋଡ଼ରେ ପାଣି ଉପରକୁ ଢଳି ପଡ଼ିଲେ । ଆଶ୍ରିତ ଲୋକଙ୍କୁ ବଢିପାଣିର ସ୍ରୋତ ଉପରେ କାରଖ କରି ଭସାଇଦେଲେ । ଭୀଷଣ ବର୍ଷା,ଝଡ଼,ତୋଫାନ—ଯେଉଁମାନେ ଗଛ ଉପରେ ଆଶ୍ରୟ ନେଇ ନାଙ୍କୁ ଭାଗ୍ୟବାନ୍ ମନେକରିଥିଲେ, ସେମାନଙ୍କର ଅବସ୍ଥା କହିଲେ ନ ସରେ । ଝଡ ବର୍ଷାର ଫଳରୁ ସେମାନେ ମଧ୍ୟ ଚୁର୍ଣ୍ଣ ହୋଇ, ଖାଇବା ବିନା ଦୁର୍ବଳ ଶକ୍ତିହୀନ ହୋଇ, ବନ୍ୟାର କରାଳ ଉଦର ଭିତରେ ଅଜଣା ଅଶୁଣା ଶୀତଳ ସମାଧି ନେଲେ ।

ଯୁଆଡେ ଚାହିଁଲେ ପାଣି—କେବଳ ପାଣି । ଆଖି ପାଇଁ ନାହିଁ । ସତେ କି ପ୍ରକୃତିର ପ୍ରଳୟତାଣ୍ଡବ ଶେଷ କରିବାକୁ ବଙ୍ଗୋପସାଗର ବେଳାଭୂମି ଅତିକ୍ରମ କରି ମାଡିଆସିଛି । ଦୂରରୁ ବଡ଼ ବଡ଼ ଗଛର ଅଗ ଛଡ଼ା ଆଉ କିଛି ଦିଶୁ ନାହିଁ । ବେଳେ ବେଳେ ଭାସିଯାଉଥିବା ଗଛ ବା ଘରର ଚାଳ ଉପରୁ ବିପନ୍ନର ବ୍ୟର୍ଥ କରୁଣ ଚିତ୍କାର,ଅକୂଳ ଅନୁରୋଧ ଅନ୍ତରୀକ୍ଷକୁ ଉଠୁଛି ।,ସାହା ହେବ କିଏ ?

ଯେଉଁମାନେ ଅଣା ମୁଖରେ ଅନ୍ନଛତ୍ରକୁ ଚାହିଁ ରହିଥିଲେ, ସେମାନଙ୍କର ଅବସ୍ଥା ଅଧିକ ଶୋଚନୀୟ ହୋଇପଡ଼ିଲା । ସମୁଦ୍ର ମଝିରେ ଦ୍ୱୀପ ପରି ଉଚ୍ଚ ଉଚ୍ଚ ଗାଁଗୁଡ଼ିକର ଚାରିପାଖରେ ବଢ଼ି ପାଣି ଘେରି ରହିଛି, ବାଟଘାଟରେ ସୁଅ ପଡ଼ୁଛି, କାଗ ମୁଣ୍ଡ ଦିଖଣ୍ଡ ହେବ । ଗାଁ ଛାଡ ପାଣି ଭିତରକୁ ଗୋଡ଼ ବଢ଼ାଇବାକୁ ସାହସ ପାଉ ନାହିଁ । ନିରୁପାୟ ହୋଇ ଲୋକେ ଆଶ୍ରୟସ୍ଥାନରେ ଖାଇବା ବିନା ମଲେ ।

ମୁକୁନ୍ଦପୁର ଗ୍ରାମରେ ଜଗୁର ସହଯାତ୍ରୀମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରାୟ ଏହିପରି ଖାଇବା ବିନା ମଲେ । ଅବଶିଷ୍ଟ ଲୋକେ ବର୍ଷା, ଝଡ଼,ଶୀତ ସହି ନ ପାରି ଜ୍ୱର ପ୍ରଭୃତି ନାନାପ୍ରକାର ରୋଗରେ ପଡ଼ି ଘାଣ୍ଟି ହୋଇ ଶେଷକୁ ପ୍ରାଣ ହରାଇଲେ ।

ଜଗୁର ସବଳ ସୁସ୍ଥ ଦେହ ଏହିଠାରେ ଭାଙ୍ଗିଲା । ତିନି ଚାରି ଦିନ ପରେ ବଢ଼ିପାଣି ଗ୍ରାମ ଭିତରୁ ବାହାରିଯିବାରୁ ସେ ଗଛ ଉପରୁ ଓହ୍ଲାଇ ଓଦା ପଡ଼ୁପଡ଼ା କୁଡ଼ିଆ ଉପରେ ଆଶ୍ରା ନେଇଥିଲା; କିନ୍ତୁ ପ୍ରବଳ ବର୍ଷା ତୋଫାନ ସହି ତାକୁ ଶେଷକୁ ଭୟଙ୍କର ଜର ହେଲା । ଅପରିଷ୍କାରରେ ରୋଗୀ, ସେବା ତ

ଦୂରର କଥା, ଅଦ୍ଧା ବୋଲି ପଦେ କହିବାକୁ କେହି ସାହା ନାହିଁ । ଓଦା ଭୂଇଁ ଉପରେ ଉପାସଭୋକରେ ପଡ ପଡ ସେ ଭାବିଲା, ହୁଏ ତ ତାର ଶେଷ ପ୍ରାଣବାୟୁ ଏହିଠାରେ ଶେଷ ହେବ; କିନ୍ତୁ କେଜାଣି କିପରି ଦୁଇ ଗୃହ ଦିନ ପରେ ସେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲା; ହେଲେ, ଦୁର୍ବଳତାରୁ ଦେହ ଚଳୁ ନାହିଁ । ତାକୁ ଏକୁଟିଆ ଛାଡ଼ି ଜଣ ଜଣ ହୋଇ କାଙ୍ଗାଳମାନେ ପାଣି ବର୍ଷା ନ ମାନି ପୁଣି ଉଦ୍ଦେଶ୍ୟରେ ଚାଲିଯାଇଛନ୍ତି ।

ଅନେକ ଦିନରୁ ପାଣି ଛଡ଼ା ପେଟରେ ଖାଦ୍ୟ ପଡ଼ି ନାହିଁ । ପୁଣି ଯିବାକୁ ଗୋଡ଼ ଚଳୁଛି କେଉଁଠି ? ସେ ଖାଦ୍ୟ ଅନ୍ୱେଷଣରେ ଧୀରେ ଧୀରେ ଭଙ୍ଗା ଛନ୍ଦଛତର ଗ୍ରାମର ଏଣେ ତେଣେ ବୁଲିବାକୁ ଲାଗିଲା । ଏତେ ଗାଁଠା । ଘରଦ୍ୱାର ସବୁ ଭାଙ୍ଗିପଡ଼ିଛି । ପଥର ମୂଳଦୁଆ ଉପରେ କେଉଁଠି ବା ଘରର ଚୁଲି ମାଡିବସିଛି । ଖାଦ୍ୟ ଥିଲେ ବି ଖାଦ୍ୟ ମିଳୁଛି କେଉଁଠି ? ପର ମୁହଁରୁ ଖାଦ୍ୟ ଛଡ଼ାଇ ଖାଇବାକୁ ବି ତା ଦେହରେ ଆଉ ଜୋର ନାହିଁ ।

ଜଗୁ ଠେଲି ଠେଲି ପଙ୍କ, କାଦୁଅ, ପାଣି ଭିତରେ ପଶି ଯାଉ ଯାଉ ଗୋଟିଏ ଭଙ୍ଗାଚୁଲି ଜହାଜ଼ରୁ ଧୂଆଁ ଉଠୁଥିବାର ଦେଖିଲା । ଆନନ୍ଦରେ ସେ ଉତ୍ଫୁଲ୍ଲ ହୋଇଉଠିଲା । ଲୋକେ ଭାତ ରାନ୍ଧି ଖାଆନ୍ତି ପଛେ; ତା ଭାଗରେ ପେଜ ମୁନ୍ଦାଏ ଅନ୍ତତଃ ପଡ଼ିବ ତ ପେଜ ଟୋପାଏ ମାଗିଲେ କଣ ସେମାନେ ଦେବେ ନାହିଁ ? ସେ ଉଚ ପିଣ୍ଡା ପଥର ଦେହରେ ହାତ ଭରା ଦେଇ ଧୂଆଁ ଉଠୁଥିବା ଜାଗାକୁ ଲକ୍ଷ୍ୟ କରି ଚାଲିଲା ।

ଯେତେବେଳକେ ପାଖକୁ ଆସି ସେ ଯାହା ଦେଖିଲା, ନିଜର ଆଖିକି ଆଉ ବିଶ୍ୱାସ କରି ପାରିଲା ନାହିଁ । ଚୁଲି ଉପରେ ଗୋଟିଏ ଛୋଟ ଅଟିକାରେ ପାଣି ଫୁଟୁଛି । ପାଖରେ ବସି ଠିକ ତାରି ପରି ଜଣେ ଦୁର୍ଭିକ୍ଷପ୍ରପୀଡ଼ିତ ଲୋକ ବଡା କେଇ ଖଣ୍ଡି ଚୁଲିରେ ମୋହି ଫୁଟିଲା ପାଣିକି ଏକଦୃଷ୍ଟିରେ ଚାହିଁ ରହିଛି । ଟିକିଏ ଦୂରରେ ଅଣଜହାଜ଼ରେ ଆଉରି ଜଣେ ଲୋକ ହାତରେ ଖଣ୍ଡେ କଣ୍ଟୁରି ଧରି ବସିଛି । ଆଗରେ ଓଦା ଭୂଇଁ ଉପରେ ଲମ୍ବ ହୋଇ ପଡିଛି ଗୋଟିଏ ଶବ । ତାର ଗୋଟିଏ ହାତ କଟା ହୋଇ କାଙ୍ଗାଳର କୋଡ଼ ଉପରେ ରଖାହୋଇଛି ।

ବିଜୁଳି ବେଗରେ ଜଗୁର ମୁଣ୍ଡ ଭିତରେ କେତେ କଥା ଖେଳିଗଲା । ସେ ପିଲା ଦିନେ କେତେ ଅସୁର, କେତେ ରାକ୍ଷସ ଗଳ୍ପ ଶୁଣିଥିଲା; କିନ୍ତୁ ଆଖି ଆଗରେ ଏପରି ଭୟଙ୍କର ଘୃଣିତ ଦୃଶ୍ୟ ଦେଖିବ ବୋଲି ସେ କେବେ ହେଲେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା । ଯାହାଙ୍କୁ ଆଖି ଆଗରେ ଦେଖୁଛି, ସେମାନେ ଭୀଷଣକାୟ ରାକ୍ଷସ ନୁହନ୍ତି ତ; ବରଂ ତାଠାରୁ ଦୁର୍ବଳ ଶକ୍ତିହୀନ ଭୋକିଲା ମଣିଷ । ପେଟ ପାଇଁ ମଣିଷ ଶେଷକୁ ମଣିଷ ମାଂସ ଖାଇବ ! ଛିଃ ।

ଜଗୁକୁ ଦେଖି ଚୁଲି ପାଖରେ ବସିଥିବା ଲୋକଟି ବ୍ୟସ୍ତ ହୋଇପଡ଼ି ଉଠି ଆସି ପଚାରିଲା, "କିଏ ରେ ... ।"

ଜଗୁ କହିଲା, "ତମରି ପରି ଜଣେ କାଙ୍ଗାଳ ମୁଁ, କିଛି ଖାଇବା ଆଶାରେ ... ।"

ଦୂରରେ ବସିଥିବା ଲୋକଟି ଜଗୁର କଥା ଶୁଣିପାରି ଶବର କଟା ହାତଟିକୁ ହାତରେ ଧରି ପାଖକୁ ଆସି ହସି ହସି କହିଲା, "ହାଃ ହାଃ...। ଖାଇବାକୁ କଣ ଅଭାବ ଅଛି ରେ ?" ଜଗୁ ବିସ୍ମିତ ହୋଇ ତାର ମୁହଁକୁ ଚାହିଁଲା ।

ଲୋକଟି ପୂର୍ବପରି କହିଲା, "ବାଲୁଆଡ଼ିକୁକୁର ତ ବେଶ କଷ୍ଟିରେ ଅଛନ୍ତି । ଖାଇବାର ଅଭାବ ନାହିଁ ତାଙ୍କର । ମଣିଷ ହୋଇ କଣ ଆମେ ଉପାସରେ ମରିବା ?"

ଜଗୁ ଥଙ୍ଗେଇ ଥଙ୍ଗେଇ କହିଲା, "ତା ବୋଲି କଣ..."

ବାଧା ଦେଇ ଲୋକଟି କହିଲା, "ତା ବୋଲି କଣ ଉପାୟ ଥାଉ ଥାଉ ଜାଣି ଜାଣି ମରି ଶୋଇବା ।"

ଜଗୁ—"ମଣିଷ ମାଂସ ।"

ଲୋକ—"ହେଲେ ବା—ନିରୁପାୟ ।"

ଜଗୁ ସେହିଠାରେ ବସିପଡ଼ି କେତେ କଣ ଭାବିବାକୁ ଲାଗିଲା ।

× × × × ×

ପାଣି କାଦୁଅ ଅତିକ୍ରମ କରି ସେ ଆସି ପୁରୀ ସହରରେ ପହଞ୍ଚିଲା ବେଳକୁ ସଞ୍ଜବେଳ ଗଡ଼ିଯାଇଛି । ତ୍ରୟୋଦଶୀର ନିର୍ମଳ ଜହ୍ନ ମେଘମୁକ୍ତ

ଆକାଶ କୋଳକୁ ଉଠିଲାଣି । ଆଉ ପାଦେ ମାତ୍ର ଚାଲିବାକୁ ତାର ଶକ୍ତି ନାହିଁ । ଭୋକରେ ପେଟ ଭିତରେ ଯେପରି କିଏ ମଶାଣି-ନିଆଁ ଜଳାଇ ଦେଉଛି; ତଥାପି ତାର ପ୍ରାଣ ପୁଲକରେ ନାଚିଉଠିଲା । ପୁରୀ ଜଗନ୍ନାଥଙ୍କ ତୀର୍ଥଭୂମି ! ଏହିଠାରେ ତାର ଜୀବନମରଣର ଶେଷ ସଂଗ୍ରାମ । ସେ ଦୀର୍ଘଶ୍ୱାସ ଛାଡି ବଡ଼ଦାଣ୍ଡ କଡ଼ରେ ବସି ବଡଦେଉଳର ପତିତପାବନ ବାନାକୁ ଏକଦୃଷ୍ଟିରେ ଚାହିଁ ରହିଲା ।

## —ଚାଳିଶ—

ଦୀପ ଶିଖାର କ୍ଷୀଣ ଥରିଲା ଆଲୁଅରେ ଛୋଟ କୋଠରୀଟି ଅଳ୍ପ ଆଲୋକିତ ହୋଇଛି । ଚଟାଣ ଉପରେ ଖଣ୍ଡେ ପୁରୁଣା ମଇଳା ପାରି ନିଘୋଡ ନିଦରେ ଶୋଇଛି ଉମା । ଦୁଆରବନ୍ଧରେ ଠିଆ ହୋଇ ସଦାନନ୍ଦ ଏକଦୃଷ୍ଟିରେ ତାର ସୁନ୍ଦର ସଦ୍ୟଫୁଟା ମଲ୍ଲୀଫୁଲ ପରି ମୁହଁଟିକୁ ଘଡ଼ିଏ କାଳ ଚାହିଁ ରହିଲେ । କେଜାଣି କାହିଁକି ତାଙ୍କର ବକ୍ଷପଞ୍ଜର ଥରାଇ ଅଧୀର ନିଶ୍ୱାସଟା ବାରମ୍ବାର ବହି ଯାଉଥାଏ । ସଞ୍ଜ ପହରୁ—ଲକ୍ଷ୍ମୀ ନିଦ୍ରିତା କାହିଁକି ? ଅସୁସ୍ଥ ନୁହେଁ ତ ! ଇଚ୍ଛା ହେଉଥାଏ, ଘର ଭିତରକୁ ଯାଇ ତାର କପାଳରେ ହାତ ରଖି ଉତ୍ତାପ ପରୀକ୍ଷା କରିବେ; କିନ୍ତୁ ଗୋଟିଏ ଅଜଣା ଭୟରେ ତାଙ୍କ ଛାତି ଭିତରଟା ଥରିଉଠେ, ଗୋଡ ଚଳେ ନାହିଁ । କି ଚିନ୍ତାରେ କେଜାଣି, ସେ ସନ୍ଦିହାନ ହୋଇ ପଛକୁ ଚାହାଁନ୍ତି ବ୍ୟାକୁଳ ନୟନରେ । ପୁଣି କଣ ଭାବି କେଜାଣି ଘର ଭିତରକୁ ପାଦ ପକାଇବାକୁ ଗୋଡ଼ ଟେକନ୍ତି; ଗୋଡ଼ ଫେରି ଆସେ, ସତେ କି ବିଦ୍ୟୁତ୍ ସ୍ପର୍ଶରେ ।

ସଦାନନ୍ଦ ଫେରିଗଲେ । ଲକ୍ଷ୍ମୀ ତାର ଆଖିପତା ଖୋଲି ଚାହିଁଲା । କି ଚିନ୍ତାରେ ତାର ନାଲି ଓଠରେ ବିଜୁଳିର ଆଭା, ବିଜୁଳିର ସ୍ପନ୍ଦନ ଖେଳିଗଲା । ନାକ ପୁଡା ଚମକିଉଠିଲା ବାରମ୍ବାର । ଉଦ୍‌ଗତ ଦୀର୍ଘଶ୍ୱାସଟିକୁ ଚାପି ଚାପି ବାହାରକୁ ଛାଡ଼ି ସେ ପୁଣି ଧୀରେ ଧୀରେ ଆଖି ବୁଜିଲା । ହୃଦୟ-ବୀଣାର ତରୁଣ-ତନ୍ତ୍ରୀରେ ବାଜି ଉଠିଲା ଗୋଟିଏ ମଧୁର ଅବୋଧ ମନ-ଭୁଲାଣି ରାଗିଣୀର ଛନ୍ଦ । ସେ ବୁଝି ବୁଝିଲା ନାହିଁ, ଜାଣି ଜାଣିଲା ନାହିଁ ।

ସଦାନନ୍ଦ ଫେରି ଅସିଲେ । ମୁହଁଟି ତାଙ୍କର ପ୍ରଫୁଲ୍ଲ ଦିଶୁଛି । ସେ ଧୀରେ ଧୀରେ ଘର ଭିତରକୁ ପଶିଲେ । ଦ୍ୱାରରେ ପଦାଙ୍କୁ ଗୃହିଁ ପୁଣି ତାଙ୍କର କରୁଣଦୃଷ୍ଟି ନ୍ୟସ୍ତ କଲେ ଉମାର ଛଳନା-ନିଦ୍ରିତ ମୁହଁ ଉପରେ । ଲକ୍ଷ୍ମୀ ଏଡ଼େ ସୁନ୍ଦର ! କେତେ ଥର ସେ ତାକୁ ଦେଖିଛନ୍ତି— ସ୍ଥିର ଚକ୍ଷୁରେ ନୁହେଁ, ଚଞ୍ଚଳ ଚାହାଣିରେ; କିନ୍ତୁ ତାଙ୍କ ଆଖିରେ ସେ ତ କେବେ ଏଡ଼େ ସୁନ୍ଦର ଦିଶି ନାହିଁ ।

ଉତ୍ତେଜିତ ସଦାନନ୍ଦଙ୍କର ତୃଷାର୍ତ୍ତ ମୁଖଟି ତଳକୁ ତଳକୁ ନଇଁ ଅସିଲା...। ଉମାର ନିଦ୍ରିତ ଗଣ୍ଡ ସାମାନ୍ୟ ଥରି ଉଠିଲା, ନିଦ୍ରିତ ଆଖିପତା ପଲକି ଉଠିଲା, କପାଳରେ ରକ୍ତ ଉକୁଟିଲା । ସଦାନନ୍ଦ ମୁହଁ ଟେକି ଚଞ୍ଚଳ-ଚାହାଣିରେ ଥରେ ଗୃହଅଙ୍କୁ ଚାହିଁଲେ—କେହି ନାହିଁ । ଅନ୍ତରର ପିପାସା ଶମିଲା ନାହିଁ । ଆଉରି ଥରେ ଦୁଇଟି ଅଧର କମ୍ପିତର ହେଲା... ।

"କଣ କରୁଛ ସଦେଇ ?" ସୁଧୀ ଅସି ତା ପଛରେ ପହଞ୍ଚିଗଲା ।

ସୁଧୀର କଣ୍ଠସ୍ୱର ଶୁଣି ଉମା ଅସ୍ତବ୍ୟସ୍ତ ହୋଇ ଉଠିବସିଲା । ହାତ ପାପୁଲିରେ ଆଖି ମଳି ମଳି ଭଙ୍ଗା ମୋଟା କଣ୍ଠରେ କହିଲା, "ତୋର ପୁଅକୁ ଦେଖିଲୁ··· ।"

ସୁଧୀର ପ୍ରଫୁଲ୍ଲ ମୁହଁରେ ସନ୍ଦେହର ଛାୟାପାତ ହେଲା । ସେ ଦୁଃଖ-ମିଶା ସ୍ୱରରେ କହିଲା, "ଏଁ...।"

ଉମା କହିଲା, "ମୋତେ ଖାଲି ସଦାବେଳେ ବିରକ୍ତ କରୁଛି ।"

"ବିରକ୍ତ କରୁଛି ?" ତାର ସନ୍ଦେହ-ବାଦଲ ଘନୀଭୂତ ହେଲା ।

"ହଁ ଲୋ, ଦେଖିଲୁ, ମୁଁ ଶୋଇଛି, ସେ ଅସି ମୋର କାନ ଫୁଙ୍କୁଛନ୍ତି... ।"

ତାର ଜମାଟବନ୍ଧା ବାଦଲ ଦକ୍ଷିଣା ପବନରେ ଦୂରକୁ ଭାସିଗଲା । ସେ କହିଲା, "ହଇରେ ସଦା...।"

ସଦାନନ୍ଦଙ୍କର ପିଣ୍ଡରେ ପ୍ରାଣ ପଶିଲା । ସେ ଗଳା ସଫା କରି ଛେପ ଢୋକି କହିଲେ, "ଅଛା, ଦେଖ ତ ମା, ସଞ୍ଜପହରୁ କିଏ ଶୁଏ କହ ତ ? ଛଟା ଗାଳି···"

କୃତ୍ରିମ କୋଧରେ ଉମା ପ୍ରତିବାଦ କଲା, "ତୁମକୁ କହି ଛଟା ଗାଳିଥିଲି ପରା ।"

"ନୂହେଁ ତ ଆଉ କଣ ? ଏତେ ଡ଼ାକ ଡ଼ାକ ନିଦ ତୋର ଭାଙ୍ଗୁନି...!"

ଉମା କହିଲା, "ମା'ମ, ମୁଁ କେଡେ ଭୟଙ୍କର ସ୍ୱପ୍ନଟାଏ ଦେଖୁଥିଲିଲେ । ସାନ୍ଧ ଦପହରଣ ସଦେଇ ଭାଇ ଅଶୋକବନରେ ସତୀ ସୀତାଙ୍କ ଦୁଃଖ କଥା କହୁଥିଲେ । ମୋତେ ଛଇନିଦ ମାଡ଼ିବା ସଙ୍ଗେ ସଙ୍ଗେ ମୁଁ ସ୍ୱପ୍ନରେ ଖାଲି ସେହି ସବୁ କଥା ଦେଖୁଥିଲି ପରା...! ନିଦ ଭାଙ୍ଗିଦେଲେ...।"

ବୁଧୀ ଛଅରେ କହିଲା, "ହଃ, ସଦେଇ ଶୋଇଲା ଲୋକର ନିଦ ଭାଙ୍ଗନ୍ତି ।"

ସଦାନନ୍ଦ ଦୁଃଖରେ କହିଲେ, "କାହିଁକି ଭାଙ୍ଗୁଥିଲି ଜାଣୁ ? ଏଇ ଦେଖ ।" କହି ସଦାନନ୍ଦ ଉପରକୁ ହାତ ଟେକି ଦୁଇଟି ସୁନାର ନୂଆ ଖଡ଼ୁ ଦେଖାଇଲେ ।

ବୁଧୀ ଅଗ୍ରହରେ ପଚାରିଲା, "ସେ କଣ କି ରେ ?"

ସଦାନନ୍ଦ ଅଭିମାନ କରି କହିଲେ, "ସେଦିନ ତୁ ମୋତେ ପରା ଅଟ୍ଟା କରୁଥିଲୁ ?"

ବୁଧୀ ହସିହସି ହୋଇ କହିଲା, "ଓଃ...। ଦେଖିଲୁ ଲକ୍ଷ୍ମୀ, ସଦେଇ ତୋ ପାଇଁ ସୁନାର ଖଡ଼ୁ ଅଣିଛି । ମୁଁ କହୁଥିଲି—'ଅରେ ସଦା, ତୁ କଣ ଲକ୍ଷ୍ମୀକୁ ଶୃଙ୍ଖଳରେ ଶୃଙ୍ଖଳରେ ବନ୍ଦିଣୀ କରିବୁ ? ତୋର କେଉଁ କଥାର ଅଭାବ ରେ !' ଦେଖିଲୁ କି ସୁନ୍ଦର ଖଡ଼ୁ ଦିଓଟି । ଓଳିଟି ତୁ ତାକୁ ଚିଜୁଛୁ ?"

ଉମା ଲାଜରେ ମୁଖାବନତ କଲା ।

ବୁଧୀ କହିଲା, "ବାବା, ତୋର ହାତରେ ତୁ ତୋର ସାନ ବନ୍ଦିଣୀକୁ ଖଡ଼ୁ ଦିଓଟି ପିନ୍ଧାଇ ଦେ । ମୁଁ ଆସୁଛି... ।"

ସଦାନନ୍ଦ କହିଲେ, "ନା, ନା, ମୁଁ ସେ କଥା କରିପାରିବ ନାହିଁ । ମିଛଟାରେ ତ ସେ ସବୁବେଳେ ମୋ ନାମରେ ତୋ ଆଗରେ ଖତ କହୁଛି; ଖଡ଼ୁ ପିନ୍ଧାଉ ପିନ୍ଧାଉ ଯଦି ପୁଣି କଣ କୁହେ ତ...।"

"କଣ ପୁଣି ହେବ ?" ବୁଧୀ ହସି ହସି କହିଲା, "ହ ପୁଲା ଚମ୍ପଟି ଦେବୁ ? ଅଛ ହେଉ, ତା ସେ ସହିବ । ପାରିବୁ ନାହିଁ ଲକ୍ଷ୍ମୀ ?"

ଉମା ଚହିଲା, "ନା ମା, ପାରିବ ନାହିଁ । ମୋର ସେ ସୁନାଖଡ଼ୁ କଣ ଦରକାର ନାହିଁ ।

ରାଧୀ କହିଲା, "ତୋ ଉପରେ ସେ ଅଭିମାନ କରିଛି ସଦେଇ ! ଅଛ ହେଉ, କଛିଆ କରୁଥା ତୁମେ, ମୁଁ ମହନ୍ତବାବାଙ୍କ ପାଖରୁ ଶୁଣି-ଆସୁଛି ।"

ରାଧୀ ଚାଲିଯିବା ପରେ ଦଶ ପନ୍ଦର ମିନିଟ ଉଭୟେ ତଳକୁ ଚାହିଁ ଯେପରି କଣ ଚିନ୍ତା କରିବାକୁ ଲାଗିଲେ । ଶେଷକୁ ସଦାନନ୍ଦ ନୀରବରେ ଉମାର ଦୁଇ ହାତରେ ଖଡ଼୍ଗ ଫିଟାଇ ଦେଇ ସ୍ମିତ ହସି କହିଲେ, "ଲକ୍ଷ୍ମୀ, ତୋ ହାତକୁ ଏ ଖଡ଼୍ଗ ଦିଓଟି କିପରି ଦେଖାଯାଉଛି ଦେଖ ତ… !"

ଉମା କହିଲା, "ତମର ଦୟା ।"

"ଦୟା କଣ ଲୋ ? ଏଟା କଣ ମୋର କର୍ତ୍ତବ୍ୟ ନୁହେଁ ?"

ଉମା ଚୁପ ରହିଲା ।

ସଦାନନ୍ଦ କେତେ କଣ ଚିନ୍ତା କରି ନୀଚ ସ୍ୱରରେ କହିଲା, "ତୁ ଭାରି ଦୁଷ୍ଟ ଲକ୍ଷ୍ମୀ !"

ଉମା ସଦାନନ୍ଦର ମୁହଁକୁ ଚାହିଁ ଉତ୍ତର ଦେଲା, "ମୁଁ…?"

"ହଁ, ତୁ ।"

"ତମଠୁଁ କଣ ବେଶି ?" ତାର ମୁଖ ଆରକ୍ତ ହେଲା ।

"ନା; କିନ୍ତୁ ତୁ ବଡ଼ ଚଲାଖ ଲକ୍ଷ୍ମୀ । ନୋହିଲେ କି, ଓଃ… !"

ଉମା ରହି ରହି କହିଲା, "କେଜାଣି; କିନ୍ତୁ ଆତ୍ମରକ୍ଷା ପାଇଁ… ।"

"ଆତ୍ମରକ୍ଷା ପାଇଁ କାହିଁକି ଲକ୍ଷ୍ମୀ !" ଦୁହେଁ ଦୁହିଁଙ୍କର ମୁହଁକୁ କ୍ଷଣ-କାଳ ଚାହିଁରହିଲେ । ସଦାନନ୍ଦ କହିଲେ, "ଆଜିଯାଏ ତତେ ମୁଁ ବୁଝି ପାରିଲି ନାହିଁ ତ ।"

ଉମା—"କାହିଁକି ? ମୋର କେଉଁ କଥାଟା ଏତେ ଅବୁଝ ? ବରଂ ତୁମେ ମୋର ଅବୋଧ ।"

ସଦାନନ୍ଦ—"କିନ୍ତୁ ତୁ ବଡ଼ ନିର୍ବୋଧ । ମୁଁ କଣ ତୋର ମନକଥା ଆଜିଯାଏ ବୁଝିପାରି ନାହିଁ, ଭାବୁଚୁ ଲକ୍ଷ୍ମୀ ?"

ଉମା—"ମୁଁ ତ ସେପରି କିଛି ଭାବି ନାହିଁ; ବରଂ ଭାବୁଛି ତେମେହିଁ ନିର୍ବୋଧ । ନିର୍ବୋଧ ମୁଁ—ମୁଁ ନୁହେଁ… ।"

ସଦାନନ୍ଦ ଉଦ୍‌ବିଗ୍ନ ହୋଇ କହିଉଠିଲେ, "ସତରେ ଏକା, ମୁହିଁ ନିର୍ବୋଧ ଲୋ—ତୁ ନୋହୁଁ !" ତାଙ୍କର ଲାଳସାଦୀପ୍ତ ଦୃଷ୍ଟିଟା ଉମାର ମୁହଁରେ

ନୀରବ ହେଲା । ଉମାର ଦୁଇ ଆଖି ଲୁହରେ ଢଳ ଢଳ ହେଲା । ସେ ତଳକୁ ଚାହିଁଲା ।

ସୁଧୀ ଫେରିଆସି କହିଲା "ଆରେ, ତମକୁ ମହନ୍ତବାବା ଡାକୁଛନ୍ତି କାହିଁକି ।"

ଉମା ଓ ସଦାନନ୍ଦ ସୁଧୀ ସାଙ୍ଗରେ ମହନ୍ତଙ୍କ ପାଖକୁ ଗଲେ । ମହନ୍ତ ଆଶୀର୍ବାଦ କରି କହିଲେ, "ଶୁଣ ସଦାନନ୍ଦ, କେବଳ ଗୋଟିଏ ଭଉଣୀକୁ ଭଲ ପାଇ ତାରି ଯତ୍ନ କଲେ ତ ତୁମର କର୍ତ୍ତବ୍ୟ ଶେଷ ହେଲା ନାହିଁ । ମଠ ବାହାରେ ପୁରୀ ସହରର ବାଟଘାଟରେ ଯେ ତୁମର ଶହ ଶହ କାଙ୍ଗାଳ ଭାଇଭଉଣୀ ଉପାସଭୋକରେ ଆର୍ତ୍ତନାଦ କରୁଛନ୍ତି, ତାଙ୍କ ଡାକ କଣ ତମର କାନରେ ପଡୁ ନାହିଁ ?"

ସଦାନନ୍ଦ ନିରୁତ୍ତର ରହିଲେ ।

ମହନ୍ତ କହିଲେ, "ଆଉ ଲକ୍ଷ୍ମୀ, କେବଳ ଲକ୍ଷ୍ମୀନାରାୟଣଙ୍କ ସେବା କରି ଦିନରାତି କାଟିଲେ ତୋର କର୍ତ୍ତବ୍ୟ ସରିଲା ମନେ କରିନୁ ନାହିଁ । ଘର ବାହାରେ ଯେ କେତେ ନରନାରାୟଣ ତୋରି ହାତକୁ ଅନାଇ ରହିଛନ୍ତି, ସେମାନଙ୍କ ପାଇଁ କିଛି କରିବା ତୋର ଉଚିତ ନୁହେଁ କି ?"

ଉମା କହିଲା, "କଣ କରିବାକୁ କହୁଛନ୍ତି...।"

ମହନ୍ତ ମହାରାଜ କହିଲେ, "କହିବି କଣ ? ପୁରୀ ସହରରେ ଯେତେ କାଙ୍ଗାଳ ଅଛନ୍ତି ସମସ୍ତଙ୍କର ଦୁଃଖ ଦୂର କରିବାର ଶକ୍ତିସଙ୍ଗତି ତୁମର ନାହିଁ । ତଥାପି ଯଥାଶକ୍ତି ସେମାନଙ୍କ ମଧ୍ୟରୁ ଅନ୍ତତଃ କେତେକଜଣଙ୍କର ଦୁଃଖ ତ ଦୂର କରି ପାରିବ ।"

ସଦାନନ୍ଦ କହିଲେ, "ମୁଁ ସେଇଥି ପାଇଁ ଆଗରୁ କହୁଥିଲି ମଠରେ ଅନ୍ନଛତ୍ର ଖୋଲିଯାଉ । ଆପଣ ମୋ କଥା ମୂଳରୁ ଭାଙ୍ଗିଲେ...।"

ମହନ୍ତ କହିଲେ "ଅନ୍ନଛତ୍ରର ଅଭାବ ନାହିଁ ; ଅଭାବ ହେଉଛି ସେବାଶୁଶ୍ରୂଷାର । ଲୋକେ ଭାତ ଖାଇ ମଧ୍ୟ ଅଣହେଳାରେ ଅପଯତ୍ନରେ ପଡ଼ି ମରୁଛନ୍ତି । ସେ ଆଡ଼କୁ ତ କାହାରି ଦୃଷ୍ଟି ଥିବାର ଦେଖାଯାଉ ନାହିଁ । ତମେମାନେ ଏହି ଦିଗରେ ଲୋକଙ୍କୁ ସାହାଯ୍ୟ କରିପାର...।"

ରାଧୀ କହିଲା,—“ଠିକ୍ ତ । ଖାଲି ମୁଁ ବି ତମମାନଙ୍କ ସାଙ୍ଗରେ ଯୋଗ ଦେବି । ମଠରେ ବସି ମହାପ୍ରଭୁ ଲକ୍ଷ୍ମୀନାରାୟଣଙ୍କ ସେବା କରୁଥାନ୍ତୁ । ଆମେମାନେ ବାଟଘାଟରେ ପଡ଼ିଥିବା ରୋଗୀଙ୍କର ସେବା କରିବା; କିନ୍ତୁ ଏଥିପାଇଁ ଆମର ଅନେକ କଥା ଲୋଡ଼ା ଯେ ...।”

ମହନ୍ତବାବା କହିଲେ,—“କଣ ଲୋଡ଼ା ?”

ରାଧୀ—“ପ୍ରଥମେ ଲୋକ, ଅନ୍ତତଃ ଆମକୁ ସାହାଯ୍ୟ କରିବାକୁ । ରୋଗୀମାନଙ୍କୁ ବୋହି ଆଣିବାକୁ ଆମର ଗୁଡ଼ାଏ ଲୋକ ଦରକାର । ମୁର୍ଦାରବୁହା ଗଳଦଗାଡ଼ି ପରି ଆମର ବି ଗୋଟାଏ ରୋଗୀବୁହା ଗଳଦଗାଡ଼ି ଲୋଡ଼ା ।”

ମହନ୍ତ—“ସଦାନନ୍ଦ ସେ ସବୁର ଆୟୋଜନ କରିବେ ।”

ସଦାନନ୍ଦ—“ଘରର ବନ୍ଦୋବସ୍ତ କଣ କରାଯିବ ?”

ମହନ୍ତ—“କାହିଁକି ? ମଠକୁ ଲାଗି ଯେଉଁସବୁ ଖୋଲା ଘରଗୁଡ଼ା ପଡ଼ିଛି ସେଇଠି ରୋଗୀମାନଙ୍କର ରହିବାର ଆୟୋଜନ କର । ତା ହେଲେ ମୁଁ ବି ତମମାନଙ୍କୁ ସାହାଯ୍ୟ କରିପାରିବି ।”

ଉମା ଖୁସି ହୋଇ କହିଲା,—“ତା ହେଲେ ଅମେ ଆଜୁ ଭାବିବୁ କାହିଁକି ? ଆପଣଙ୍କର ଯାହା ଆଦେଶ ହେବ ଅମେ ଏଇଠି ତାହାହିଁ କରିବୁ ।”

ମହନ୍ତ—“ବଡ଼ ଚାଲାକ ଏକା ତୁ ! ଏଇଠି ବସି ସବୁ କରିବାକୁ ବସିଛୁ ତୁ ନା ! ସେ କଥା ହେବ ନାହିଁ ଲୋ ପାଗଳୀ । ପର ଉପରେ ନିର୍ଭର କରି ମଠରେ ତୁନି ହୋଇ ବସି ରହିଲେ ଚଳିବ ନାହିଁ ତ । ନିଜେ ଯାଇ ପୁରୀ ସହରର ଗଳି ଗଳି ବୁଲି ରୋଗୀ ଖୋଜି ଅଣିବାକୁ ହେବ । ପାରିବୁ ନାହିଁ ମା ?”

“ଏକୁଟିଆ ?”

“କାହିଁକି, ଡର ମାଡ଼ିବ କି ?”

“ବାବା, ବାଟରୁ ଅସିଛି ମୁଁ, ବାଟକୁ ଡରିବି ?”

ମହନ୍ତ ହସି ହସି କହିଲେ,—“ସେଇ କଥା ସବୁବେଳେ ଯେପରି ତୁ ମନେ ରଖୁ । ବାଟରୁ ଅସିଛୁ ତୁ, ବାଟରେ ଯେଉଁମାନେ ରୁଗ୍ଣ ଅଚଳ ହୋଇ ପଡ଼ିଛନ୍ତି, ସେମାନଙ୍କୁ ଯେପରି ନିଜର ମନେକରୁ ।”

ଉମାର ପ୍ରାଣ ଭିତରେ ଗୋଟିଏ ଗୋପନ ବେଦନା ରହି ରହି ଗୁମରି ଉଠିଲା । ମହାନ୍ତ ତାର ମନର ବ୍ୟଥା ବୁଝିଲା ପରି କହିଲେ, "ତୋର ଭାଇ ଚଉତ ପ୍ରଭୃ ମଠରେ ସାହାଯ୍ୟ କରିବ । ତୋର ସଙ୍ଗେ ସଙ୍ଗେ ସେ ମଧ୍ୟ ଥିବ । ପାରିବ ନାହିଁ ସଦାନନ୍ଦ ?"

ସଦାନନ୍ଦ କହିଲେ,—"ଆପଣଙ୍କର ଆଦେଶ...। ନିଶ୍ଚୟ ପାରିବ ।

ମହନ୍ତ—"ଅଚ୍ଛା, ତେବେ ତୁମେମାନେ ଯାଅ ।"

ମହନ୍ତଙ୍କର ଆଦେଶ ପାଇ ସେମାନେ ସେଠାରୁ ଚାଲିଆସିଲେ ।

× × × ×

ମଠକୁ ଲାଗି ଯାତ୍ରୀମାନଙ୍କ ରହିବା ସକାଶେ ଯେଉଁସବୁ ଘର ଖୋଲା ପଡ଼ିଥିଲା, ଦିନ କେଇଟାରେ ସେ ସବୁ ରୁଗ୍ଣ ମୁମୂର୍ଷୁ କାଙ୍ଗାଳଙ୍କ ଦ୍ୱାରା ପୂର୍ଣ୍ଣ ହେଲା । ରାଧୀ, ସଦାନନ୍ଦ, ଉମା ଅହୋରାତ୍ର ଭୁକ୍ଷ ନର-ନାରାୟଣଙ୍କ ସେବାରେ ମନପ୍ରାଣ ଢାଳିଦେଲେ । ନିଜେ ମହନ୍ତ ମହାରାଜ ସେମାନଙ୍କୁ ପ୍ରତ୍ୟେକ କାର୍ଯ୍ୟରେ ଉତ୍ସାହିତ କରିବାକୁ ଲାଗିଲେ । ଜାତି ନିର୍ବିଶେଷରେ ଲୋକଙ୍କର ଏକାଠି ରହିବାର ବ୍ୟବସ୍ଥା କରାଗଲା; କିନ୍ତୁ ସ୍ଥାନ ଅଭାବରୁ ଜାଣି ଜାଣି ମଧ୍ୟ ଅନେକ ଲୋକଙ୍କୁ ମରଣର ଦ୍ୱାରଦେଶରେ ବାଟଘାଟରେ ଛାଡ଼ିବାକୁ ହେଲା ।

ଉମା ଦିନେ ବ୍ୟସ୍ତ ହୋଇ କହିଲା,—"ବାବା, ଘରଗୁଡ଼ିକ ତ ସବୁ ପୂରିଗଲାଣି । ସହରର ଅଦସଦ ବୁଲି ଆମେ ରୋଗୀ ଦେଖି ମଧ୍ୟ ଆଣି ପାରୁନାହୁଁ । କେହି ଗୋଟାଏ ଏଣୁ ନ ମଲେ ତ ନୂଆ ରୋଗୀ ଆଣି ରଖି ହେଉ ନାହିଁ !"

ମହନ୍ତ ହସି ହସି ସ୍ନେହରେ ତାର ମୁଣ୍ଡ ଆଉଁସି କହିଲେ,—"ଅଲୋ ମା, ଘର ଯୋଡ଼ିକୁ କଣ କୁଟାଖିଏ ସାର ନୁହେଁ ? ଯେଉଁମାନଙ୍କୁ ଆଶ୍ରୟ ଦେଇ ସାରିଛ, ସେମାନଙ୍କୁ ଆଗ ବଞ୍ଚାଇ ରଖ... ।"

## —ଏକତ୍ରିଂଶ—

ଜଗୁର ଚାଲିବାର ଆଉ ଶକ୍ତି ନାହିଁ । ଦୁର୍ବଳ ଦେହ; ଠିଆହେଲେ ଥରୁଛି, ଗୋଡ଼ ଚଳୁ ନାହିଁ । ଅନ୍ଧକାରର ଭିଡ଼ ଭିତରେ ପଶି ଠେଲା

ଟେକ ସିଦ୍ଧ ମୁଠିଏ ଭାତ ପାଇବା ତା ପକ୍ଷରେ ଆଜି ଯେପରି ସମ୍ଭବ ନୁହେଁ । ଲୋକଙ୍କର ଦ୍ୱାର ଦ୍ୱାର ବୁଲି କିଛି ଖାଇବାକୁ ମାଗିଲେ ଦେବା ପରିବର୍ତ୍ତେ ବଡ଼ କଥା ଶୁଣି ମନ ବୋଧ କରିବାକୁ ହେଉଛି । ପତିତପାବନବାନା ତଳେ ଆଶ୍ରୟ ନେଇ ମଧ୍ୟ ଲୋକଙ୍କର ଦୁଃଖ ଦୂର ହେଉ ନାହିଁ; କିନ୍ତୁ ଜଗନ୍ନାଥ-ଙ୍କର କତି-ମଣୋହି ବନ୍ଦ ନାହିଁ । ସବୁଦିନ ପରି ଏବେ ମଧ୍ୟ ଧୂପ ଉପରେ ଧୂପ ଚାଲିଛି । ସେବାକାରୀମାନଙ୍କ ଘଣ୍ଟାମର୍ଦ୍ଦଳ ଶବ୍ଦରେ ବଡ଼ଦେଉଳର ବେଢ଼ା ମୁଖରିତ ହେଉଛି । ମଣିଷର ହାତଗଢ଼ା, ମନଗଢ଼ା, ଜଡ଼, ଅଚଳ, ପଙ୍ଗୁ, ଅନ୍ଧ, ମୂକ ଭଗବାନ୍ ଦେଉଳ-କାରାରେ ନିର୍ଜୀବ ନିସ୍ତେଜ ହୋଇ ବସିଛନ୍ତି । ମଣିଷର ଦୁଃଖଦୁର୍ଦ୍ଦଶାର କଥା ଭାବିବାକୁ ତାଙ୍କୁ ଅବସର ନାହିଁ । ପାଷାଣ-କାରାର ଦୁର୍ଭେଦ୍ୟ କାନ୍ଥ ଭେଦକରି ପାଖକୁ ଯାଉଥିବା ପତିତର କ୍ଷୀଣ ଆର୍ତ୍ତନାଦ, ପଣ୍ଡାପଢ଼ିଆରୀଙ୍କର ସ୍ତୁତିଗାନ ଓ ଖୋଳ-କରତାଳର ଶବ୍ଦ-ଭିତରେ ବିଳୀନ ହେଉଛି । ଧନ୍ୟ ଭଗବାନ୍ !!

ଜମ୍ବୁ ଦେହର ଭାର ସହି ନ ପାରି ରାସ୍ତା ଉପରେ ବସି ପଡ଼ିଲା । ନା, ଆଉ ଜଗନ୍ନାଥଙ୍କ ମନ୍ଦିର ଆଗକୁ ଯାଇ କିଛି ଲାଭ ନାହିଁ । କିଏ ଥରେ ପଣ୍ଡାମାନଙ୍କୁ ଆକ୍ରମଣ କରି ମହାପ୍ରସାଦ ଛଡ଼ାଇ ଥିଲେ ବୋଲି ସବୁ କାଙ୍ଗାଳ ହେଲେ ଚୋର, ଡକାଇତ, ଅବିଶ୍ୱାସୀ । ପଣ୍ଡାମାନଙ୍କର ପ୍ରଥମ ତାଡ଼ନା ଏହିମାନଙ୍କ ଉପରେ । ଦୟାଧର୍ମ କଥା ପଚାରୁଛି କିଏ ? ଦେବତା ତ ସେବକପଣ୍ଡାଙ୍କର । ସେ କାହିଁକି ଦରିଦ୍ରବିପନ୍ନର ସହାୟ ହେବେ ? ଅଭିମାନରେ ଜମ୍ବୁର ମନ ଭରିଗଲା । ଜୀବନ ପାଇଁ ଅବସ୍ଥାର ବିରୁଦ୍ଧରେ ସେ ଯୁଦ୍ଧ କରି କରି ମରଣର ଅତି ନିକଟକୁ ଚାଲିଆସିଛି । ପଥକଡ଼ରେ ଶହ ଶହ କାଙ୍ଗାଳ ନିତି ମରି ଶୋଉଛନ୍ତି । ସେ ମଧ୍ୟ ମରି ଶୋଇବ । କୌଣସି ଦେବତା ତାକୁ ରକ୍ଷି ପାରିବେ ନାହିଁ । ତେବେ ଦେବତାର ଆଶ୍ରୟ ଲୋଡ଼ିବ କାହିଁକି, କେଉଁ ଭରସାରେ ?

ତାରି ପରି କେତେ କେତେ ଲୋକ ରାସ୍ତା କଡ଼ରେ ପଡ଼ିଛନ୍ତି, କେହିବା ବାଡ଼ି ଧରି, ନୋହିଲେ ପିଣ୍ଡା ଢିବି ଦେଇ ଧୀରେ ଧୀରେ ଆଗକୁ ଯାଉଛନ୍ତି । କାହାରି କାହାରି ଠିଆ ହେବାର ମଧ୍ୟ ଶକ୍ତି ନାହିଁ । ରାସ୍ତା କଡ଼ରେ ବସି ବସି ଘୁସୁରି ଘୁସୁରି ଚାଲୁଛନ୍ତି—ଧୂଳି ଉପରୁ ଧାନଚାଏ

ଗୃହଜଳଟାଏ ଗୋଟାଇ ପାଟିରେ ପକାଉଛନ୍ତି । କେତେ ଜଣ ରାସ୍ତା ଉପରେ ଏଣ୍ଡୁଅ ପରି ଘୁସୁରି ଘୁସୁରି ଚାଲୁଛନ୍ତି । କେଉଁଠି ବା ଗୋବର,ଘୋଡ଼ାଗୁହକୁ ଅଙ୍ଗୁଠିରେ ଖେଳାଇ ଦାରହଜମ ବରକୋଳଅ ବାଛି ଖାଉଛନ୍ତି । ଏମାନଙ୍କର ତ ପୁଣି ବଞ୍ଚିବାର ଆଶା ଅଛି, ଜଗୁ କାହିଁକି ହତାଶ ହେବ ?

ସେ ବଡ଼ଦାଣ୍ଡରୁ ବାଟ ଭାଙ୍ଗି ଗୋଟିଏ ଛୋଟ ଗଳି ଭିତରକୁ ଗଲା । ଭାବିଥିଲା, ବୋଧହୁଏ ଗଳି ରାସ୍ତାରେ କାଙ୍ଗାଳ ନ ଥିବେ; କିନ୍ତୁ ଦେଖିଲା ଓଲଟା । ଗଳିର ଦୁଇପାଖ ଉଚ୍ଚ ଘରର ଛାଇତଳେ କେତେ ଜଣ କାଙ୍ଗାଳ ଆଶ୍ରା ନେଇଛନ୍ତି । ସେ ଆଗକୁ ଚାଲିଲା । ଖଣ୍ଡେ ଦୂର ଯାଇ ଦେଖିଲା, ରାସ୍ତା ପାଖର ଗୋଟିଏ ଛୋଟ ଚାଳଘରର ଝରକା ଫାଙ୍କରୁ ଧୂଆଁ ବାହାରୁଛି । ଝରକା ତଳ ରାସ୍ତାକଡ଼-ନୟନଯୋଡ଼କୁ ଆସିଥିବା ଛୋଟ ନାଳବାଟେ ପେଜ-ତୋରାଣି ବାହାରି ଗଳଗଳ ହୋଇ ନାଳରେ ପଡୁଛି । ଜଗୁ ପ୍ରଲୋଭନ ସମ୍ଭାଳି ପାରିଲା ନାହିଁ । ସେ ସେଇଠାରେ ବସିପଡ଼ି ଆଞ୍ଜୁଳାରେ ପେଜ ଧରି ପିଇବାକୁ ଲାଗିଲା । ତା ଦେଖାଦେଖି ପାଖରେ ଅଧାଶୁଆ ଠାଣୀରେ ବସିଥିବା କେତେଜଣ କାଙ୍ଗାଳ ଆସି ତା ଖାଦ୍ୟର ଭାଗୀ ହେଲେ । କେଇଟା ବୁଲାକୁକୁର ମଧ୍ୟ ଦାନ୍ତ ଦେଖାଇ ଭାଉଁ ଭାଉଁ ହୋଇ ସେମାନଙ୍କର କାର୍ଯ୍ୟରେ ବାଧା ଦେବାକୁ ବସିଲେ । ଜଗୁ ପଛକୁ ହଟି ଆସି ଭାବିବାକୁ ଲାଗିଲା, ଆହା, ରାସ୍ତାକଡ଼ର ପେଜପାଣି ଟୋପାକ ପାଇଁ ବି ଝଗଡ଼ା, ମଣିଷ କୁକୁର ଭିତରେ ! କାଙ୍ଗାଳମାନେ ନିଜ ନିଜ ଭିତରେ ପେଜ ପାଇଁ କଜିଆ କରିବାକୁ ଲାଗିଲେ । ଜଗୁ ଅଡ଼ ହୋଇ ଠିଆହୋଇ ନିରାଶ ଆଖିରେ ସେମାନଙ୍କୁ ଚାହିଁ ରହିଲା ।

କେତେବେଳକେ ଘରର ଝରକା ଖୋଲିଲା । କାଠ ଗ୍ରେଲୁଂ ଅର ପାଖରୁ ଜଣେ ପରିଚିତା ରମଣୀର ବିରସ ଶୁଖିଲା ମୁହଁ, ଲୁହଭରା ପ୍ରଭାହୀନ ଆଖି ଦିଓଟି ଦେଖି ସେ ବିସ୍ମିତ ହୋଇ କରୁଣ ଆଖିରେ ସେଇ ଆଡ଼କୁ ଚାହିଁ ରହିଲା । ଦେଖି ଦେଖି ତାର ମନ ବୋଧ ହେଲା ନାହିଁ; ମନର ସଂଶୟ ତୁଟିଲା ନାହିଁ । ବେଣୁବୋଉ ତାର ସ୍ନେହମୟୀ ଭଉଜ ! ସେ କାହିଁକି ତାଙ୍କ ବାପଘର ଛାଡ଼ି ଏତେଦୂରରେ ପୁଣି ସହରରେ ଆସି ରହିଲେ ? ବେଣୁ ବା ରହିଲା କେଉଁଠି ? ସେ ପୁଣି ସେହି ନାରୀର ଦୁର୍ବଳ

ଲୋତକାପ୍ଲୁତ ମୁହଁକୁ ଗୃହିଁଲା । ତାର ସନ୍ଦେହ ତୁଟିଲା । ଶୁଣିଲା ଆଖି-କୋଣରେ ଜଳକଣା ଦେଖା ଦେଲା । କେଜାଣି କାହିଁକି ଅନ୍ତର ଭିତରେ ସେ ଗୁରୁବେଦନା ଅନୁଭବ କଲା । "ଶେଷକୁ ତୁମେ ବି ଆସି ପଡ଼ିଲ ଛତରରେ ? ପଧାନ ବଂଶର ଶେଷସମ୍ବଳ ବେଣୁଟିକୁ...।"

କିଏ ଜଣେ ଘର ଭିତରୁ ଗର୍ଜି ଉଠିଲା—"କି ଲୋ, ଦିନ ଆସି ଦି'ଘଡ଼ି ହେଲା; ବାସନ ମଜା ନାହିଁ, ଘରଦ୍ୱାର ଖରକା ନାହିଁ... । ମଲା ରେ, ତତେ କଣ ଛତରରୁ ଅଣିଥିଲି ସାଅନ୍ତାଣୀ ସଜେଇ ପୋଷିବାକୁ ?"

ଅଖି ମଳମଳ କରୁଣକଣ୍ଠରେ ବେଣୁବୋଉ କହିଲେ—"ଯାଉଛି...।"

"ଆଲୋ, କେତେ ଯାଉ ଖାଉଛୁ ବା...। ଝରକା ପାଖରେ କୋଉ ଗେରସ୍ତକୁ ଗୃହିଁଛୁ ଲୋ ?"

ବିରକ୍ତିରେ ନାକ ଫୁଲେଇ ସେ କହିଲେ, "ପେଟ ପାଇଁ ବେଶ୍ୟା-ଘରେ ପଶିଲି ବୋଲି ମୁଁ ବେଶ୍ୟା ନୁହେଁ ଯେ, ଝରକାବାଟେ ଗୃହିଁ ତମର ପର ପରପିଲାକୁ ଅଖି ମାରିବି । ପୁଅ ମୋର ହଜିଛି; ଛଅଦିନ ହେଲା ଫେରି ନାହିଁ, ଝରକା ବାଟେ ଗୃହିଁଲି ବୋଲି ଦୋଷ ହେଲା ?"

"ତୋ ପୁଅକୁ ତେଣେ ବାଘ ଖାଇଲାଣି । କି ଲୋ ବଞ୍ଚିଥିଲେ ତ ଅସିବ ବଲେ...।"

"ତୁମର ଯଦି ପୁଅପାଲି ଥାନ୍ତେ, ତୁମେ ଏମିତି କହନ୍ତ ନାହିଁ... ।"

"ନାହାନ୍ତି ରକ୍ଷା ହୋଇଛି । ତୋର ପରି ତ କେତେ ସତୀସାବିତ୍ରୀ ପୁଅପତିଙ୍କ ଗଳାରେ ଛୁରି ଦେଇ ପେଟପାଇଁ ବାରଦ୍ୱାର ହେଉଛନ୍ତି, କେତେ ଗୃତର କାଢ଼ୁଛୁ ବା ।"

ଏତିକି କହି ମୁଖରା ସ୍ତ୍ରୀଲୋକଟି ଝରକା ବାଟେ ପଦାକୁ ଗୃହିଁଲା । କାଙ୍ଗାଳମାନଙ୍କୁ ଝରକା ତଳେ ଦେଖି ରାଗରେ ପାଟି କରି କହିଉଠିଲା, "ଯେତେ ଖାଇଲେ ଯ୍ୟାଙ୍କର ପେଟ ପୁରୁ ନାହିଁ ଲୋ ମା, ଯୋଇଠି ଯାହା ହାବୁଡ଼ୁଛି, ଖାଇ ମରୁଛନ୍ତି ..।"

ଜଣେ କାଙ୍ଗାଳ ଅନୁନୟ କଲା, "ମା, ମୁଠିଏ ଖାଇବାକୁ ଦିଅ ।"

ସେ ହସି ହସି କହିଲା, "ଓହୋ ରେ, କି କଅଁଳ କଥା ? ମରି ଯାଉଥାଏ ଲୋ । ମା, ମା, ବାପରି ଡାକିଲା...। ହାଃ, ହାଃ, ବାପ ଜମେଇ

ରଖିଛୁ ? ଯା, ଯା, ଛତରକୁ ଯା । ମୋ ଘରତଳେ କାହିଁକି ରେ ? ପୋଲିସ-ମାଲ ପଡ଼ିଛୁ କି ?" ବହୁ ବହୁ ଝରକା ବନ୍ଦକଲା ।

ଜଗୁ ଭାବିବାକୁ ଲାଗିଲା,"ବେଶ୍, ତାର ସ୍ନେହର ପୁତୁଳିଟି, ଧନ ଧନ ହେବ ଘରକୁ ତା ମା ପାଖକୁ ଫେରି ନାହିଁ । ପୁଣି ସହର; ବଜାର ଯାଗା ! ହଜାର ହଜାର ଲୋକ ଚଲପ୍ରଚଳ ହେଉଛନ୍ତି । କୁଆଡ଼େ ହଜିଲା, କେଉଁଠି ରହିଲା, କିଏ କହିବ ? ତାର ଇଚ୍ଛା ହେଲା, ଝରକା ପାଖରେ ଭଉଜବୋହୂଙ୍କୁ ଡ଼ାକି ସବୁ କଥା ପଚାରି ବୁଝିବ । କେତେଦିନର ଉପାସିଆଟା ସେ, ଅଗ କିଛୁ ଖାଇବାକୁ ମାଗିବ । କିନ୍ତୁ ଡ଼ାକିବାକୁ ତାର ସାହସ ହେଲା ନାହିଁ । ଯଦି ପୁଣି ସେହି ସ୍ତ୍ରୀ ଲୋକଟା ଅସେ, ତେବେ ତ ସର୍ବନାଶ ! ତୁଏ ତ କଣ ସନ୍ଦେହ କରି ଯଦି ତା ଭଉଜବୋହୂଙ୍କୁ ତଡ଼ିଦିଏ ! ନା, ନା, କୁଳାଙ୍ଗାରଟା ସେ; ସେମାନଙ୍କୁ ସୁଖରେ ରହି ମୁଠିଏ ଖାଇବାକୁ ଦେଇପାରିଲା ନାହିଁ ବୋଲି ସେମାନେ ଘର ଛାଡ଼ି ପେଟପାଇଁ ପରର ଅଶ୍ରା ନେଇଛନ୍ତି । ସୁଖରେ ହେଉ କି ଦୁଃଖରେ ହେଉ, ଦିନ ତାଙ୍କର କଟି ଯାଉଛି ତ । କାଳେ ବିପନ୍ନ ବୋଲି ସେ ଜାଣୁ ଜାଣୁ ତାଙ୍କର ସ୍ୱାଚ୍ଛନ୍ଦ୍ୟର ପ୍ରତିବନ୍ଧକ ହେବ କାହିଁକି ?"

ଜଗୁ ଏହି ସବୁ କଥା ଭାବି ଭାବି ବାଡ କବାଟ ପାଖକୁ ଆସି ଛାଇତଳ ଦେଖି ଯେପରି କାହାର ଅପେକ୍ଷା କରି ବସିଲା ରାସ୍ତା କଡ଼ରେ । ଅବଶତା ପାଇ ତାର ଆଖିପତା ମାଡ ମାଡ଼ ପଡ଼ିଲା । ସେ ବସି ଢୁଲାଇବାକୁ ଲାଗିଲା ।

ବାଡ କବାଟ ଖୋଲିବାର ଶବ୍ଦ ହେଲା । ସେ ଆଖି ଖୋଲିଲା । ସେହି କଳହକୁଣ୍ଡୀ ଷୋଡ଼ଶୀଟି କବାଟକୁ ଦରଆଉଜା କରି ରାସ୍ତା ଉପରେ ତାର ଆଗରେ ଠିଆ ହୋଇଥିବା ଜଣେ ଯୁବକ ସଙ୍ଗରେ ହସି ହସି କଥାଭାଷା ହେଉଛି । ଜଗୁ ପୁଣି ଆଖି ବୁଜିଲା; କିନ୍ତୁ ଦୁହିଙ୍କର କଥାବାର୍ତ୍ତା ତା କାନରେ ପଡୁଥାଏ ।

ଯୁବତୀଟି କହିଲା; "ଅଜକାଲି ଅପଣଙ୍କର ଦେଖାଦର୍ଶନ ମିଳୁ ନାହିଁ । ଲୋକେ ଫେର ଏପରି ଭୁଲନ୍ତି ।"

ଯୁବକ ଯେପରି ଅନ୍ୟମନସ୍କ ହୋଇ କହିଲେ, "ବେଳ ମିଳୁଛି କେଉଁଠି ? ସବୁବେଳେ ତ କାର୍ଯ୍ୟବ୍ୟସ୍ତ ।"

"ସେଇଥି ପାଇଁ ଲୁଚି ଲୁଚି ପଳାଉଥିଲ ପରା ? ଭାଗ୍ୟକୁ ମୁଁ ଦେଖିଲି !"

"ମୋତେ ମୋଟେ ବେଳ ହେଉ ନାହିଁ... ।"

"ଲକ୍ଷ୍ମୀକୁ ଖୋଜି ଖୋଜି । ନୂଆ ମୁହଁ ଦେଖିଲେ ଲୋକେ ପୁରୁଣାକୁ ଏମିତି ଭୁଲନ୍ତି ।"

କିଛି କ୍ଷଣ ରହି ଯୁବକ କହିଲେ, "ଯଦି ତାହାହିଁ ହୁଏ,ଖେଇ କିଏ ?"

"ଲକ୍ଷଣ କଥା ମୁଁ କହୁଛି ? ଆଚ୍ଛା, ସେ କିଏ ଏତେ ସୁନ୍ଦରୀ ?"

"ଲଢକା ବାଈଠୁଁ ନିଶ୍ଚୟ ସୁନ୍ଦରୀ ।"

"ହଁ,ହେବ ନାହିଁ କାହିଁକି ? ଲଢକା ବାଈ ପରା ଘରର ପଇସା,ମଦ-ଘଡ଼ା; କିନ୍ତୁ ଯାହା ହେଉ—ଛତରଖାଇ ନୁହେଁ, ଗଛତଳ ଅସି ନାହିଁ । ସେ ବାଈର ଝିଅ ବାଈ, ସାତ ପୁରୁଷି ।"

"କିନ୍ତୁ ସେ ଛତରଖାଇ ହେଲେ ବି ତୁ ତା ଗୋଡ଼ ତଳକୁ··· ।"

"ତମପରି ତ କେତେ ଏଣ୍ଡୁ ଗୋଡ଼ତଳେ ମୁଣ୍ଡିଆ ମାରି ଯାଇଛନ୍ତି, ଅଢ ହେଲି ଅସାର ! ମନ କଲେ ସେହିପରି, ସେହି ଉମା ଗୁଡ଼ଆଣୀ ପରି ଢପଣ ଝିଅ ମୁଁ ବାଟରୁ ଗୋଟାଇ ଆଣନ୍ତି । ଛିଃ ଛିଃ... !"

ଉମା ଗୁଡଆଣୀ ନାମ ଶୁଣି ଇଗୁର ମଳ ହାଡ଼ରେ ମଳୟ ଲାଗିଲା ସତେ ! ସେ ଆଖି ଖୋଲି ଯୁବକଟିକୁ ଖୋଜିଲା ବସ୍ତ୍ରଯୁଦ୍ଧର ଗୁହାଣୀରେ । ଯୁବକ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିଲା, "ଲକ୍ଷ୍ମୀ ଯେ ଉମା, ଏ କଥା ତୁ ଜାଣିଲୁ କେମିତି ?"

"ଲଢକା ବାଈଙ୍କ ଅଛପା କଣ ?"

"ମିଛସତ କରି ତୋ ଆଗରେ ଏତେ କଥା କିଏ କହିଛି ?"

"ସେହି ନଜେ । ସେ ଦିନ ଜଗନ୍ନାଥ ମନ୍ଦିରରେ... ।"

ଯୁବକ ତୁନି ରହିଲା ।

"ଲଢକା ବାଈ ପେଟ ଭିତରୁ କଥା କାଢ଼େ,ଜାଣ ତ ? ମୋ ଆଗରେ ସେ ସବୁ ଗାଇଛି । ଯେତେ ସେବା କଲେ ତମେ ତା ମନ ପାଇବ ନାହିଁ, କହୁଛି । ତା ମନର ମଣିଷ ଆଉ ଜଣେ ଅଛି । ଗୋଟାଏ ମସ୍ୱାଟକା ପଛରେ ଧାଇଁଛି ଅଢ; କାଲି ପୁଣି ଲଢକା ପାଖକୁ ଫେରିବ, ମୁଁ ଜାଣେ ।"

ଯୁବକର ମୁହଁଟି ଶୁଖିଗଲା । ସେ ଭୀତି-ଜଡ଼ିତ କଣ୍ଠରେ କହିଲା, "ଭାର ଜଣେ ଛୁ'ଲଢକା ! ତୁ ଏତେ କଥା କପରି ଜାଣିଲୁ ? ଅଚ୍ଛା, ତା ମନର ମଣିଷଟା କିଏ କହ ତ ?"

"କହିବ, ହିଁ କହିବ; କିନ୍ତୁ ତୁମେ ଆଗ କହ ତ, ଏ ବାହାର ଅଡ଼ମ୍ବର ଲୋକଦେଖାଣ ଭାଇଭଉଣୀ ସମ୍ବନ୍ଧର ଛଳନା କରୁଛ, କାହା ଆଖିରେ ଧୂଳି ଦେବାକୁ ?"

"ଛଳନା ନୁହେଁ—"

"ନୁହେଁ ତ କଣ ଆଉ ? ଏକା ନାହୁ ଦ'ଖଣ୍ଡ ହୋଇ ନ ଥିବା ଭାଇଭଉଣୀ ତ ଆଜିକାଲି କାଲରେ... ।"

"ଚୁପ୍ ଚୁପ୍, ନିଜ ପର ସଭିଙ୍କ୍ ମନେକର ନା ଲୋ !"

"ବେଶ୍, ଯଦି ଛଳନା ନୁହେଁ, ତେବେ ତା ମନର ମଣିଷଟାକୁ ଚିହ୍ନିବାକୁ ତମେ ଏତେ ଉଦ୍‌ବିଗ୍ନ କାହିଁକି ? ତୁମର ଲାଭ କଣ ?"

"କ୍ଷତି ତ କିଛି ନାହିଁ ବରଂ ଜାଣିଲେ ସୁଖୀ ହେବ ।"

"କହିବ ଶୁଣ । ତାଙ୍କ ଗାଁର ପଧାନପୁଅ କିଏ ଲୋକଦେଖାଣ ମହାପ୍ରସାଦ-ଦିଆ ଭାଇ ।' ତା ନାଁଟି କଣ ତ—ଅଃ କେଡ଼େ ସୁନ୍ଦର ନାଁଟି ଜିଭ ଅଗରେ ଅଛି ! XX ବର୍ତ୍ତମାନ ସେ ଘର ଛାଡ଼ି ଛତରରେ ପଶିଛି । ପେଟ ଦାଉ...କଣ ତ ତା ନାଁ ? ! ମଧୁ, ସାଧୁ, ଉହୁଁ—ରଘୁ, ଜଗୁ, ଠିକ୍ ଠିକ୍—ଜଗୁ, ଜଗନ୍ନାଥ !"

ଯୁବକ ସଦାନନ୍ଦ ଚିନ୍ତିତ ଦେଖାଗଲେ । କେତେଦିନ ତଳର ଗୋଟିଏ ଛୋଟ ଘଟଣା ତାଙ୍କର ମନେପଡ଼ିଲା । ଲକ୍ଷ୍ମୀ ନାଁ ଉମା, ସବୁ ତାର ଛଳନା ତେବେ । ସେ ଶୂନ୍ୟଚକ୍ଷୁରେ ଲଢକାର ମୁହଁକୁ ଚାହିଁ ରହିଲେ । ଏଣେ ନିର୍ବାକ୍ ନିସ୍ପନ୍ଦ ହୋଇ ଯେ ବାଟକଡ଼ର କାଙ୍ଗାଳଟାଏ ଏକଦୃଷ୍ଟିରେ ତାଙ୍କ ମୁହଁକୁ ଚାହିଁ ରହିଛି, ସେ କଥା ସେ ଦେଖି ମଧ୍ୟ ଦେଖିଲେ ନାହିଁ । ଦୁର୍ବଳ ଦରମରା ଭୋକୁଆଟା—ସେପୁରର ପ୍ରେତ ପରି ଦିଶୁଛି । ତା ଆଖିରୁ ଯେ ଦି ଟୋପା ତତଲା ଲୁହ, କି ଦୁଃଖରେ କେଜାଣି, ଝଡ଼ିପଡ଼ିଲା ରାସ୍ତାକଡ଼ ଧୂଳି ଉପରେ, ସେକଥା କିଏ ବା କାହିଁକି ବୁଝିବାକୁ ଚେଷ୍ଟା କରିବ ?

କେତେବେଳେ ଲଢକା କହନ୍ତି,"ଆଶ୍ଚର୍ଯ୍ୟ ଲାଗୁଛି ? ଏତେ କଥା କେମିତି ଜାଣିଲି ? ବଡ ସହଜ ! ଉନକର ଦେଖା, କେତେ ପ୍ରାଣଖୋଲା ଦୁଃଖସୁଖ ! ବଡ଼ ସରଳ ପିଲାଟି; ଅତୀତ, ବର୍ତ୍ତମାନ ଖୋଲାଭାଷାରେ ସବୁ ସେ କହିଗଲା ମୋ ଆଗରେ । କଥାକଥାକେ ଜଗୁଭାଇର ସ୍ନେହମମତା ବଖାଣୁଥାଏ । ଆଖି ତାର ଲୁହରେ ପୂରି ଯାଉଥାଏ... ।"

"ସବୁ ଠିକ ; କିନ୍ତୁ ତୋ ମନରେ କୃତଜ୍ଞତା ପଶିଲା କାହିଁକି ଲଢକା... ?"

"ହାଃ ହାଃ, ମୁଁ ଯେ 'କୁ' ତମେ ଯେ 'କୁ' । ଦୁନିଆଁଟା 'କୁ' ଆଡକୁ ଧାଏଁ ଅଗ । ନୋହିଲେ କି ଜଗନ୍ନାଥଙ୍କୁ ତମେ ଭଙ୍ଗା ମୂର୍ତ୍ତିରେ ଦର୍ଶନ କରୁଥାନ୍ତ ? ସେଦିନ ମନ୍ଦିରରେ ଏତେ ଲୋକଙ୍କ ଆଗରେ ? ଲୁଚାଲୁଚି ସବୁ ଦେଖିଛି, ମୋତେ ଛପାଇବ... ? କିନ୍ତୁ ଯାହାର ସେବା କରୁଛ, ସେ ତ ଖୋଲା ଚଢ଼େଇ । ଗଛଅଗରୁ ଯେତେବେଳେ ତାର୍ ସାଙ୍ଗ ଚଢ଼େଇଟି ସ୍ୱର ଉଠିବ, ତାକୁ ଅଟକାଇ ପାରିବ ତମେ ? ସେ ନିଶ୍ଚୟ ଉଡିଯିବ ।" ଯୁବକ କହନ୍ତି, "ଉଡ଼ ପାରିବ ନାହିଁ ଲୋ ଲଢକା, ତା ଗୋଡ଼ରେ ଶିଙ୍କୁଳି ଲାଗିଛି । ତାର ସାଥୀ ଚଢ଼େଇଟି ଦୁଏ ତ ଅଣ୍ଡ ଚର୍ ନ ପାଇ ମରୁଛି । ଫେରିବ ନାହିଁ, ଫେରିବ ନାହିଁ !"

ଏତିକି କହି ଯୁବକଟି ଉତ୍ତେଜିତ ହୋଇ ଫେର୍ ସବେଗେ ପ୍ରସ୍ଥାନ କଲା । ଲଢକା କବାଟ ବନ୍ଦ କଲା ସଶବ୍ଦେ । ବାଟକଡ଼ର କାଙ୍ଗାଳଟା କେଜାଣି କାହିଁକି ମୁଣ୍ଡର ଫୁର୍‌ଫୁର୍ ବାଳ ଟାଣୁଟାଣୁ ଅଖି ବନ୍ଦକରି ମନକୁ ମନ ଗୁଣି ହେଲା, "ଫେରିବ ନାହିଁ, ଫେରିବ ନାହିଁ... !" ତାପରେ କଣ ବଗୁର କେଜାଣି, ସେ ପାଗଳ ପରି ଢ଼ଳଢ଼ଳ ଅଗକୁ ଗ୍ଲଲା ।

## —ବୟାଳିଶ—

"ନା, ନା, ବଜର ଦେହକୁ ଜଗି ରଖି କାମ କର୍‌ବାକୁ ହେବ ଲକ୍ଷ୍ମି, ଏତେ ସ୍ୱଚ୍ଛଯାଏ ତେଇଁ ରହୁବାଟା ଠିକ୍ ନୁହେ ତ"— କହି ମହନ୍ତ ମହାରାଜ ଲକ୍ଷୀର ମୁଣ୍ଡ ଆଉଁଷିଲେ । ଦୁଇ ଆଖିରୁ ତାଙ୍କର ପ୍ରେମାଶ୍ରୁ ଝରିବାକୁ ଲାଗିଲା । ସେ ପୁଣି କହିଲେ, "ଯା, ଶୋଇ ପଡ଼ ଏଥର... ।"

ଉମା ଉଚ୍ଛ୍ୱସିତ ଆନନ୍ଦରେ କହିଲା, "ବାବା, ଏ ହତଭାଗ୍ୟ ରୋଗୀ ମୂଢ଼ଙ୍କୁ ପର୍ ନଜ୍ପର ମନେ କରିବାକୁ ଉପଦେଶ ଦେଇଛନ୍ତି ! ଏମାନଙ୍କୁ ଦୁଃଖଯନ୍ତ୍ରଣାରେ ସନ୍ତୁଳ ହେବାକୁ ଛାଡ଼ିଦେଇ ମୁଁ ଯାଇ ଆଶ୍ରମରେ ଶୋଇବି କପରି ? ମୋର ହାତରେ ଟୋପାଏ ସାଗୁ କି ବାର୍ଲି ଖାଇବାକୁ ସେମାନେ କପରି ଆକୁଳ ହୋଇ ଗୃହିଁ ରହିଛନ୍ତି, ଦେଖନ୍ତୁ ତ !"

"ଆଲୋ ପାଗଳି, ଏ କେଇଟା ଦିନ ଭିତରେ ତୋର ଦେହେଟା କେଡ଼େ ଖରାପ ହୋଇଗଲାଣି, ତୁ ବୁଝି ପାରୁଛୁ ? ଗୃହକରବାକୁ ତ ଅଛନ୍ତି !"

"ମୋ ଦେହେଟା ତ ଏମାନଙ୍କଠୁଁ ବଳି ପଡ଼ି ନାହିଁ । ଗୃହକରବାକଠି ତ ଏମାନଙ୍କୁ ନଜପର ମନେ କରିବେ ନାହିଁ ।"

"ତେବେ ମୁଁ କଥାରେ ପାରିବି ନାହିଁ ଲୋ ଲକ୍ଷ୍ମି, ରାଧୀ କାହିଁ ?"

"ଶୋଇବାକୁ ଗଲେଣି ।"

"ସଦାନନ୍ଦ ?"

"କେଜାଣି ? ହୁଏ ତ ରାତିଅଧରେ କେଉଁଠି ରୋଗୀ ଖୋଜି ବୁଲୁଥିବେ ।"

"ଧନ୍ୟ ତମେ ଭାଇଭଉଣୀ ଦୁଇଟି ! ଅଚ୍ଛା, କଣ କରୁଛ କର ! ବେଶି ଡେରି ଆଉ କରିବୁ ନାହିଁ ମା ; ଅନାଥ ପିଲାଗୁଡ଼ିକଙ୍କ ପାଇଁ ତୋର କଅଁଳ ମନଟି ଯେପରି ବିକଳ ହୁଏ, ମୋର ଅନାଥା ଝିଅଟି ପରି ତୁ, ତୋର ଦୁଃଖ ଦେଖିଲେ ମୋର ମନରେ ସେହିପରି ଭାରି କଷ୍ଟ ହୁଏ ଯେ !" ଏତିକି କହି ମହନ୍ତ ମହାରାଜ ସେଠାରୁ ଚାଲି ଆସିଲେ । ତାଙ୍କର ବୃଦ୍ଧ ପ୍ରାଣଟା ଉମା ଆଡ଼କୁ ସ୍ୱତଃ ଆହୁରି ନଇଁ ଆସିଲା ।

ଉମା ଘରକୁ ଘର ପଶି ଜଣ ଜଣ କରି ରୋଗୀମାନଙ୍କର ଖବର ବୁଝିଲା । କାହାର ଦେହରୁ ଲୁଗା ଖସି ଯାଇଛି, ନଦରେ ବ୍ୟାଘାତ ନ ଆଣି ତାକୁ ଅତିଯତ୍ନରେ ଘୋଡ଼ାଇ ଦେବା, କାହାର ତଣ୍ଟି ଶୁଖି ଯାଉଛି, ନଜ ହାତରେ ବାର୍ଲି ପେଇଦେବା, କାହାର ମୁଣ୍ଡ ବଥାଉଛି, ନଜେ ଯାଇ ମୁଣ୍ଡ ଚପି ଦେବା—ଇତ୍ୟାଦି । ସତେ କି ମର୍ତ୍ତ୍ୟ ମଙ୍ଗ ଦୟା ଲୋକଙ୍କର ଦୁଃଖ ଦୂର କରିବାକୁ ନଜେ ଆସି ଅବତୀର୍ଣ୍ଣ ହୋଇଛନ୍ତି ! ଅଁଧାର ଲହଡ଼ିବ କରୁଣ

ଗୃହାଣୀ, ହାତର କୋମଳ ପରଶ,କଣ୍ଠର ମଧୁର ସହାନୁଭୂତି-ସୂଚକ କେଇ ପଦ ମିଠା କଥାରେ ମରଣ-ମୁଖୀ କଙ୍କାଳସାର ରୁଗ୍ଣ ମଣିଷର ଦରମରା ହାଡ଼ରେ ସତେ କି ପୁଲକ-ଜୀବନ ସଞ୍ଚରି ଉଠୁଛି ।।

ରାତି ବେଶି ହେଲାଣି । ଉମା ରୋଗୀମାନଙ୍କର ଭାର କେତେଜଣ ଗୃହିଣୀଙ୍କ ଉପରେ ନ୍ୟସ୍ତକରି ପଦାକୁ ଆସିଲା । ସମୁଦ୍ର-ଭୂହା ଥଣ୍ଡା ପବନରେ ତାର ଦେହମନ ଶାନ୍ତ ହେଲା ; ଆଖି ପତା ମାଡ଼ି ମାଡ଼ି ପଡ଼ିଲା ଅବଶତାରୁ । ଏଥର ଶୋଇବାକୁ ଯିବାର କଥା; କିନ୍ତୁ ଆଜି ସଞ୍ଜପହରୁ ସଦାନନ୍ଦ ଭାଇଙ୍କର ଦେଖା ନାହିଁ କାହିଁକି ? ସେ କଣ ଏତେବେଳ ଯାଏ କେବଳ ରୋଗୀ ଖୋଜି ବୁଲୁଛନ୍ତି ? ନା,ଆଉ ଅପେକ୍ଷା କରି ହେବ ନାହିଁ; ହୁଏ ତ ସେ ଆସି ସାରିବେଣି ।

ଉମା ରାତିକ ପାଇଁ ରୋଗୀମାନଙ୍କଠାରୁ ବିଦାୟ ନେଇ ମଠକୁ ଫେରିଲା । ମହାନ୍ତ ବାବାଙ୍କ ଉପର ଖଞ୍ଜାର ଶୋଇବା-ଘରୁ ଆଲୁଅ ଲିଭିଲାଣି । ବୋଧ ହୁଏ ସେ ଶୋଇଲେଣି । ସେ ନିଃଶବ୍ଦରେ ତଳଖଞ୍ଜାକୁ ଆସିଲା । ତାର ଓ ରାଧୀର ଶୋଇବା ଘରର ଆଲୁଅଟା ମିଞ୍ଜି ମିଞ୍ଜି ହୋଇ ଜଳୁଛି । ହୁଏ ତ ରାଧୀ ତାରି ଅପେକ୍ଷାରେ ଚେଇଁ ରହିଛି । ଏଣେ ଡାହାଣ— ହାତ ଅଧିକାଂଶ ସଦାନନ୍ଦଙ୍କର କୋଠରୀଟା ଅନ୍ଧାର ଦିଶୁଛି । ସେ ଫେରି ନାହାନ୍ତି ପରି ? ଆଗରେ ଲକ୍ଷ୍ମୀ-ନାରାୟଣଙ୍କ ଛୋଟ ମନ୍ଦିର । ପହଡ଼ ପଡ଼ିଛି । ମୁଖଶାଳୀର ଗରୁଡ଼ସ୍ତମ୍ଭ ପାଖରେ ରଖା ହୋଇଥିବା ଘିଅ ଦୀପଟିର ଶଳିତା ଗର୍ଭକୁ ଜଳି ଆସିଲାଣି; ପ୍ରାୟ ଲିଭିବା ଉପରେ । ଯା ହେଉ, ଦେବତାଙ୍କୁ ପ୍ରଣାମ ନ କରି ସେ ଶୋଇବାକୁ ଯିବ ନାହିଁ । ଲକ୍ଷ୍ମୀ ମନ୍ଦିରକୁ ଯାଇ ଗରୁଡ଼ସ୍ତମ୍ଭ ପାଖରେ ମୁଣ୍ଡ ନୁଆଁଇ ଠାକୁରଙ୍କୁ ପ୍ରଣାମ କଲା ।

ଲକ୍ଷ୍ମୀ ଠାକୁରଙ୍କୁ ପ୍ରଣାମ କରି ଉଠି ଠିଆ ହେଲା । ଫେରି ଆସିବାକୁ ମନକରି ଫାଟକକୁ ମୁହଁ ବୁଲାଇ ଲିଭି ଆସୁଥିବା ଦୀପର ଥରିଲା ଆଲୁଅରେ ଦେଖିଲା, ପାହାଚ ପାଖରେ ଅଧେ ଅନ୍ଧାର ଅଧେ ଆଲୁଅ ଛାଇରେ ଲୁଚି ହୋଇ ଠିଆ ହୋଇଛନ୍ତି ସଦାନନ୍ଦ । କେଜାଣି କାହିଁକି, ତାର ଛାତିର ସ୍ପନ୍ଦନଟା ଟିକିଏ ଦ୍ରୁତତର ହୋଇ ଉଠିଲା । ସେ ଧୀରେ ଧୀରେ ପାହାଚ ଆଡ଼କୁ ଆସିବାର ଦେଖି, ସଦାନନ୍ଦ ମନ୍ଦିର ଭିତରକୁ ଆସିଲେ । ଉମା

ତାଙ୍କର ଗମ୍ଭୀର ଜ୍ୟୋତିହୀନ ମୁହଁକୁ ଚାହିଁ ପଚାରିଲା,"ସଞ୍ଜ ପହରରୁ ତମର ଦେଖା ନାହିଁ ଯେ ! ବେଗୀ ଖୋଜି ଖୋଜି ଏମିତି ଗୃହ ଅଧ କଲି ?"

ସଦାନନ୍ଦ କହିଲେ, "ମୁଁ ଆଜି ଘରୁ କୁଆଡ଼େ ଯାଇ ନାହିଁ ତ !"

"ତେବେ କଣ କରୁଥିଲ !" ଅଷ୍ଟର୍ଯ୍ୟ ହୋଇ ସେ ପଚାରିଲା ।

"ଶୋଇଥିଲି, ଊମା !"

"ଶୋଇଥିଲ ? କାହିଁକି ? ଦେହ ଭଲ ନାହିଁ କି ?" ଊମା ସଦାନନ୍ଦର ହାତ ଧରିଲା, ସତେ କି ବେଗ ପରୀକ୍ଷା କରିବାକୁ ! ଦରଲିଭା ଦୀପ ଅଲୁଅଟା ଛଇଁ ଛଇଁ ଦପ୍ କରି ଲିଭିଗଲା । ସଦାନନ୍ଦ ଊମାର ହାତଟିକୁ ନିଜ ହାତରେ ମୁଠାଇ ଧରି ବ୍ୟଗ୍ରକଣ୍ଠରେ କହିଲେ, "ଦେହ ମୋର ଭଲ ଅଛି ଲକ୍ଷ୍ମି, କେବଳ ମନଟା··· ।"

"ମନଟା ଭଲ ନାହିଁ ପରା ! କଣ ହୋଇଛି କି ?"

ସଦାନନ୍ଦ ଉତ୍ତର ଦେଇ ପାରିଲେ ନାହିଁ । ଊମାର ହାତରେ ହସ୍ତ-ଚାପ ଦେଇ ଭଙ୍ଗାକଣ୍ଠରେ କହିଲେ, "ତତେ ଗୋଟିଏ କଥା ପଚାରିବି, ଲକ୍ଷ୍ମି ?"

ଊମା ପରିହାସ କରି କହିଲା, "କିଛି ପଚାରିବାକୁ ମୋର ଅନୁମତି କେବେ ଲୋଡ଼ ନାହିଁ ତ ! ଆଜି ଏ ନୂଆ ପ୍ରଶ୍ନର ଦରକାର କଣ, କୁହ ?"

"ନା, କିଛି ନାହିଁ..." କହି ସଦାନନ୍ଦ ଦୀର୍ଘଶ୍ୱାସ ଛାଡ଼ିଲେ ।

ଊମା କହିଲା, "କଣ ଶୁଣେ ।"

ସଦାନନ୍ଦ ଛେପ ଢୋକି କହିଲେ, "ତୋର କଣ ବିଶ୍ୱାସ, ମୁଁ ତତେ ଭଲ ପାଏ ଲକ୍ଷ୍ମି ?"

ସଙ୍ଗେ ସଙ୍ଗେ ଊମା ଉତ୍ତର ଦେଲା, "ସେ କଥା ତମେ କହିପାରିବ !"

"ତେବେ, ତୋର ଧାରଣାଟା କଣ ?"

"କହି ପାରିବି ନାହିଁ ଠିକ୍ !" ଟିକିଏ ରହି କହିଲା, "ମୁଁ ଭାବେ, ଭଲପାଇବାଟା ସ୍ୱାର୍ଥର ଗୋଟାଏ ରୂପାନ୍ତର । ହୁଏ ତ ତମେ ମତେ ଭଲ ପାଅ··· ।"

"ସ୍ୱାର୍ଥ ପ୍ରଣୋଦିତ ହୋଇ ? ସେ ଭିନ୍ନିକ୍ କଥା; କିନ୍ତୁ ସ୍ୱାର୍ଥଟା ମୋର କଣ ଜାଣୁ ?"

"କପର ଜାଣିବ ?"

"ହଁ ତୁ ଜାଣୁ, ନିଶ୍ଚୟ ଜାଣୁ । ଯେ ଭୁଲ ପାଏ, ସେ କଣ ଭଲ ପାଇବା ଆଶାକରେ ନାହିଁ ଲକ୍ଷ୍ମି ?" ତାଙ୍କର କଣ୍ଠସ୍ୱର ଉଦାସ ହେଲା ।

ଉମା ଟିକଏ ଭାବି କହିଲା, "ଆଶା କରିବାର କଥା ତ !"

ବ୍ୟଗ୍ରକଣ୍ଠରେ ସଦାନନ୍ଦ ପଚାରିଲେ, "ତେବେ,...ତେବେ, ତୁ ମୋତେ ଭଲ ପାଉ ଲକ୍ଷ୍ମି !"

ସଦାନନ୍ଦ ଉଦ୍‌ବେଗରେ ହୋଇ ଉମାର ଦୁଇହାତ ଧରିଲେ । ତାଙ୍କର ଉଷ୍ଣ-ହାତର ସ୍ପନ୍ଦିତ ମୋହରେ ଉମା ସତେ କି ଅସ୍ୱସ୍ତି ହେଲା । ତାର ତରୁଣ-ରକ୍ତରେ ବିଜୁଳିର ଚମକ ଖେଳିଗଲା । ସେ ଧୀରେ ଧୀରେ ଅସ୍ପଷ୍ଟ ସ୍ୱରରେ ରହି ରହି କହିଲା, "କାହିଁକି ? ମୋର ଏପରି କୌଣସି ବ୍ୟବହାରରୁ କଣ ତମ ମନରେ ଅନ୍ୟଥା ଧାରଣା ହୋଇଛି ?" କହୁ କହୁ ଉତ୍ତେଜିତ ଉମାର ଚିନ୍ତାଗ୍ରସ୍ତ ମୁଣ୍ଡଟା ସଦାନନ୍ଦଙ୍କର ଛାତି ଉପରକୁ ଆଉଜି ଆସିଲା ।

ସଦାନନ୍ଦ ତାର ମୁଣ୍ଡଟିକୁ ନିଜର ଛାତି ଉପରେ ଚାପିଧରି କହି-ଉଠିଲେ ଆର୍ଦ୍ର କଣ୍ଠରେ, "ନା, ଲକ୍ଷ୍ମି, ନା,...ମୁଁ ବୁଝିଥିଲି ବଡ଼ ଭୁଲ... !" ସଦାନନ୍ଦଙ୍କର ମୁହଁଟି ନଇଁ ଆସିଲା ଉମାର ମୁହଁ ଉପରକୁ, ଆପେ ଆପେ ହାତ ଦୁଇଟି ବେଷ୍ଟିତ ହେଲା ତାର କଟି ଦେଶରେ !

## —ତେୟାଳିଶ—

କ୍ଷୁଧା—ତାର ଅନନ୍ତ କ୍ଷୁଧାର ପରିତୃପ୍ତି ନାହିଁ ଯେପରି ! ଯେତେ ଯେଉଁଠୁ ପାଇଲେ, ଖାଇଲେ ଜଗୁକୁ ଅଣ୍ଟୁ ନାହିଁ । ଓଲେଇ ଗାଈପରି ସବୁଥିରେ ମୁହଁ ମାରିବା ହେଲାଣି ତାର ଅଭ୍ୟାସ । ମରଣର ନିମନ୍ତ୍ରଣ ଆସିଲାଣି; ଦୁର୍ବଳ ଦେହ-ପିଞ୍ଜର ତେଜି ସ୍ୱାଧୀନ ଅମର ଆତ୍ମାଟା ତାର ମୁକ୍ତ ଆକାଶକୁ ଉଡ଼ିଯିବାକୁ ବସିଲାଣି; ତଥାପି ତାର ମନଟା ସେ ନିମନ୍ତ୍ରଣ ଗ୍ରହଣ କରିବାକୁ ନାରାଜ ! ଶତସହସ୍ର ଦୁର୍ବଳ ମାନବର କ୍ଷୀଣ ହୃତ୍‌ସ୍ପନ୍ଦନ ଗୋଡ଼ରେ ଦଳି ମଣିଷର ରକ୍ତରେ ମୁହଁହାତ ପଖାଳି ଯେ ଜୀବନର ଅଭିଯାନରେ ମରଣକୁ ଜୟ କରି ମୁଣ୍ଡ ଟେକିବ ବୋଲି ମଣିଥିଲା, ସେହି ଆଜି

ବାଟର ଧୂଳିକଣା ସଙ୍ଗେ ସମାନ ହୋଇଛୁ ! ସବଳର ପଦ-ପ୍ରହାର ମୁଣ୍ଡରେ ସହି ଅବସ୍ଥାର ଝଞ୍ଜା-ବାୟୁରେ ଇତସ୍ତତଃ ଉଡ଼ିଯିବାକୁ ପ୍ରସ୍ତୁତ ।

ବାଟ–ଢଡ଼ର ନର୍ଦ୍ଦମା, ନାନା ଆବର୍ଜନାରେ ପୂର୍ଣ୍ଣ । ଦୁର୍ଗନ୍ଧରେ ପାଖରେ ଠିଆହୋଇ ହେଉ ନାହିଁ । ପେଟ ବିକଳରେ ସ୍ତ୍ରୀଲୋକଟିଏ ନରକର ନାମାନ୍ତର ସେହି ନର୍ଦ୍ଦମା ପାଣିକୁ ହାତରେ ଘାଣ୍ଟୁଛି । ମଶାପଲ ଭୁଣ୍ ଭୁଣ୍ ହୋଇ ଉଡ଼ି ତାର ଦେହରେ ମୁହଁରେ ବସୁଛନ୍ତି । ମାଛିଗୁଡ଼ା ଭଣଭଣ ହୋଇ ଏ ପାଖ ସେ ପାଖ ଉଡ଼ି ବୁଲୁଛନ୍ତି । ଛୋଟ ଛୋଟ ଲାଙ୍ଗୁଡ଼ା ପୋକ ତାର ଦେହହାତରେ ଚଢ଼ି ସଲସଲ ହେଉଛନ୍ତି । ସେ ଦିଗକୁ ତାର ଲକ୍ଷ୍ୟ ନାହିଁ । ମୁଣ୍ଡର ଅଡ଼ୁଆ ଅଳବ୍ଧ ଦରପାକଲା ବାଳଗୁଡ଼ା ଲଙ୍ଗଳା ହାଡ଼ମୟ ପିଠି-ଅଧରେ ପଡ଼ିଛି । ବେଳେବେଳେ ସେ ନର୍ଦ୍ଦମା ପାଣିରୁ ହାତ ଉଠାଇ ବାଳଭିତରେ ଅଙ୍ଗୁଠି ଭର୍ତ୍ତି ଉକୁଣୀ କାମୁଡ଼ାରୁ ରକ୍ଷା ପାଇବାକୁ ମୁଣ୍ଡ କୁଣ୍ଡାଉଛି; ମନକୁ ମନ ଭୁଟ୍ ଭୁଟ୍ ହୋଇ କଣ କହୁଛି; ବେଳେ ବେଳେ ଗାରୁ ଗାରୁ ହୋଇ ଉଠୁଛି। ନର୍ଦ୍ଦମାର ବନ୍ଦ ପାଣିରୁ କଣ ଛାଣି ପାଟିରେ ଥୋଉଛି । କେତେବେଳେ ବା ଭୟରେ ଏ ପାଖ ସେ ପାଖକୁ ଚାହୁଁଛି । କିନ୍ତୁ ସେ ବଡ଼ ଭାଗ୍ୟବତୀ । ତାକୁ ବାଧା ଦେବାକୁ, ତାହାର ଖାଦ୍ୟରୁ ବାଣ୍ଟି ନେବାକୁ ପାଖରେ ଅନ୍ୟ କୌଣସି କାଙ୍ଗାଳ ତ ନାହାନ୍ତି, କୁକୁର ମଧ ତାକୁ ପରିତ୍ୟାଗ କରିଛନ୍ତି ।

ଜଗୁ ଲୋଭ ସମ୍ଭାଳି ପାରିଲା ନାହିଁ । ଆଖି ଆଗରେ ଖାଦ୍ୟ, ବିନା ଆୟାସରେ ମିଳିବ । ପାଇଲା ମାଲ ସେ ଛାଡ଼ିଦେଇ ଯିବ କାହିଁକି ? ସେ ଧୀରେ ଧୀରେ ନର୍ଦ୍ଦମା ପାଖକୁ ଗଲା । ତାକୁ ଦେଖିଲାକ୍ଷଣି ସ୍ତ୍ରୀଲୋକଟି ମୁଖ ବିକୃତ କରି ବିରକ୍ତ ହୋଇ ବକିବାକୁ ଲାଗିଲା ।

"ମଲା ମୋର, ଏ ଗୁଡ଼ା କିଏ ଲୋ ? ବସେଇ ଉଠେଇ ଦେବେ ନାହିଁ ଲୋ ମା ! ତମ ବୋପାର ମୁଁ କଣ ଧାରେ କ ରେ ? ମୋ ପଛରେ ସଦା-ବେଳେ ଗୋଡ଼େଇଛ ! ସୁନାରୂପା ଗହଣାଗାଣ୍ଠି ଯାହା ଥିଲା, ସବୁ ତ ଛଡ଼ାଇ ନେଲ, ଆଉ କଣ ଅଛି ରେ ?"

ପରିଚିତାର କଣ୍ଠସ୍ୱର ଶୁଣି ଜଗୁ ତାକୁ କାତରେ ଚାହିଁ ପଚାରିଲା, "କାହାକୁ କହୁଛୁ ତୁ ?" ସେ ଜଗୁର ମୁହଁକୁ କଟମଟ କରି ଚାହିଁ କହିଲା,

"କାହିଁକି ? ତମେ କାହିଁକି,ସମସ୍ତଙ୍କୁ । ଆଜି କିଏ ଅଛୁ,ମୋ ପାଖକୁ ଆସୁଛ ? ମୁଁ ଯେମିତି ବିଶ୍ୱାସରେ ବିଷ ଦେଇ ପରଗଳାରେ ଛୁରି ଦେଇ ଆଣିଥିଲି, ମୋ ଗଳାରେ ତେମେ ସେମିତି ଛୁରିଦେଇ ସବୁ ନେଇଛ । ବଡଦେଉଳରେ ବାନା ଉଡୁଛି, ମୁଁ ସତ କହୁଛି, ଉଧାର ସେରକ ଚିକିପା କହେ । ତା ବୋଲି କିଏ ମୋର ଏ ନର୍ଦ୍ଦମାର ପଙ୍କପାଣି ମୋ ମୁହଁରୁ କାଡିନେବ ?"

"ନେଉ, ନେଉ,···ସେଇ ଲୋ, ମୁଁ ସେଇ···।"

"କିଏ ବା ତୁ, ମରୁନୁ ।"

"ହିଁ ମରିବ, ଗଳାରେ ତୁ ଛୁରି ଦେଇ ଆସିଥିଲୁ, ଜଗୁ ମରୁ ନ ଥିଲା; ତେବେ ତୋଠୁଁ ଭଗବାନ୍ଙ୍କ ଗୃହିଁ ନ ଥିଲା । ଆଜି ବ ସେ ତୋର ନର୍ଦ୍ଦମାର ଭାଗ ଗୃହୁଁ ନାହିଁ ଲୋ,ସେ ମରିବାକୁ ଗୃହୁଁଛି···"—କହୁ କହୁ ତାର ଦୁର୍ବଳ କଣ୍ଠ ରୁଦ୍ଧ ହୋଇ ଆସିଲା ।

ନେତା ନର୍ବାକ୍ ହୋଇ ଘଡ଼ିଏ କାଳ ଜଗୁର ମୁହଁକୁ ଗୃହିଁ ରହିଲା । କେଜାଣି କାହିଁକି ତାର ଶୁଖିଲା କୋରଡ଼ ଆଖିରେ ତତଲା ଲୁହ ଝରି ଗଲା । ସେ ଅସ୍ପଷ୍ଟ ଥରିଲା ସ୍ୱରରେ କହିଲା, "ଶେଷକୁ ତୁ ବ···ନା, ନା, ତୁ ଜଗୁ ନହୁ, ପଧାନ ପୁଅ ଜଗୁ ନହୁଁ···"କହୁ କହୁ ସେ ପାଗଳ ପରି ମୁହଁରେ ହାତ ଘୋଡ଼ାଇ ମୁଣ୍ଡ ହଲାଇଲା ।

× × × ×

ଉଦୁଉଦିଆ ଦ୍ୱିପହର ବେଳ । ପୂର୍ବ ସହରର ନାନାସ୍ଥାନ ବୁଲି ଜଗୁ ଆସି ଲୋକନାଥଙ୍କ ପାଖରେ ମିଳିଲା । ମନ୍ଦିରର ଗଛପାଖ ପୋଖରୀ କୂଳରେ ତାର ପରି ଅନେକ କାଙ୍ଗାଳ ପଡ଼ିଛନ୍ତି ମହାପ୍ରଭୁଙ୍କ ଆଶ୍ରା ନେଇ । ସେ ମଧ ପୋଖରୀରୁ ପେଟେ ପାଣି ପିଇ ପୋଖରୀ ହୁଡାରେ ବସି ଦମ୍ ନେଲା । ଛାଇ ନିଦ ମାଡ଼ ଅସୁଛି, ହଠାତ୍ ଲୋକଙ୍କର କୋଳାହଳରେ ସେ ଆଖି ମେଲିଲା । ପୋଖରୀ ସେପାଖ ବାଲି-ପଡ଼ିଆ ଭିତରୁ ଜଣେ କାଙ୍ଗାଳ ବାହାରି ଆସୁଛି—ହାତରେ ଧରିଛି ଗୋଟାଏ ମଳ-ମଣିଷର ଖଣ୍ଡିଆ ହାତ, କହୁଣୀ ପାଖରୁ ଛିଣ୍ଡା ! କି ଭୟଙ୍କର, କି ଘୃଣିତ ସେ ଦୃଶ୍ୟ ! ବେଳେ ବେଳେ ଇଚ୍ଛା ହେଲେ, ଲୋକଟି ସେଇ ହାତକୁ ପାଟିରେ ଲଗାଉଛି ! କିଏ ଯେପରି ଗୃଷ୍ଟ ଖାଉଛି ! ଲୋକେ ଆଶ୍ଚର୍ଯ୍ୟ ହୋଇ ତାକୁ, ତାର କାର୍ଯ୍ୟକୁ

ଗୃହିଁ ରହୁଛନ୍ତି, ନିଜ ନିଜ ଭିତରେ ତୀବ୍ର ପ୍ରତିବାଦ କରି ସମାଲୋଚନା କରୁଛନ୍ତି; ଅଥବା ତାର କାର୍ଯ୍ୟକୁ ପସନ୍ଦ କରି ପ୍ରଶଂସା କରୁଛନ୍ତି; କିନ୍ତୁ କେହି ତାକୁ କିଛି କହୁ ନାହାନ୍ତି । ବରଂ ସେ ଯେତେବେଳେ ଆଗକୁ ଆଗକୁ ଗୁଲୁଛି, ଲୋକେ ଭୟରେ ହେଉ ବା ଘୃଣାରେ ହେଉ, ତାକୁ ବାଟ ଛାଡ଼ି ଦେଇ ଯାଉଛନ୍ତି ।

ଅନ୍ୟମାନଙ୍କୁ ଏ ଘଟଣା ନୂଆ ବା ଆଶ୍ଚର୍ଯ୍ୟକର ହୋଇପାରେ; କିନ୍ତୁ ଜଗୁ ପକ୍ଷରେ ତ ଏ ଦୃଶ୍ୟ ନୂଆ ନୁହେଁ । ଯେଉଁ ଜିକଲରେ ସେଦିନ ସେ ଏହିପରି ଗୋଟିଏ ପ୍ରଲୋଭନରେ ପଡ଼ିଥିଲା; କିନ୍ତୁ କୌଣସିମତେ ଆତ୍ମ-ରକ୍ଷା କରି ପଳାଇ ଆସିଥିଲା । ଆଜି କିନ୍ତୁ ସେ ଏହି ପ୍ରଲୋଭନକୁ ଏଡ଼ି ପାରିଲା ନାହିଁ । ନଦୀ ମାର ପଗୃପାଣି ଛାଣି ଅବର୍ଜନା ଘାଣ୍ଟି ପ୍ରାଣ ରଖିବା ପରିବର୍ତ୍ତେ ମଲା ମଣିଷର କଞ୍ଚା ମାଂସ ଖାଇବା ବରଂ ଭଲ । ଜଗୁ ପୋଖରୀ ହୁଡ଼ାରୁ ଉଠି ଲୋକଟିର ପାଖକୁ ଯାଇ ପଗୃରିଲା, "ମଣିଷ ମାଂସ ଖାଇ ପ୍ରାଣ ରଖିବା କଣ ମଣିଷର ଉଚିତ, ଭାଇ ?"

ଲୋକଟି ହସି ହସି ଖଣ୍ଡିଆ-ହାଡଟିକୁ ଅନ୍ଧାର ଥରେ ଗୃହିଁ କହିଲା, "ପ୍ରାଣ ରଖିବାର କଥା, ଉଚିତ ଅନୁଚିତ ମୁଁ ଜାଣେ ନାହିଁ; କିନ୍ତୁ ପ୍ରାଣ ରହୁଛି କେଉଁଠି ?"

ଜଗୁ ତାକୁ ଆଉ କିଛି ପଗୃରିଲା ନାହିଁ । କଣ ମନରେ ପାଞ୍ଚି କେଜାଣି ଲୋକଟି ଆସୁଥିବା ଦିଗକୁ ଲକ୍ଷ୍ୟକରି ସେ ଗୃଲିଲା । ଆଗରେ ବାଲି ପଡ଼ିଆ, କେତେଦୂର ଲମ୍ବି ଯାଇଛି, ଅନ୍ତ ପାଉ ନାହିଁ । ମଝିରେ ମଝିରେ କେଉଁଠି ବା ଗୋଠଖଣ୍ଡିଆ ଗାଈ ପରି ଗୋଟାଏ ଗୋଟାଏ ଝାଉଁ ବା ବାଦାମ ଗଛ ଉପରକୁ ମୁଣ୍ଡ ଟେକି ଉଠିଛି ବାଲିଗଦା ଉହାଡ଼ରୁ । ଜଗୁ କିଛିଦୂର ଯାଇ ଗୋଟିଏ ବାଲିଗଦା ଉପରୁ ଦେଖିଲା, ଅଳ୍ପ ଦୂରରେ ଗୋଟିଏ ଏକୁଟିଆ ବାଦାମ ଗଛତଳେ ତିନି ଗୃରିଜଣ ଲୋକ କାହାକୁ ଘେରି ବସିଛନ୍ତି । ସେ ଉତ୍ସାହରେ ପାଖକୁ ଗଲା । ପିଲାର ଶବଟିଏ, ଲୋକେ କି ଉଦ୍ଦେଶ୍ୟରେ କେଜାଣି ତାକୁ ଘେରି ବସିଛନ୍ତି ! ଜଗୁକୁ ଦେଖି ସେମାନେ ଭୟରେ ଉଠି ଠିଆହେଲେ; କିନ୍ତୁ ଜଗୁ ଅଗ ବଳି ପଡ଼ି କହିଲା, "ମୁଁ ତୁମଠୁଁ ଭାଗ ନେବାକୁ ଗୃହେଁ ଭାଇ... !"

ସେମାନେ ସନ୍ଦେହରେ ଜଗୁର ମୁହଁକୁ ଗୃହିଁ, ପରସ୍ପରକୁ ଅନାଅନି ହେଲେ । ଜଗୁ ଆଉ ସେମାନଙ୍କ ଆଡ଼କୁ ନ ଅନାଇଁ ବାଲି ଉପରେ ମୁହଁ ମାଡ ପଡ଼ିଥିବା ଛ, ସାତ ବର୍ଷର ଶିଶୁଟି ପାଖରେ ବସି ପଡିଲା । ଦୁର୍ବଳ ଦେହଟି ତଳକୁ ବାଲି ଉପରେ ପଡିଛି, ମୁଣ୍ଡ ଉପରେ ଖଣ୍ଡେ ଦନ୍ତୁରା ଛୁରି, ରକ୍ତବୋଳା ! ବାଲିରୁ ଠାଏ ରକ୍ତରେ ଓଦା ହେଲାପରି ଦଶୁଛି । ଶବର ଗୋଟିଏ ହାତ କହୁଣି ପାଖରୁ କଏ ଛିଣ୍ଡାଇ ନେଇଛି ! ବୋଧହୁଏ ସେହି ଲୋକଟି । ଜଗୁ କଣ ଭାବି କେଜାଣି ଥରିଲା ହାତରେ ଛୁରିଟି ବାଲି ଉପରୁ ଉଠାଇ ଧରିଲା । ଦୂରକୁ ହଟି ଯାଇଥିବା ଲୋକଗୁଡ଼ିକ ପୁଣି ପାଖକୁ ଲାଗି ଆସିଲେ । ଜଗୁ କ୍ଷୀଣକଣ୍ଠରେ କହିଲା, "କାହାର ସାହାଯ୍ୟ ନେଲେ··· ।"

କଏ ଜଣେ ବାଧା ଦେଇ କହିଲା, "ଓଃ, ବଡ଼ ଡେରି···!"

ଆଉ ଜଣେ କହିଲା, "ସିପେଇ ଜଗିଛନ୍ତି··· । ଦେଖିଲେ ମୁସ୍କିଲ ! ଲୁଚି କାମ... ।"

ଜଗୁ ପୁଣି ଚିନ୍ତିତ ହେଲା । ସେଠିକାଳାରେ ଲୋକେ ଅଧୀର ହୋଇ ପୁଣି ଶିଶୁ-ଶବଟିକୁ ଘେରି ବସିଲେ । ଜଗୁ ଛୁରିଟି ରଖି ଶବଟିର ମୁଣ୍ଡଧରି ଓଲଟାଇ ଦେଲା । ଶବଟିର ମୁହଁକୁ ଗୃହିଁବା କ୍ଷଣି ସେ ଚିତ୍କାର କରି ଚମକି ପଡିଲା । ଦୁର୍ବଳ ଦେହରେ ତାର ଶକ୍ତି ଆସିଲା କାହୁଁ କେଜାଣି ? ସେ କୁଦାମାରି ଖଣ୍ଡେ ଦୂରକୁ ଘୁଞ୍ଚି ଆସି ଆଖି ବିସ୍ତାରି ଠିଆ ହେଲା । ଗୋଡ଼ହାତ ତାର ଥରିବାକୁ ଲାଗିଲା । ଘନ ଘନ ହାତରୁ ଛୁରିଖଣ୍ଡ ତଳେ ଖସି ପଡ଼ିଲା । ସେ କଟମଟ କରି ଅପଲକ ନେତ୍ରରେ ଶବର ମୁହଁକୁ ଗୃହିଁ ରହିଲା ।

ଲୋକେ କୌଣସି କାରଣ ବୁଝି ନ ପାରି ଦୂରକୁ ଘୁଞ୍ଚି ଅବାକ୍ ହୋଇ ଠିଆହେଲେ । ଜଗୁର ଦୁଇ ଆଖିରୁ ଲୁହଧାର ଝରିବାକୁ ଲାଗିଲା । ସେ ଆଉ ଧୈର୍ଯ୍ୟ ଧରି ଅପେକ୍ଷା କରି ରହିପାରିଲା ନାହିଁ । ପାଗଳ ପରି ଆଗକୁ ଛୁଟି ଆସି ସେ ପୁଣି ସେହି ଶବ ପାଖରେ ବସି ପଡ଼ିଲା । ମୁଣ୍ଡ ନୁଆଇଁ ଶିଶୁର କଠିଣ କପାଳରେ ବାରମ୍ବାର ଚୁମ୍ବନ କରି ଆଖି-ଲୁହରେ ତାର ଶୀତଳ ଦେହ ଭିଜାଇ ଦେଲା । ଦୂରରେ ଠିଆ ହୋଇଥିବା ଲୋକମାନେ ଗୁଡ଼ିକ କେଜାଣି କାହିଁକି ସେଠାରୁ ଖସି ଗ୍ଲଲଗଲେ ସମୁଦ୍ର କୂଳକୁ ।

ଆହା ! ପଧାନକୁଳର ସମ୍ବଳ ବେଣୁଟି ! ଭାଗ୍ୟଦୋଷରୁ ତାର ଆଜି ଏ ଅବସ୍ଥା ! ନା, ଭାଗ୍ୟଦୋଷରୁ ନୁହେଁ; ତା ଦୋଷରୁ, ନେତା

ଦୋଷରୁ, ପଧାନଙ୍କ ଦୋଷରୁ  ସେ ହେଲା କ୍ଷୁଧିତ କାଙ୍ଗାଳଙ୍କର ଆହାର ! ପଧାନବଂଶ ଏହିଠାରୁ ଲୋପ ହେଲା ତେବେ ! ଜଗୁ ବେଣୁର ଶବଟିକୁ କାନ୍ଧରେ ପକାଇ ତାର ହାଡଖଣ୍ଡିଆ ଦେହଟିକୁ ଛାତିରେ ଭିଡ଼ି ଧରିଲା । ଜୀ.ଧ କାନ୍ଦ ତାର ଶୁଖିଲା ଆଖିର ; ତତଲା ଲୁହ ନିଃଶେଷ ହେଲା; ଦୁର୍ବଳ ଛାତିର ଅସରନ୍ତି କୋହ କି ଚିନ୍ତାରେ କେଜାଣି ଅଟକି ରହିଲା ! ସେ ଶବଟିକୁ ପୁଣି ତଳେ ଶୁଆଇ ଭାବିବାକୁ ଲାଗିଲା—"ସେ ବଞ୍ଚିବାକୁ ଚାହେଁ; ପଧାନ କୁଳର ଶେଷସମ୍ବଳ ସେ ... ! ଦୁର୍ବଳତାର ମରଣ ପଶିବ ତାହାଁକୁ ?" ଜଗୁ ସେଠାରୁ ଉଠି ଆଖିରୁ ଲୁହ ପୋଛି, ଏକମୁହାଁ ହୋଇ ଲୋକନାଥଙ୍କ ମନ୍ଦିର ଆଡେ ଚାଲିଲା । ପଛକୁ ଫେରି ଚାହିଁଲା ନାହିଁ ।

× × × ×

ସଞ୍ଜ ବୁଡ଼ି ଆସୁଛି । ମେଘ-ଫଟିକ ସାରା ଆକାଶ ଘୋଟି ଗଲାଣି । କାଙ୍ଗାଳମାନେ ନିଜ ନିଜର ସୁବିଧା ଦେଖି ଯିଏ ଯେଉଁଠି ଆଶ୍ରା ନେବାର ବ୍ୟବସ୍ଥା କଲେଣି । କେବଳ ହତଭାଗ୍ୟ ଜଗୁଟି ବଡ଼ଦାଣ୍ଡର ଗୋଟିଏ କଡରେ ଧୂଳି ଉପରେ ଶୋଇଛି ! ଉଠିବାର କି ଚାଲିବାର ଶକ୍ତି ତ ତାର ନାହିଁ; ଧୂସୁର ଧୂସୁରୁ ପାଖପିଣ୍ଡାର ଓଳିତଳେ ଆଶ୍ରା ନେବାକୁ ମଧ ତାର ବଳ ପାଉ ନାହିଁ । ଲୋକନାଥଙ୍କ ପାଖରୁ ଅସ୍ପ ଅସ୍ପ ତାଠାରୁ ଦୀ'ଗୁବାଟା ଝାଡ଼ା ବୋହିଗଲା । ତାର ଫଳରୁ ଆଜି ଜଗୁର ଏ ଅବସ୍ଥା । ମୁଣ୍ଡର ଲମ୍ବା ଝାମ୍ପୁରା ଅଳରା ବାଳଗୁଡ଼ା ରକ୍ତହୀନ ଶୁଖିଲା ମୁହଁକୁ ଘୋଡ଼ାଇ ରଖିଛି । ତାର ଶୁଖିଲା ମୁହଁ, କୋରଡ଼ ଆଖି ଦେଖି ତାକୁ ଆଉ ଜଗୁ ବୋଲି ଚିହ୍ନି ହେଉ-ନାହିଁ ସହଜରେ । ଫୁଙ୍ଗା ଦେହରେ ସେ ରାସ୍ତାକଡ଼ର ଧୂଳି ଉପରେ ଗଡ଼ୁଛି । ସଞ୍ଜପହରର ଶୀତଳ ବାଅରେ ଲୋମମୂଳ ତାର ଠାକୋର ଉଠୁଛି ।

ଲାସ୍ ବୁହା ବଳଦଗାଡି ଅସି ତାର ପାଖରେ ବଡ଼ଦାଣ୍ଡ ଉପରେ ଠିଆହେଲା । କେତେ ଯେ ଶବ ସେ ଗାଡ଼ିରେ ଲଦା ହୋଇଛନ୍ତି, ତାର ଠିକଣା ନାହିଁ । ଜଣେ ଲୋକ ଗାଡ଼ିର ଦାଣ୍ଡା ଛାଡ଼ି ଜଗୁ ନିକଟକୁ ଆସି ନଇଁପଡ଼ି ତାର ମୁହଁକୁ ଚାହିଁ କାଳ ଚାହିଁ ନାତିଦୀର୍ଘସ୍ୱରରେ କହିଲା, "ଲୋକଟା ବଞ୍ଚିଛି ରେ !"

ଆଉ ଜଣେ ଲୋକ ପାଖକୁ ଆସି ଟିକଏ ବିରକ୍ତ ହେଲା ପରି କହିଲା, "ଆଃ ! ବସିଛୁ ତ ବସିଛୁ । ଦେଖୁନୁ ନା, କେମିତି ବର୍ଷା ଉଠେଇ ଆସିଲଣି । ଗୋଟାଏ ଅସୁବିଧାରେ ଦଫା ଶେଷ । ଆଉ ଡେରି କାହିଁକି ?"

"ଉହୁଁ, ଭଲ ହେବ ନାହିଁ ...!"

"ଅରେ, ଧର ମ, ଆଉ ଥରେ ପୁଣି କିଏ ଆସିବ..." କହି, ଲୋକଟି ଜଗୁର ମୁଣ୍ଡ ଧରି ଉଠାଇଲା । ଆଉ ଜଣକ ତାର ଗୋଡ଼ ଧରି ଉଠାଉ ଉଠାଉ କହିଲା, "ପାପ ହେବ ଯେ...!"

"ରଖ ତୋ ପାପ..."—କହି ସେ ଜଗୁର ମୁଣ୍ଡକୁ ଉପରକୁ ଟେକିଲା ।

ଜଗୁ କିଛି ବୁଝିପାରି ନ ଥିଲା ପ୍ରଥମେ—ଦିଟା ଲୋକ ତା'ର ଗୋଡ଼-ମୁଣ୍ଡ ଧରି ଉଠାଉଛନ୍ତି କାହିଁକି ? ସେ ଆଖି ଖୋଲି ମଲିନ ହୋଇ ଆସୁଥିବା ଶେଷ ଦିବାଲୋକରେ ଶବଭର୍ତ୍ତି ବଳଦ ଗାଡ଼ିଟାଏ ଆଗରେ ଦେଖି କି ଭୟରେ କେଜାଣି, କରୁଣ ସ୍ୱରରେ ପଚାରିଲା, "ତମେ ସବୁ କିଏ ?"

ଜଗୁର ଅଚଳ ପ୍ରାୟ ଦେହଟିକୁ ଗଦା ଉପରେ ଗାଡ଼ି କଡ଼ରେ ଶୁଆଇ ଦେଇ ଜଣେ ଉତ୍ତର ଦେଲା, "ଆମେ ସବୁ ମଡ଼ାଚଣ୍ଡିଆ ଭାଇ ।"

ଜଗୁ ଗଦା ଉପରେ ଶୋଇ ବେଦନା ଅନୁଭବ କଲା । ମୁହଁ ବିକୃତ କରି ପଚାରିଲା, "ମୋତେ ନେଉଛ କୁଆଡ଼େ... ?"

ହସି ହସି ଲୋକଟି କହିଲା, "ବୁଝିପାରୁନୁ ? ମଶାଣିକି !"

"କାହିଁକି ଭାଇ ?"

"ଶୋଇବାକୁ । କେତେ ଲୋକ ତ ମଶାଣି ଖାଲରେ ଶୋଇ ସତୁଛନ୍ତି, ତୁ ବି ତାଙ୍କର ଭିତରେ ରହି, ତାଙ୍କର ପାଖରେ ଆଖି ବୁଜି ଶୋଇପଡ଼ିବୁ ଚିରଦିନ । ଖଛି କଣ... ?" ପୁଣି ସେମାନେ ତାର ଗୋଡ଼ମୁଣ୍ଡ ଧରି ଉଠାଇବାକୁ ଚେଷ୍ଟା କଲେ । ଜଗୁ ଗୋଡ଼ ଟାଣି ଆଣି କହିଲା, "କଣ୍ଟ ଥାଉଁ ଥାଉଁ... ?"

ଲୋକଟି ଉତ୍ତର ଦେଲା. "ଏଇ ବର୍ଷା ମାଡ଼ି ଆସୁଛି, ଆଉ ତୋତେ ଅପେକ୍ଷା କରି ରହି ହେବ ନାହିଁ । ସଖିଷ ଜୀବନ ପାଣି ଫୋଟକା, ଭାଙ୍ଗିଲା କରୁ କରୁ ଭାଙ୍ଗେ !"

ସେ କାନ୍ଦଣାସ୍ୱରରେ କହିଲା, "ମୁଁ ଯେ ମରି ନାହିଁ, ମଶାଣିକି ଯିବି କାହିଁକି ?"

ମରିବାର ଅଜ ବେଶି ଡେରି ନାହିଁ ତୋର !" କହୁ କହୁ ଜଗୁର ପ୍ରତିବାଦ ଓ ବାଧା ସତ୍ତ୍ୱେ ସେମାନେ ତାର ଦୁର୍ବଳ ଦେହଟିକୁ ନେଇ ଶଗଡ଼ ଉପରେ ପକାଇଲେ । ତାର କହିବାକୁ କି ଉଠି ବସିବାକୁ ସାଧ ନ ଥିଲା ସେତେବେଳେ । ସେ ସଂଜ୍ଞାହୀନ ହୋଇ ଗାଡ଼ି ଉପରେ ପଡ଼ିରହିଲା । ଗାଡ଼ ମଶାଣି ଉଦ୍ଦେଶ୍ୟରେ ଚଳାଇବାକୁ ସେମାନେ ପ୍ରସ୍ତୁତ କଲେ ।

ରାସ୍ତା କଡ଼ରେ ଦୂରେଇ ହୋଇ ଠିଆ ହୋଇଥିବା ଯୁବକଟିଏ ଆଗକୁ ଆସି କେଜାଣି କାହିଁକି, ଗାଡ଼ି ଅଟକାଇ ରଖିବାକୁ ଉପରକୁ ହାତ ଟେକିଲେ ।

## —ତେଇଶି—

ସନ୍ଧ୍ୟା ପରେ ଉମା ଓ ସଦାନନ୍ଦଙ୍କୁ ପାଖକୁ ଡାକି ସୁଧୀ କହିଲା, "ମୋର ଦେହ ଆଜି ଭଲ ଲାଗୁ ନାହିଁ କାହିଁକି, ମୁଁ ରୋଗୀ ଦେଖିବାକୁ ଯାଇ ପାରିବ ନାହିଁ ଲୋ, ତେମେ ଦୁହେଁ ଆଜି କଣ କରୁଛ, ଏକାଏକ କର—"

ଉମା କହିଲା,—"ଜଡ଼ ଚଲଖ ଏକା ତୁ ! ତତେ ଅବୋଇ ବସିବାକୁ କିଏ କହୁଥିଲା କି ? ମୁଁ ତ ସମସ୍ତଙ୍କୁ ଦେଖୁଥିଲି, ତୁ କହିଲାକୁ ସିନା ରୋଗୀ ବଣ୍ଟା ହେଲା···ଏତେବେଳକୁ ପୁଣି କାହିଁକି ପଚାରୁଛୁ ?"

ସୁଧୀ କହିଲା,—"ତୋର ଭଲକୁ ସିନା ମୁଁ ଏହା କରିଥିଲି । ଧନ ନାହିଁ, ସୁଖ ନାହିଁ, ଖିଆପିଆ ସବୁ ଭୁଲି ରୋଗସେବା କରି କରି ତୋର ମୁହଁଟା କଳାକାଠ ପଡ଼ିଗଲା···। ହଉ ତେବେ ଲୋ, ନ କଲେ ନାହିଁ; ମୁଁ ମୋ କାମ ତେବେ ବୁଝିନେବି ।"

ଉମା ଲଜ୍ଜିତ ହୋଇ କହିଲା,—"ତୁ ଯା, ଶୋଇବୁ ଯା; ମୁଁ ସବୁ କରିବି ।" ଏତିକି କହି ଉମା ସେଠାରୁ ଚାଲି ଆସିଲା । ସଦାନନ୍ଦ ତାର ଅନୁଗମନ କଲେ ।

ରାତି ଦି'ଘଡ଼ି ହେବ, ଘରକୁ ଘର ପଶି ଉମା ରୋଗୀମାନଙ୍କର ଅବସ୍ଥା ଦେଖି ପ୍ରତୀକାରର ବ୍ୟବସ୍ଥା କରି କରି ଆସୁଛି । ସଦାନନ୍ଦ ତାର ପଛେ ପଛେ ତାକୁ ସାହାଯ୍ୟ କରିବାକୁ ଯାଉଛନ୍ତି । ଅଧ-ଅଲୁଅ ବାରଣ୍ଡା କଡ଼ରେ ସଦାନନ୍ଦ ଉମାର ହାତ ଧରି ଅନୁଯୋଗ କରି କହିଲେ—"ଉମା, ଛଇ ପହରିମୁଁ ଅଛି ତୋର ପଛେ ପଛେ କାହିଁକି ରହିଛ, ତୁ ଜାଣୁ ନାହିଁ ?

ମଫସଲ ଗାଁର ସାଧାରଣ ହାଡୁଅଘରର ଝିଅଟାଏ ତୁ, ତୋ ଭିତରେ ଏତେ ଗୁଣ ଲୋ...। ପରକୁ ତୁ ଏପରି ଆପଣାର କରି ସେବା କରିପାରୁ ? ଭୟସଂକୋଚ, ଆଳସ୍ୟ କୋଠି ଟିକିଏ ହୋଇ ନାହିଁ...।"

"ଥାଉ ଥାଉ । ଏତେ ଗୁଡ଼ାଏ ପ୍ରଶଂସା ମୋର ଦରକାର ନାହିଁ—" କହି ଊମା ହସିଲା । ମନ ଭିତରେ ତାର ଗୋଟାଏ ଅଜଣା ସନ୍ଦେହର ଭାବ ଉଦ୍ରେକ ହେଲା । ସଦାନନ୍ଦଙ୍କ ମୁହଁରୁ "ଊମା" ଶବ୍ଦଟି ଶୁଣି, ସେ ଦୁଇ ପାଦ ଅଗକୁ ଯାଇ କହିଲା—"ରୋଗୀଙ୍କର କାମ ତ ସରିଲା, ଚାଲ ଏଥର ମା'ର ଦେହ କିପରି ଅଛି ଦେଖି ଆସିବା । ମୋର ଦେହଟା ବି ଆଜି ତାହାଁକ ଭଲ ଲାଗୁ ନାହିଁ ।"

ସଦାନନ୍ଦ କହିଲେ—"ବାପ୍ ରେ ବାପ୍ ରେ ! ଏ ଯେଉଁ ଛନଦନିଆ ଝଡ଼ବର୍ଷା, ଯେତେ ସାବଧାନରେ ରହିଲେ ବି ଭଲ ଲୋକର ଦେହ ଖରାପ ହେବାର କଥା । ଶୀଘ୍ର କାମ ସାରି ଯା ଟିକେ ଶୋଇ ପଡ଼ିବୁ ଊମା । ମୁଁ ତୋର ରୋଗୀକୁ ଜଗି ରହିବି ସାରାରାତି ।"

ଊମା କହିଲା—"ସମସ୍ତଙ୍କୁ ତ ଦେଖି ସାରିଲି...।"

"କାହିଁ, ସେ ଘରେ ଯେଉଁ ରୋଗୀଟା ଅଛି—"

"କିଏ ଗୋଟାଏ ଅଛି କି ? ମୁଁ ଜାଣେ ନାହିଁ..."

"ଅହା, ସେ ତ ଗୋଟାଏ ବଡ଼ ମଜାର କଥା ଲୋ ଊମା ! ଛନଦନ ଦଳେ ଦଶ ଜଣ ହାଡ଼, ଏ ଲୋକଟାକୁ ବାନ୍ଧି ଥାଉଁ ଥାଉଁ ମଡ଼ାଗାଡ଼ିରେ ପକାଇ ମଶାଣିକି ନେଉଥିଲେ । ଭାଗ୍ୟକୁ ମୋର ହାତରେ ପଡ଼ିଲା; ନୋହିଲେ ଆଜି ସେ ସତିପତ ମାଟି କାଦୁଅରେ ମିଶିଯାଆନ୍ତା !"

ଊମା କହିଲା,—"ଲୋକଟା ବଞ୍ଚିଥିଲା ବୋଲି କଣ ହାଡ଼ମାନେ ଜାଣନ୍ତି ନାହିଁ ?"

ସଦାନନ୍ଦ—ବେଶ ଜାଣନ୍ତି । ସେ ନିଜେ ବି ମରି ନାହିଁ ବୋଲି ଡାକ ଛାଡୁଥାଏ ।

ଊମା—ତେବେ ବି ?

ସଦାନନ୍ଦ—ଏତିକି ମୂର୍ଖ, କଣ କହୁଛୁ । ଯାହାହେଉ, ଲୋକଟାକୁ ଉଧାରି ଆଣିଲି । ଯାଗା ଅଭାବରୁ ତାକୁ ମା ସେଇ ଏକୁଟିଆ ଘରେ ରଖିଛି । ବେଶ୍ ଭଲ ଅଛି ।

ଊମା—ମୁଁ ତାକୁ ଦେଖି ନାହିଁ ଅଜଯାଏ, ତ୍ରିଜନେ କି ମତେ ଏ କଥା ଆଜଯାଏ କହି ନାହିଁ ।

ସଦାନନ୍ଦ—ମନେ ନାହିଁ କହିବାକୁ । ଆ, ତାଙ୍କୁ ଦେଖି ଆସିବୁ ।

ଉମାକୁ ସଙ୍ଗରେ ନେଇ ସଦାନନ୍ଦ ରୋଗୀଥିବା ଘର-ଭିତରକୁ ଗଲେ । ଛୋଟ କୋଠରିଟି; ଗୋଟିଏ କଡ଼ରେ ତକ୍ତପୋଷ ଉପରେ ଲୋକଟି ଲମ୍ବ ହୋଇ ଶୋଇଛି । ଗୋଡ଼ରୁ ମୁଣ୍ଡଯାଏ ଘୋଡ଼ା ହୋଇଛି ଖଣ୍ଡେ ସରୁ ବଛଣା ଚଦର । କାନ୍ଥ-ଠଣାରେ ପୋଲଙ୍ଗ ତେଲର ଦୀପ ଜଳୁଛି । ଖୋଲା କାନ୍ଥ-ଆଲମାରିରେ କେତେଗୁଡ଼ିଏ ମାଟିର ପାତ୍ର ରଖା ହୋଇଛି । ପାଖରେ କେହି ନାହିଁ ।

ଉମା ଓ ସଦାନନ୍ଦ ରୋଗୀ ନିକଟକୁ ଯାଇ ତାର ଆବୃତ ଦେହ-ମୂର୍ତ୍ତିକୁ ଚାହିଁ ରହିଲେ କ୍ଷଣକାଳ । ସଦାନନ୍ଦ ଧୀରେ ଧୀରେ କହିଲେ—“ତାକୁ ଟିକେ ନିଦ ହୋଇ ଯାଇଛି ପରା ।”

ଉମା କହିଲା—ହିଁ, ଉଠାଇବା ଦରକାର ନାହିଁ, ଚାଲ ଫେରି ଯିବା ।

ସଦାନନ୍ଦ କଣ ଭାବି କହିଲେ—ଏ ଘର ସେ ଘର ନସର୍ ପସର ହୋଇ ଗୋଡ଼ ରହି ଗଲାଣି; ଚାଲ, ସେହି ଖଟ ଉପରେ ଟିକେ ବସିବା ଉମା—!

କୋଠରିର ସେ ପାଖକୁ ଖଣ୍ଡେ ଖୋଲା ପୁରୁଣା ଖଟ ପଡ଼ିଥିଲା । ଦୁହେଁ ଯାଇ ତାର ଉପରେ ଘଡ଼ି-ଘଡ଼ି ବସିଲେ । ଉମା କହିଲା—“ତା ହେଲେ ଅପେକ୍ଷା କର । ରୋଗୀର ନିଦ ଭାଙ୍ଗିଲେ ତାକୁ ମନାଏ ବାର୍ଲି-ପାଣି ଦେଇ ଶୋଇବାକୁ ଯିବା ।” କିଛିକ୍ଷଣ ତୁନି ରହି କହିଲା—“ତମେ ବଡ଼ କ୍ଲାନ୍ତ ହୋଇ ପଡ଼ିଲଣି ଦେଖୁଛି, ରାତି ବି ତ ବେଶି ହେଲାଣି; ଯାଅ ଶୋଇ ପଡ଼ିବ । ମୁଁ ଟିକିଏ ଡେରି କରି ଯିବି, ମା’କୁ କହିଦେବ ।”

ସଦାନନ୍ଦ—ତୁ ବି ତ କମ୍ କ୍ଲାନ୍ତ ହୋଇନୁ, ବରଂ ତୁ ଯା, ମୁଁ ରହୁଛି ।

ଉମା—ନା, ତା ହେବ ନାହିଁ, ବରଂ—

ସଦାନନ୍ଦ—ବରଂ ଦୁଇଜଣ ରହିବା ।

ଦୁହେଁ ନୀରବରେ ବସି ରୋଗୀଟିକୁ ଚାହିଁ ରହିଲେ । କିଛି ସମୟ ପରେ ସଦାନନ୍ଦ ମୁହଁ ଖୋଲିଲେ, “ଉମା, ଆଚ୍ଛା । ସତ କହିଲୁ, ତମ ଘରକୁ ଫେରି ଯିବାକୁ ଆଜିକାଲି ତୋର ମନ ହେଉ ନାହିଁ ?”

ଉମା ବିସ୍ମିତ ହେଲା । ହଠାତ୍ ସଦାନନ୍ଦ ଏପରି ଗୋଟାଏ ପ୍ରଶ୍ନ ପଗ୍ଭରିବେ ବୋଲି ସେ କେବେହେଲେ ଆଶା କରି ନ ଥିଲା । ସଦାନନ୍ଦଙ୍କ ମନରେ ଏପରି ଗୋଟାଏ ପ୍ରଶ୍ନର ଆବିର୍ଭାବ ହେଲା ବା କାହିଁକି ? ଉମା ଭାରି ଭାରି କହିଲା, "ଅନାଥା ମୁଁ, ମୋର ଘର ସଙ୍ଗେ କି ସମ୍ବନ୍ଧ ଅଛି ? ମୁଁ ଯେଉଁଠି ରହିଲି, ସେହି ତ ମୋର ଘର ··· ।"

ସଦାନନ୍ଦ କହିଲେ, "କିନ୍ତୁ ଯଦି କେହି ତୋର ଆପଣାର ଲୋକ ଆସି ତୋତେ ଘରକୁ ଫେରାଇ ନେଇ ଯିବାକୁ ବସେ, ତୁ ଆମକୁ ଛାଡ଼ି ନିଶ୍ଚୟ ତାର ସଙ୍ଗେ ଗ୍ଭଲିଯିବୁ ।"

ଉମା କହିଲା, "ମୋର ସେପରି ଆତ୍ମୀୟସ୍ୱଜନ କେହି ନାହାନ୍ତି । ଯେଉଁମାନେ ଥିଲେ, ସେମାନେ ଶତ୍ରୁଠୁଁ ବଳି ପର—ଅଜି ଦୁର୍ଭିକ୍ଷର ଦାଉରୁ ସେମାନେ ବାଟର ଭିକାରି । ମୁଁ ଜାଣେ, ମୋ ପାଇଁ କାହାରି ମନ ତଟେ ନାହିଁ । କେହି ମୋତେ ଫେରାଇ ନେବାକୁ ବ୍ୟସ୍ତ ନାହାନ୍ତି ।" କିଛି ସମୟ କଣ ଯେପରି ଚିନ୍ତା କରି କହିଲା, "ପ୍ରାଣ-ବିକଳରେ ପେଟପାଇଁ ମଠରେ ଆଶ୍ରୟ ନେଇଛି···କେତେଦିନ ଗ୍ଭଲୁଛି ଗ୍ଭଲୁ...।" ସଦାନନ୍ଦ କହିଲେ, "ସଂସାରର ଜଞ୍ଜାଳରୁ ଦୂରରେ ରହି, ଆଜନ୍ମବ୍ରହ୍ମଚାରୀ ହୋଇ ସମୟ କାଟିବାକୁ ମୋର ଜୀବନଠାରେ ତ ପୁଣି ପାଣି ଛଡ଼ାଇ ଦିଆହୋଇଛି । ପାରେ ନ ପାରେ, ଜୀବନ ମନକୁ ସେହି ଭାବରେ ନିୟନ୍ତ୍ରିତ କରି ବେଳ କାଟିବାକୁ ହେବ । ତୁ ମଧ୍ୟ ଏହି ଆଦର୍ଶରେ ତୋର ଜୀବନକୁ ଚଳାଇ ପାରୁ... ।" କେଜାଣି କାହିଁକି ସଦାନନ୍ଦ ତଳକୁ ମୁହଁ କଲେ ।

ଉମା ସାମାନ୍ୟ ହସି କହିଲା, "ହଁ, ତା ଛଡ଼ା ତ ମୋର ଅନ୍ୟ ଉପାୟ ନାହିଁ, କିନ୍ତୁ ଆଦର୍ଶ ଜନସଠା କଣ, ମୁଁ ଠିକ ବୁଝେ ନାହିଁ । ସେଠା ହୁଏତ ଗଲା । ସତୀ ସୀତାଙ୍କର ଆଦର୍ଶ ଚରିତ କହୁ କହୁ ତମେ ତ ପୁଣି ଉତ୍ତେଜନାରେ ମୋତେ ଚୁମ୍ବନ କର । ସତୀ ସାବିତ୍ରୀଙ୍କ ଆଦର୍ଶ କଥା ଭାବୁ ଭାବୁ ମୁଇଁ ତ ପୁଣି ତମରି ଛାତି ଉପରକୁ ମୁଣ୍ଡ ନୁଆଇଁ ଦିଏ । କାହିଁକି, କହ ତ ?" କହୁ କହୁ ଉମା ଅଟକିଗଲା । ସନ୍ଦେହ ପୂର୍ଣ୍ଣ ଚାହାଣୀରେ ସୁପ୍ତ ରୋଗୀକୁ ଗ୍ଭହିଁଲା । ରୋଗୀଟି ଅସ୍ଥିର ହୋଇ ମୁହଁ ଉପରୁ ସରୁ ଚାଦରଟି ହଟାଇ ଦେଇ ମୁହଁ ବୁଲାଇ ତାଙ୍କରି ଆଡ଼କୁ ଗ୍ଭହିଁଛି ।

ଉମା ବ୍ୟସ୍ତହୋଇ ଉଠିଯାଇ ରୋଗୀର କପାଳରେ ହାତ ମାରିଲା । ରୋଗୀଟି ଆଖି ବୁଜି ଶୋଇଛି । ତାର ଦୁର୍ବଳ ହାଡୁଆ ମୁହଁଟି ଦେଖି ମନ ଭିତରେ ଉଠି ଆସୁଥିବା ଗୋଟିଏ ଅସ୍ପଷ୍ଟ ଚିନ୍ତା ଆପେ ଆପେ ତିରୋହିତ ହେଲା । ସେ ଧୀରେ ଧୀରେ ଚଦରଟି ତାର ମୁହଁ ଉପରକୁ ଟାଣି ପୁଣି ସଦାନନ୍ଦଙ୍କ ପାଖକୁ ଫେରି ଆସିଲା ।

ସଦାନନ୍ଦ ମୁଖ ଗମ୍ଭୀର କରି କଣ ଯେପରି ଚିନ୍ତା କରୁଥିଲେ । ଉମା ହସି ହସି କହିଲା, "କାହିଁକି, ସେ କଥା ତୁମେ ଭଲ କରି ଜାଣ; ମୁଁ ବି ଜାଣେ । ଉତ୍ତେଜନା, ମୋହ, ରୂପ, ରୂପ । ଆଜନ୍ମବ୍ରହ୍ମଚାରୀର ମଧ୍ୟ ଏ ସବୁ ଆସିବା ନିତାନ୍ତ ସ୍ୱାଭାବିକ । କେବଳ ଅନ୍ୟର ଆଖିରେ ଧୂଳି ଦେବାକୁ ବାହାରର ଏ ଯେଉଁ ଭାଇଭଉଣୀ ସମ୍ବନ୍ଧଟା, ସେଟା ତ ମଣିଷର ମନରେ, କାର୍ଯ୍ୟରେ ବାଧା ଆଣେ ନାହିଁ; ବରଂ ତାର ଉଦ୍ଦେଶ୍ୟ ପୂରଣରେ ସାହାଯ୍ୟ କରେ—ତା ପାଇଁ ନରକର ବାଟ ସଫା କରି ଦିଏ ଅନ୍ୟର ଆଖିରେ ପରଦା ଟାଣି ।"

ସଦାନନ୍ଦ ଅବ୍ୟକ୍ତକଣ୍ଠରେ କହିଲେ, "ତୁ ଏ ସବୁ ଆଜି କଣ କହୁଛୁ ଉମା...?"

"ମିଛ ତ କିଛି କହୁ ନାହିଁ । ହୁଏ ତ ତୁମ ମନରେ କଷ୍ଟ ଦେଉଛି, ହୁଏ ତ ତୁମର ଆଶାରେ ବାଧା ପଡ଼ୁଛି; କିନ୍ତୁ ମୁଁ ଯେ ନରକ ବରଣ କରୁଛି ଜୀବନ ପାଇଁ, ପେଟ ପାଇଁ । ମୋର ନିଜର ବୋଲି ଗୋଟାଏ କିଛି ଅଛି ନାହିଁ । ତମର କାର୍ଯ୍ୟରେ, ତମର ଆଶାରେ ବାଧା ଦେବି କାହିଁକି ? ତମର ଆଶ୍ରିତ ମୁଁ, ଯେଉଁ ବାଟରେ ଚଳାଇବ, ମୁଁ ଚାଲିବାକୁ ବାଧ୍ୟ ।" କହୁ କହୁ ଉମାର ଦୁଇଆଖି ଲୁହରେ ଭରିଗଲା ।

ସଦାନନ୍ଦ ଆର୍ଦ୍ରକଣ୍ଠରେ କହିଲେ, "ଉମା, ସେପରି ଭାବିବା ତୋର ଭୁଲ । ତୁ ତ ଜାଣୁ, ମୁଁ ତତେ କେତେ ଭଲ ପାଏ ! ତୋ ବିନା ମୋର ଶକ୍ତ ହୃଦୟଟା ହାହାକାର କରି ଉଠେ ।"

ଉମା—ଜାଣେ, ଭଲ ପାଅ ମୋର ରୂପକୁ, ମୋର ଯୌବନକୁ । ମୁଁ ବି ଭଲ ପାଏ...।"

"ମୋର ରୂପକୁ, ମୋର ଯୌବନକୁ ?"

"ତା ଛଡ଼ା ଆଉ କଣ ? ମୋତେ ନେଇ ତମେ ସଂସାର କରି ପାରିବ ନାହିଁ, କି ତମକୁ ଆଶ୍ରା କରି ମୁଁ ଦୁନିଆଁ ଆଗରେ ଲଜରେ ମୁଣ୍ଡ ଟେକି ଚାଲି ପାରିବ ନାହିଁ ।"

"ସଂସାର ନ କରି କଣ ମଣିଷ ସୁଖ ଆନନ୍ଦରେ ବଞ୍ଚିପାରେ ନାହିଁ ?"

"ନ ପାରିବ କାହିଁକି ?"

"ତେବେ ତୋର ଦୁଃଖର ଆଉ କିଛି କାରଣ ନାହିଁ ଉମା, ଉପଭୋଗ ଆନନ୍ଦ ପାଇଁ ତ ମଣିଷର ଦ'ଦିନିଆ ଜୀବନଟା ! ସେଇକିର ଅଭାବ ନ ରହିଲେ, ଯେ କୌଣସି ଅବସ୍ଥାରେ ମଣିଷ ସୁଖରେ ରହିପାରେ । ନୁହେଁ କି ?"

"ହୁଏ ତ ପାରେ ।" ଉମାର ଆଖି ସଜଳ ହେଲା ।

"କିନ୍ତୁ ଅତୀତକୁ ଭୁଲିଲେ ସିନା ମଣିଷ ସୁଖୀ ହୋଇପାରେ ।"

"ଅତୀତ ! ମୋର ତା ସଙ୍ଗେ କି ସମ୍ପର୍କ ?"

"ସେଇ କଥା କହ । ଆଜି ଯଦି ତମ ଗାଁର ପଧାନ ପୁଅ, ଜଗବନ୍ଧୁ···।" ଉମା ଚମକି ପଡ଼ିଲା । ସେ ଦିଗକୁ ଲକ୍ଷ୍ୟ ନ କରି ସଦାନନ୍ଦ କହିବାକୁ ଲାଗିଲେ, "ଜଗବନ୍ଧୁ ଫେରି ଆସେ ? ସେ ତୋତେ ଭଲ ପାଏ !"

ଉମା କହିଲା, "ହଁ, ଜଗୁ ଭାଇ ମୋତେ ଭଲ ପାନ୍ତି । ମୋ ବୋଉ... ନା ମୁଁ ତାଙ୍କୁ...।"

"ଭଲ ପାଉ ତ ?"

"କିନ୍ତୁ ସେ କି କେବେ ଫେରି ଆସିବେ ? ଦୁର୍ଭିକ୍ଷ-ରାକ୍ଷସର ମୁହଁରୁ ସେ କି ଉଦ୍ଧାର ପାଇ ଫେରି ଆସିବେ ? ଅସମ୍ଭବ !"

"ଅସମ୍ଭବ ନୁହଁ, ଆସିଲେ ବା ତୋ ସଙ୍ଗେ ତାର ସମ୍ବନ୍ଧ କଣ ? ସେ ତ ବାଉରି କାଙ୍ଗାଳ, ନିଃସ୍ୱ !"

"ହିଁ, ସେ ବାଉରି କାଙ୍ଗାଳ, ନିସ୍ୱଃ---।" କହି ଉମା କଣ ଭାବିବାକୁ ଲାଗିଲା । ଦୁଇ ଆଖିରୁ ତାର ଦୁଇଧାର ତତଲା ଲୁହ ଝରି ପଡ଼ିଲା । ସଦାନନ୍ଦ ନ ଦେଖିଲା ପରି ବ୍ୟଥାଭରା କଣ୍ଠରେ କହିଲେ, "ରାତି ବେଶି ହେଲାଣି ଉମା, ଶୀଘ୍ର ରୋଗୀଟିକୁ ଖୁଆଇ ଦେ···।"

ଉମା ନୀରବରେ ଖଟ ଉପରୁ ଉଠି ଯାଉ ଯାଉ ସଦାନନ୍ଦ ତାର ହାତ ଧରି ଅଟକାଇ ରଖିଲେ । ତାର ଅଶ୍ରୁସିକ୍ତ ଗଣ୍ଡରେ ଚୁମ୍ବନ କରି

ପ୍ରେମାକୁଳ କଣ୍ଠରେ କହିଲେ, "ବଡ଼ ଅଭିମାନିନୀ ତୁ ଉମା, ଟିକିଏ କଥାରେ ତୁ ଏତେ କାନ୍ଦୁ ? ତୋ ଆଖିରେ ଏତେ ଲୁହ ?" ଉମା ତାର ଉତ୍ତର ଦେଲା ଗୋଟିଏ ଦଳାଚକଟା ଆତ୍ମଗ୍ଳାନି ହସରେ ।

ସଦାନନ୍ଦ ଖଟ ଉପରେ ବସି ଉମାର ପ୍ରତୀକ୍ଷାରେ ରହିଲେ । ଉମା ଧୀରେ ଧୀରେ ରୋଗୀର ପାଖକୁ ଗଲା ।

ରୋଗୀର ମୁହଁକୁ ଗୁଦରଙ୍କ କାନ୍ଧ ଉମା ଦେଖିଲା, ତାର କାଟିଆ ଦୁଇ ଚକ୍ଷୁକୋଣରୁ ଲୁହଧାର ଗଡ଼ି ପଡ଼ୁଛି । କେଜାଣି କଣ ଭାବି, ସେ ମୂଢ଼ଭାବାପନ୍ନରେ କ୍ଷଣକାଳ ତାର ମୁହଁକୁ ଚାହିଁ ରହିଲା । ଧୀରେ ଧୀରେ ଲୁଗାକାନିରେ ତାର ଆଖିର ଲୁହ ପୋଛି ଦେଉ ଦେଉ ଦୁଇ ଆଖି ତାର ପୁଣି ଲୁହରେ ଭରିଗଲା । ଅତୀତ କାଳର ଗୋଟିଏ ସ୍ୱପ୍ନମୟ ଛବି ତାର ଆଖି ଆଗରେ ଠିଆ ହେଲା ଆସି । ତାର ମୁଖରୁ ଭାଷା ବାହାରିଲା ନାହିଁ ।

ରୋଗୀଟି ଆଖି ଖୋଲି କରୁଣଦୃଷ୍ଟିରେ ଉମାକୁ ଚାହିଁ କେତେ-ବେଳକେ ଅସ୍ପଷ୍ଟ ସ୍ୱରରେ କହିଲା, "ଉମା, ଜାଗୁ ଭାଇ ତୋର ଆଜ୍ଞାପାଏ ମରି ନାହିଁ ଲୋ...... ।" ଆଉ କହି ପାରିଲା ନାହିଁ, ଆଖି ବୁଜିଲା ।

ଉମାର ଆଉ ଶକ୍ତିକାଳୁ ବାକି ରହିଲା ନାହିଁ । ଅଧୀର ମନଟା ତାର ଦୁଃଖରେ କି ସୁଖରେ ମୁର୍ଚ୍ଛ ହେଲା, ସେ ବୁଝି ପାରିଲା ନାହିଁ । କେଜାଣି କିପରି ତାର ପାଟିରୁ ବାହାରି ଗଲା—"ଜଗୁ ଭାଇ...!"

ଜଗୁ ପୁଣି ଆଖି ଖୋଲିଲା । ଦୁଇ ହାତ ଏକାଠି କରି କ୍ଷୀଣକଣ୍ଠରେ କହିଲା—"ହଁ ଲୋ, ମୋତେ ନ କହି ତୁ ଲୁଚି ଲୁଚି ଚାଲି ଆସିଥିଲୁ । ଉମା, ତୋତେ ନ ଦେଖିବାଯାଏ ମୁଁ ମରନ୍ତି କିପରି ? ଏଥର... ।"

ଉମା ସେହି ଦୁର୍ବଳ କଙ୍କାଳ ପାଟିରେ ହାତ ଗୁପିଧରି ଗଦ୍‌ଗଦ କଣ୍ଠରେ କହିଲା, "ଛି—ଃ......!" ତାର ଲୁହଧୂଆ ମୁହଁଟି କାଳି ଅସିଲା ଜଗବନ୍ଧୁର କପାଳ ଉପରକୁ ।

* ସ ମା ପ୍ତ *

Printed by B. K. Kar, B. A. at the
Saraswata Press, Cuttack, 1935.